# ଅନନ୍ତ ପଟ୍ଟନାୟକ
# ରଚନା ସମଗ୍ର



## ଦ୍ୱିତୀୟ ଭାଗ (କବିତା)

# ଅନନ୍ତ ପଟ୍ଟନାୟକ ରଚନା ସମଗ୍ର

(ଦ୍ୱିତୀୟ ଭାଗ)

ସଂପାଦନା :

**ଅମରେଶ ପଟ୍ଟନାୟକ**

**ଆର୍ଯ୍ୟ ପ୍ରକାଶନ**

ଲିଙ୍କ୍‌ରୋଡ୍‌, କଟକ - ୮ ୧

# ଅନନ୍ତ ପଟ୍ଟନାୟକଙ୍କ ରଚନା ସମଗ୍ର
(ଦ୍ୱିତୀୟ ଭାଗ)

କବି :
ଅନନ୍ତ ପଟ୍ଟନାୟକ

ସଂପାଦନା:— ଅମରେଶ ପଟ୍ଟନାୟକ

ପ୍ରକାଶକ :
ଆର୍ଯ୍ୟ ପ୍ରକାଶନ
ଲିଙ୍କ୍‌ରୋଡ୍, କଟକ—୧୨

ISBN:81-7412-065-3

ମୁଦ୍ରଣ :
ଶ୍ରୀ ଜଗନ୍ନାଥ ଲାମିନେଟ୍ସ
ବାଦାମବାଡ଼ି, କଟକ—୭୫୩୦୧୨

ପ୍ରଥମ ପ୍ରକାଶ : ୧୯୯୯

ପ୍ରଚ୍ଛଦ :
ସ୍ୱାହା ମିଶ୍ର

ମୂଲ୍ୟ : ଦୁଇଶହ ଟଙ୍କା ମାତ୍ର

# — ସୂଚୀ —

## ଛାଇର ଛିଟା

## ଅବାନ୍ତର

## ଅରତୁ-ରତୁ

## ଅପ୍ରକାଶିତ ଓ ଅନ୍ୟାନ୍ୟ କବିତା

## ଡାଏରୀ କବିତା



—୦—

ଛାଇର ଛିଟା

ଅବାନ୍ତର

ଅଋତୁ–ଋତୁ

ଅପ୍ରକାଶିତ ଓ ଅନ୍ୟାନ୍ୟ କବିତା

ଡାଏରୀ କବିତା

ଏହି ସଂକଳନରେ ସନ୍ନିବିଷ୍ଟ କବିତାଗୁଡ଼ିକରୁ ଅଧିକାଂଶ ୧୯୩୫ରୁ ୧୯୬୫ ମସିହା ମଧ୍ୟରେ ବିଭିନ୍ନ ସମୟରେ ସହକାର, ନବଭାରତ, ଆଧୁନିକ, ଉତ୍କଳ ସାହିତ୍ୟ, ତରଙ୍ଗ, ଧରିତ୍ରୀ, ଦିଗନ୍ତ, ମୁକ୍ତିଯୁଦ୍ଧ, କଳନା, ଆସନ୍ତା କାଲି, ନୂଆଦୁନିଆ, ସମାଜ, ପ୍ରଜାତନ୍ତ୍ର, କଳିଙ୍ଗ, ସାମ୍ମୁଖ୍ୟ ଓ ମୁଖ୍ୟତଃ ଝଂକାରରେ ପ୍ରକାଶ ପାଇଥିଲା; କେତୋଟି ମଧ୍ୟ ଆକାଶବାଣୀରେ ପଠିତ ହୋଇଥିଲା । ଏଗୁଡ଼ିକୁ ବାଦ ଦେଲେ ଅବଶିଷ୍ଟ ତିନିଚାରୋଟି ନୂଆ !

ଆକାଶବାଣୀ ସୌଜନ୍ୟରୁ ଓ ଉକ୍ତ ପତ୍ରପତ୍ରିକା ସବୁର ସହୃଦୟତାରୁ କବିତାଗୁଡ଼ିକ ଏହି ବହିଟିରେ ସ୍ଥାନ ପାଉଥିବାରୁ ଲେଖକ ସେମାନଙ୍କ ପ୍ରତି ଆନ୍ତରିକ କୃତଜ୍ଞତା ଜଣାଉଛି ।

# ମୁଁ ଏଇ ଜନ୍ମିଲି

ମୁଁ ଏଇ ଜନ୍ମିଲି, ଆରେ !
ନୀଳାଚଳ ରକ୍ତାଚଳ ଆଜି !
ମୁଁ ଏଇ ଜନ୍ମିଲି, ଆରେ !
ବ୍ୟର୍ଥତାରେ କଣ୍ଟକିତ
ସ୍ୱର୍ଣ୍ଣଫେଣୀ କୁସୁମେ, କୁସୁମେ
ସ୍ନେହରିକ୍ତ ସାୟାହ୍ନର
ହିମନ୍ତ ଉଷ୍ଣମେ
କେତେ ଚୂର୍ଣ୍ଣ ଦିବସର
ବାଲିବନ୍ତ ଚୁଲେ
ଯୁଗାବ୍ଧିର କୂଳେ !

ମୁଁ ଏଇ ଜନ୍ମିଲି, ଆରେ !
ନିର୍ବାକ୍ ଅଧର-ପୁଟେ ବାଙ୍ମୟ ବିଳାସେ
ନିଃଶ୍ୱସିତ ମୁହୂର୍ତ୍ତର ଘୂର୍ଣ୍ଣିରୋଳେ ବାଜି,
ମୁଁ ଏଇ ଜନ୍ମିଲି, ଆରେ !
ପ୍ରାଣର ପ୍ରସାରେ
ଦୁର୍ଭୋଗର ନୀଳାଚଳ
ସମ୍ଭୋଗର ରକ୍ତାଚଳ ଆଜି !
ମୁଁ ଏଇ ଜନ୍ମିଲି, ଅନା !
ଶବ୍ଦହୀନ କ୍ରନ୍ଦନର କୋଳେ,
କାରୁଣ୍ୟର କଳ୍ପନା-ଗୌରବେ,
ବାଷ୍ପାୟିତ ତୃଷ୍ଣାର ଉଲ୍ଲୋଳେ
ମରଣାର୍ତ୍ତ ଜୀବନ-ଗୌରବେ ।
ବୈଧବ୍ୟର ବିମୂର୍ତ୍ତ ପ୍ରାର୍ଥନା
ଶୃଙ୍ଖଳିତ ମୁକ୍ତିର ଚିତ୍କାର
ମୁଁ ଏଇ ଜନ୍ମିଲି, ଅନା !
ପ୍ରସୂତିର ସାତ୍ତ୍ୱିକ ଶୀତ୍କାର ।

/ ୪ /

ଶସ୍ୟହୀନ ପ୍ରୀତିର ପନ୍ତାରେ
ମୁଁ ଏଇ ଜନ୍ମିଲି, ଅନା !
ବୀର୍ଯ୍ୟହୀନ କାଳର କାନ୍ତାରେ !
ଚନ୍ଦ୍ରିକାର ଛାୟାଞ୍ଚଳ ଧାରେ
ଥରିଯାଏ,—
ଥରିଯାଏ ତାରୁଣ୍ୟର
ତାଳବନରାଜି ।
ମୁଁ ଏଇ ଜନ୍ମିଲି, ଆରେ !
ଚଣ୍ଡାଶୋକ-ପ୍ରମତ୍ତ-ବିହାରେ
ହ୍ରେଷାର ଆହ୍ୱାନ ଶୁଣି
ସମୁଦ୍ଧତ ଖ୍ୟାରବେଳ-ବାଜି ।
କିଏ ଅଛ କାହିଁ, ଆରେ !
ବାପା ମୋର,
ମାଆ ମୋର,
ଭାଇ ମୋର,
ଭଉଣୀ ଭାଉଜ !
କିଏ ଅଛ କୋଣାର୍କର କରୁଣ ସୈକତେ ?
କିଏ ଅଛ କାହିଁ ଆରେ !
ବନ୍ଧୁ ମୋର,
ମଧୁମୋର,
ଜେମା ମୋର !
ନିଷ୍କାମ କାମନାମୟ କଂକରିତ ପଥେ—
ଲୁହେ ଲୁହେ ଲବଣାକ୍ତ ନୈରାଶ୍ୟ ପର୍ବତେ
ଅତନ୍ଦ୍ର ଆବେଶେ ଖୋଜି
ସ୍ୱପ୍ନର ପାଉଁଜ
ଉପଦ୍ରୁତ ଭାଇ ମୋର,
ଭଉଣୀ ଭାଉଜ !
ଦୁର୍ମର ଆଶାରେ ଆସି
କି ସତ୍ୟ-ପ୍ରୟାସୀ !

ମୁଁ ଏଇ ଜନ୍ମିଲି, ଅନା !
ଇତିହାସ-ମର୍ମରିତ ଝାଉଁବୀଥି ତଳେ
ଯୁଗ ଯୁଗ ପ୍ରଧାବିତ ଯାତ୍ରୀର ଗହଳେ !

ମୁଁ ଏଇ ଜନ୍ମିଲି, ଆରେ !
ଉତ୍ସବର ବଂଧୁକ-କ୍ରୀଡ଼ାରେ
ନବତମ ଯାତ୍ରୀ ମୁହିଁ,
କାହିଁ ଦୂରେ କମାଣେ କମାଣେ,
ଅବାର୍ତ୍ତିତ ମରଣର ଜୀବନ ପ୍ରମାଣେ !
ଆନନ୍ଦର ଆର୍ତ୍ତନାଦେ
ଜ୍ୱଳିଉଠେ
ମୋ ଅଭିବାଦନ, ୮
ପ୍ରବୁଦ୍ଧ ମୁଁ,
ନିତ୍ୟ ଅଭାବନ !
ଦିଗ୍‌ବଧୂ କପୋଳେ ଏଣୁ
ଝୁଲିପଡ଼େ ଉଲ୍‌କାର କରବୀ,
ମହିମାର ଭଗ୍ନ ଚୂଡ଼ୁଁ ଅଣିମାର ସିଦ୍ଧି ଯାଏ ସ୍ରବି !
ସ୍ତବ୍‌ଧ ହୁଏ ବସୁଧାର ସଭ୍ୟତା ଗଣିକା,
ଅସ୍ଥି କୁଢ଼ ପରେ
ନିର୍ବାଧେ କୌତୁକେ ଖେଳି
ଉର୍ମ୍ମିଳ ପ୍ରସ୍ୱରେ
ଥରେ ମୁହିଁ ଜୀବନର ନିର୍ମାଲ୍ୟକଣିକା !

ବେଦନାର ବଡ଼ଦାଣ୍ଡେ
ପ୍ରୀତିର କୈବଲ୍ୟ ଯାଚି
ଦୁର୍ନିବାର ହସରେ ହସରେ
କେତେ ରାଜକୀର୍ତ୍ତିର ଉଷରେ,
ଉଡ଼ାଇ ସ୍ୱର୍ଣ୍ଣର ଧୂଳି
ଫୁଲି ଫୁଲି
ଶାଶ୍ୱତ ନଶ୍ୱରେ,

/ ୬ /

ଭାଷାହୀନ ଉଷାର ଆକାଶେ–
ମୁଁ ଯେ ତୁମ ପ୍ରଜ୍ଞାର କାହାଣୀ,
ରୋମାଞ୍ଚିତ ଚେତନାର ବାଣୀ !

ମୁଁ ଏଇ ଜନ୍ମିଲି, ଏଣୁ—
ବାପା ମୋର
ଭାଇ ମୋର !
ଏଇ ନିଅ ମଥା ମୋର ଆଜି !

ଧରଣୀର ଛିନ୍ନ ଭ୍ରୂଣ ସମ
ଆଗ୍ନେୟ କୁସୁମ ମୁଁ ଯେ
ସ୍ନିଗ୍ଧ ଅନୁପମ,
ବିଜ୍ଞାନ ଚରମ।
ମଥାହୀନ ସ୍କନ୍ଧ ପରେ ତୁମ
ହେ ନିର୍ବୋଧ ! ହେ ଲାଞ୍ଛିତ !
ହେ ମୂର୍ଚ୍ଛିତରାଜି !
ରୋପି ଦିଅ, ରୋପି ଦିଅ ଆଜି—
ମୁଁ ଏଇ ଜନ୍ମିଲି, ଆରେ।
ଚିତ୍ରକର, ଚିତ୍ରିଯାଅ ଛବି !

ନିର୍ବିରୋଧ ସୁଖୋଚ୍ଛ୍ୱାସେ
ଲେଖିଯାଅ ନିର୍ଭୀକ କବିତା !
ବିଭ୍ରାନ୍ତ ମୋ କବି !
ଏଇ ମୋର ରକ୍ତର ଚହଲେ
ବନ୍ଧୁକର ବନ୍ଧୁତାର ଛଳେ—

ଦୁର୍ଲ୍ଲଭର ସୁରେ ସୁରେ ବାଜି
ଥରି ଉଠୁ ଗୋଲାପୀ ଭୈରବୀ !



# ହେ ଧରଣି !

ତୁମେ ଯେବେ ହୋଇଯିବ ବୁଢ଼ୀ,
ହେ ଧରଣି ! ପାରିବ କି ହେଜି,
କାହିଁ ପାଇଁ କେତେ ଏ ରାତିରେ
ସପନର ଦୀପ ଦିଏ ତେଜି !

କାହିଁ ପାଇଁ ହସର ମୁରୁଜେ
ପକାଏ ମୁଁ ଫସଲର ଚିତା,
ସୋରି ସୋରି ନଈର ବେଣୀରେ
ଖୋସି ଦିଏ ରସର ସଳିତା ।

ତୁନି କରି ଖଳର କଳହ
ନିଆଁଶୀର ଅସୂୟା କରାଳ,
କାହିଁ ପାଇଁ ବିଷାଦ-ମେଘରେ
ଉଡ଼ାଏ ମୋ ସ୍ନେହର ମରାଳ ।

ରହି ରହି ଲୁହାର ନଖରେ
ଖେଳିଯାଏ ହୀରକର ଦାଗ,
ତୃଣମୟୀ ଅରାଳ କେଶରେ
ବୋଳିଯାଏ ଫଗୁଳ ସରାଗ ।

ତୁମେ ଯେବେ ହୋଇଯିବ ବୁଢ଼ୀ,
ହେ ଧରଣି ! ପାରିବ କି ଜାଣି,
କାହିଁପାଇଁ ଫୁଲର ଲହରେ
ଗୋଳିଦିଏ ଲୁହର କାହାଣୀ !

ଅନୁଲୋମେ ବୋହୁଚି ତ କାଳ
ପ୍ରତିଲୋମେ ଜୀବନ-ଆରତି,
ତୁମେ ଯେବେ ହୋଇଯିବ ବୁଢ଼ୀ
ରହିବନି ସତୀ ବା ଅସତୀ–

ବୁଝିବ କି ? ଆଜି ଏ ରାତିରେ
ଥର ଥର ଓଠର ଉଷ୍ମମେ,
କାହିଁପାଇଁ ନିବିଡୁ ନିବିଡ଼େ,
ହୃଦ ଭିଡ଼େ ହୃଦୟ କୁସୁମେ !

କାହିଁପାଇଁ ନିଥର ନିମେଷ,
ତୁମେ ପୁଣି ବିଲଗ-ବସନା,
ଦେହେ ଘେନି କାମନାର ବ୍ରଣ
କାଖ ତଳେ ଝାଳର ବାସନା !

କାହିଁ ପାଇଁ ବେପଥୁ, ଯୁବତୀ
ମଉଆଳୀ ମହୁଲି ନିଶାରେ,
ଚଇତର ଦୟିତ ବିଭଳା
ବୁଡ଼ିଯାଅ ବିଳାସ-ବିସାରେ ।

ତୁମେ ଯେବେ ହୋଇଯିବ ବୁଢ଼ୀ
ଛିଡ଼ି ଛିଡ଼ି ପଡ଼ିବ ଏ ନଭ,
ଧୂଡୁ ଧୂଡୁ ଚମର ଉଆସେ
ସରିଯିବ କଳ କଳ ରବ ।

ପାଉଁଶିଆ ଉଷାର ଛାତିରେ
ଜଳି ଜଳି ମରିଯିବ ତାରା,
ବିରସର ଆଖିର ଖିଲାଣେ
ଝୁଲୁଥିବ କାଳିମାର ଧାରା !

ତୁମେ ଯେବେ ହୋଇଯିବ ବୁଢ଼ୀ,
ହିମ ହେବ ଆଶାର ତପନି !
ମରୁମୟ ମରମ ପତାଇ
ପାରିବ କି ହସାଇ ଲପନ ?

'ତୁମକୁ ମୁଁ ଭଲପାଏ ଖାଲି'
—ବୁଲି ବୁଲି ଗାଉଥିବି ଗୀତ,
ତୁମେ ମୋତେ ଭଲ ପାଅ ବୋଲି
ବାଉଳାରେ ଡାକିବ କି 'ମିତ' ?

ଥିବି ମୁହିଁ, ଥିବ ମୋ ଚେତନା,
କାଳ-ଜୟୀ ଯାଉଥିବି ଖେଳି,
ଗ୍ରହୁଁ ଗ୍ରହେ ହେ ଧରା ! ପ୍ରେମିକା
ତୁମେ ହେବ ସ୍ମୃତିର କୁହେଳି !

ନାହିଁ ନାହିଁ ; ତୁମେ ହେଲେ ବୁଢ଼ୀ
ରୁଧିରେ ମୋ ଧୋଇ ଧୋଇ ନିତି
ତୁମର ସେ ଜରତୀ ଅଧରେ
ଚୁମି ଚୁମି ଭରି ଦେବି ପ୍ରୀତି !



/ ୧୦ /

# ଧୀରେ ପାରିହେଉ

ଉଷାର ଆକାଶ ଆମେ ପାରି ହେଉ
ଧୀରେ ପାରି ହେଉ,
ରଶ୍ମିର ଗୌରବେ ନୂଆ
ମୃଣ୍ମୟୀ ମାୟାରେ ସଖି !
ପ୍ରୀତିର ଔତ୍ସୁକ୍ୟେ ଥରି,
ମଳୟର ରୋଳେ ରୋଳେ, ମୌସୁମୀର ଡୋଳାର କଜଳେ,
ଉଷାର ଆକାଶ ଆମେ ପାରିହେଉ,
ଧୀରେ ପାରି ହେଉ ।

ହୁଗୁଳା ବିଶ୍ୱାସପୁଟେ ଗଦ୍‌ଗଦ୍ ଚୁମା ଯେ, ଏଣୁ,
ଆଗୁଳା ସଂଶୟକୂଟେ ଦିଗନ୍ତ-ଗିନାରେ କାହିଁ
ଆଲୋଳିକା ମେଳେ ମେଳେ ବାଉଳା ବ୍ୟଥାର ସତେ—
ଅଳତାର ଢେଉ ପରେ ଢେଉ !
ଉଷାର ଆକାଶ ଆମେ ପାରି ହେଉ
ସଜନିରେ ! ଧୀରେ ପାରି ହେଉ !

ତାରାର ପଣତ ଆଉ ହକାଳି ହକାଳି ତୁ ଲୋ ! ହାଆର ଅତଳେ
ଥୁରୁ ଥୁରୁ କଥାରେ ଆତୁରା,
ବିରହେ ବିରହେ ମୋର
ଅଥୋଇତି
ଜଳିଲା ଜହ୍ନରେ ପୋଇଁ ବିଷଣ୍ଣା ବାୟାଣୀ,
ତମସାର ତପସ୍ୟାରେ ବିଳାସେ ବିକଳା
ବୈରାଗ୍ୟର ବାଗୁରାରେ ଲୋଡୁଚୁ କି ସାଧନାର
ବାଳିର କାମୋଦୀ !

ତୃଷାର ଅନଳ-ତୀର୍ଥେ ବୁଲି ବୁଲି, ଅହେତୁକୀ
ତନ୍ତ୍ରର କେଉଡି,
ଜଳୁଚୁ କି ଭିକ୍ଷୁଣୀର ନିର୍ବାସ କରବୀ ?

ନାହିଁ, ନାହିଁ, ସଜନୀ ଲୋ !
ପୂରବୀ ଓଲଟ ଆଜି !
ଉଷାର ଆକାଶେ ଆମେ ପାରି ହେଉ,
ଧୀରେ ପାରିହେଉ !

ଖରାର ହଳଦି ତୋର ଶ୍ୟାମଳ ତନୁରେ, ସଖି !
ମନର ମହଳ ପାଟ ହସର ଶିଶିରେ ମୋର
କି ରସେ ପଖଳା !
ସରମେ ସରମେ ତୋର ଫୁଲର ମଶାଲ ଖାଲି–
ଦିବାନ୍ଧ ନୟନେ କେତେ, ଧୀରେ ଜାଳି ଦେଉ ଆମେ
ଧୀରେ ଜାଳି ଦେଉ !
ଶୀତଳ ବିପ୍ଳବେ ଆଣି
ସୃଷ୍ଟିର ଆହୂତି ନୂଆ :
ଉଷାର ଆକାଶେ ଆମେ
ଧୀରେ ପାରି ହେଉ ।

କିରୀଟିର ମହଲେ ମହଲେ
କାଲିର ମଲୁଖ ଖସେ,
ପେଟର ସ୍ୱପନ ଶିଶୁ ଗଡ଼େ କି ଲୋ ଚିନ୍ମୟର ଉଆସେ ଉଆସେ ଆଉ
ଉତ୍ସବ-କାନିରେ ?
ଝଡ଼େ କି ଲୋ ଅଲିଅଳି ଆଶାର କପାଳ
କୈବତର କାହାଳୀ କୂଳରେ କାହିଁ ?

ହୀରାର ଅଚଳ ଚୂଳେ ତୁ ରସ-ସରିତ୍, ପରା !
ତୁ ଆଜି ଝରାଉ, ସଖି ! ସୁରର ସୁରଭି କେତେ,
କୋଣାର୍କର ବିଦଗ୍ଧ ବେଣୁରେ
କି 'ଚିତ୍ର' ଚଣ୍ଡାଳ କୋଳେ
'ଉତ୍ପଳା'ର ପ୍ରଣୟେ ବିହ୍ୱଳା,
କି ପ୍ରଶ୍ନବାଚିକା ସୃଜି
'ପ୍ରାଚୀ'ର ଅଶ୍ଳୀଳ ରାଗେ
ଅପୁଷ୍ଟ ପୁନ୍ନାଗେ ଆଲୋ !

‘ବିରଜା’ ଉରଜେ ରାଜି
ସଜନୀରେ !
ସାଜିସୁଜି
ଯୁଗ ବୁକୁ ଚମକାଇ
ସ୍ନେହମୟୀ ‘ସମଲେଇ’ ଜୁଡ଼ା ତୋର ଫେଉ ।

ଉଷାର ଆକାଶ ଆଗୋ, ନିର୍ମମ ସଂକେତେ ମୋର
ଧୀରେ ପାରି ହେଉଁ !

ନୂଆ ନୂଆ ମଠେ ଗଡ଼େ
ପ୍ରବରର ମାଦଳ, ସଖି !
ନୂଆ ନୂଆ ଝୁମ୍ପୁରେ ଯତିର କାରିକା !
ନୂଆ ହଠକାରିତାର ନଟୀର ନୟନ ଧାରେ
ବ୍ୟଥାର ବିରତି, ସତେ !
ତୁଳସୀ-ମଞ୍ଜରୀ ଶିରେ
ଜଟାର ବିକାର !

ସଜନି ଲୋ ମଗୁଡ଼ିଆ ମୁହାଁସ-କ୍ଷେତରେ, ଅନା !
ହୃଦୟୁ ହୃଦୟେ ଆମ
ମମତାର ମେଘାସନ !
ଅଲକ୍ଷ୍ୟେ ଅଲକ୍ଷ୍ୟେ ହସି
ଧୀରେ ପାରିହେଉ !
ଉଷାର ଆକାଶ ଆମେ ଧୀରେ ପାରିହେଉଁ—

କଳାର କାନ୍ତାରେ ଥରେ ଶମୀର ସନ୍ତାପ ସରେ,
ସ୍ନେହର ସ୍ନାୟୁରେ ଆମ ଯମୀର ଉତ୍ତାପ !
ରୋମାଞ୍ଚିତ ତାରୁଣ୍ୟର ତରଳ ଯନ୍ତ୍ରଣା !

ବୃଦ୍ଧର ବୋବାଳି ଦଳି ମୁହୂର୍ତ୍ତ ଝାଳାଏ ତିଳେ !

ଚିଲିକାର ଝିଲିମିଲି ବିଲୋଳ ବିକ୍ଷୋଭେ,
କି 'ମୋହ-ମୁଦ୍‌ଗର'-ମୁହେଁ
କୁରୁଳା କିଶୋରୀ ରାସ ଧୀରେ ଗୋଳି ନେଉ !

ଉଷାର ଆକାଶ ଆମେ
ଅରାଜି-ରାଜିରେ କେତେ ଅସଜ ସଜରେ ସଖି !
ଧୀରେ ପାରିହେଉଁ ।

ସଜନି, ଅଭିନ୍ନ ଆମେ,
ନିର୍ଭାଷ ଭାଷାରେ !
ସମତାର ମାଲ୍ୟଗିରି ଚୂଡ଼ାର ଥୋପାରେ,
ନିର୍ମାୟା ଆଳାପେ ଆମ
ଧଉଳି-ଧ୍ରୁପଦୀ-ଦୁଃଖ ଧୀରେ ପୋଚିଦେଉ !

ରଶ୍ମିର ଗୌରବେ କେତେ
ଉଷାର ଆକାଶ ଆଜି,
ଧୀରେ ପାରିହେଉ ସଖି
ଧୀରେ ପାରିହେଉ ।



# ଉଦୟ-ସୂର୍ଯ୍ୟ ଫୁଟେ

ଆକାଶ-ଗର୍ଭେ ପଦ୍ମର ସମ ଉଦୟ ସୂର୍ଯ୍ୟ ଫୁଟେ,
ରଶ୍ମି-ତୁରଗ ଜୀବନ-ଶିଖରେ ଥାପିଲା ସ୍ନିଗ୍ଧ ଖୁରା,
ଜୀର୍ଣ୍ଣ ସପନ ଅଶ୍ରୁ-ସାଗରେ ନୀରବେ ଆତ୍ମଘାତୀ
ମୃତ୍ତିକା-ତାପେ ଶୁଖିଲା, ସଖିରେ ! କାଞ୍ଚନମୟୀ ସୁରା !

ବିସ୍ମୃତି-ତଟେ ଲୋଟିଲା କାହାର ରଜତ ଉତ୍ତରୀୟ !
ଆଜି ଅତନୁର ତୃଷ୍ଣାର ଢେଉ ଦୁଃଖ ବାଡ଼ବାନଳେ,
ଦଗ୍ଧ ବିଧୁର ଭସ୍ମର ସାଜେ ସନ୍ନ୍ୟାସୀ ନୂଆ ଗୃହୀ,
କ୍ଷୁବ୍ଧ ଆଶାର କାକଳି ଥରୁଚି କଂକାଳ-ବନ-ତଳେ !

ବାନ୍ଧବି, ଥରେ ଚାହାଁ ଗୋ ଚକିତେ ଧୂଳିର ବାତ୍ୟା ଠେଲି
ରୁଗ୍ଣ ରୂପର ଖୋସାରୁ ଖସାଇ ବିଲାତି ଦଳର ଫୁଲ !
ନୟନଜୋରିରେ ଅଣ୍ଟାଳେ କିଏ ପ୍ରୀତିର ଦଣ୍ଡକିରୀ !
ଭଗ୍ନ ମନର ଓଲିତଳେ ଝରେ ଦୈନ୍ୟ ଦିନର ଝୁଲ !

ନୀଡୁଁ ନୀଡ଼େ ବୁଲେ ଭୋକିଲା ସୋଗରେ ରୁଦ୍ଧ ରୋଦନ କଥା,
ପୁଞ୍ଜିବିହୀନ କୁଳୀନ ଆଖିରେ ମଳିନ ଲହୁର ମାନ !
ଶୂନ୍ୟେ ଅଲେଖ ଭଜନ ଚାଲିଚି ମନ୍ତ୍ରଣାସଭା-ଘରେ
ପଣ୍ୟବୀଥିରେ ଭୂରିଭୋଜନରେ ମୃତ୍ୟୁ ତ ଅଭିରାମ !

ଲୌହ-ନିଳୟେ ମତ୍ତ ମଳୟ ଧସାଇ ପଶିବ କେବେ ?
ସ୍ୱର୍ଗପଥରୁ ନଇଁବ ନିମିଷେ ଉର୍ବଶୀ-ଚଳଭୂରୁ !
ସ୍ୱର୍ଣ୍ଣ ମୃଗର ପଶ୍ଚାତେ ଧାଏଁ ଲୁବ୍ଧ ସାଧୁର ଦଳ,
କେତେ ତାପସୀର ଉରସ ରସର ସ୍ତମ୍ଭନେ ଗୁରୁ ଗୁରୁ !

ଦୁର୍ଜନ କରେ ବନ୍ଧନ ଆଜି ବାଗ୍‌ଦେବୀ କୁଳ-ବୀଣା
ସର୍ପର ମୁଖୁଁ ପ୍ରସରି ଯାଉଚି ଚମ୍ପୂର ସଉରଭ !
ଘନ ଘନ କାହିଁ ଚାଙ୍ଗୁ ନାଚୁଚି ଘଞ୍ଚ ବାଉଁଶବଣେ
ଗତି ବିପରୀତ, ସାମ୍ୟ ସାଧନେ ଉଦ୍‌ଭଟ କଳରବ !

କି ଥିଲୁ କି ହେବୁ ସଂଗିନି ! ଘେନି ରତି-ମଞ୍ଚର ଚାଲି ?
ସଂଘାତେ ଆଜି ପୁରୁଣା ନୂଆର ପ୍ରଳୟ ଶଂଖ ବାଜେ !
ଅଂଗୁ 'ମମି'ର ଖସି ଖସି ପଡ଼େ ଚନ୍ଦନ ଚୂଆ ଲିପି,
ରତ୍ନଖଚିତ ମଂଗଳଘଟ ଲଂଗଳ-ମୂନେ ଭାଜେ ।

ବାନ୍ଧବି, ଅନା ! ପଦ୍ମର ସମ ଉଦୟ ସୂର୍ଯ୍ୟ ଫୁଟେ !
ଅଞ୍ଚଳ ତଳେ ଆବୋରି ବସିବୁ ସଞ୍ଜ-ସଳିତାମାୟା !
ତୁଟାଇ ଦେବୁନି ବକେୟା ପ୍ରୀତିର ବକ୍ର ଚାହାଣୀ ଦାବୀ,
ନିର୍ଲେପ ହାସେ ବିଛାଇ ତିଳେକ ମର୍ମ-ତରୁର ଛାୟା !



/ ୧୬ /

# ଫୁଲର ଫର୍ଣ୍ଣେସ୍ ହସେ

ସୃଷ୍ଟିର ସୁଷମା ଜଳେ !
ବିଦଗ୍ଧା ଧରଣୀ !
ସାଧନାର ସନ୍ଧ୍ୟା ନୁଏଁ
ଚେତନାର ଚିମନୀ ଧୂଆଁରେ !
ଫୁଲର ଫର୍ଣ୍ଣେସ୍ ହସେ !
ମୁହୂର୍ତ୍ତ ଆମରି ସତ,
ମୁହୂର୍ତ୍ତ ଆମରି !

ମନର ବିଦ୍ରୋହ, ସତେ ଆଖିର ବିକ୍ଷୋଭ !
ତୁମେ ଆଜି ଦୁଃଖ ପାଅ,
ଆକାଶର ଡାଳେ ଡାଳେ, ପାତାଳର ପତରେ ପତରେ !
ବିଚୂର୍ଣ୍ଣ ଜ୍ୟୋତ୍ସ୍ନାର ବୁକେ
ପ୍ରୀତିର ଭଗ୍ନାଂଶେ କେତେ
ଅଭଗ୍ନ ଆକୃତି !

ତୁମେ ଆଜି ଦୁଃଖ ପାଅ,
ଅଣୁରେ ଅଣୁରେ କେତେ ଭୂମିର ବିଭୂତି ମୋର !
ତୁମେ ଆଜି ଦୁଃଖପାଅ,
ସ୍ୱେଦମୟ ମମତାର ସବୁଜ ଶୀତ୍‌କାରେ !

କାରୁଣ୍ୟର ରେଶମୀ କାହାଣୀ,
ତୁମେ ଆଜି ଦୁଃଖ ପାଅ ।
ହରିତାଳି ଓଠେ ଓଠେ, କାମନାର କୋଇଲା ବିପ୍ଲବେ
ରୋମାଞ୍ଚିତ ଇତିହାସ ଅନ୍ତୁଡ଼ିଶାଳରେ !

ତଡ଼ିତ୍ ଚୁମ୍ବକ ହୃଦେ ରସର ବଲ୍ଲକୀ ମୋର
ପ୍ରଜ୍ଞାର ଶିଖା ଗୋ !
ଜରାର କୈଶୋର ଥରେ ବିରୋଧ ନିଷେଧେ,
ଜିଘାଂସୁ କୁମ୍ଭୀର ଧୂର୍ତ୍ତ ଚତୁର ଚକ୍ରାନ୍ତେ
ବିଷାକ୍ତ କୀଟର ଦନ୍ତେ ତୃଷାର ହିମାଦ୍ରି-ବଧୂ
ତୃଣର ତନୟା !

ତୁମେ ଆଜି ଦୁଃଖ ପାଅ,
ବଲୋଳ ଲାଳସା ଲାସ୍ୟ ଗୋଦାମେ ଗୋଦାମେ,
ମସୃଣ ଆକ୍ରୋଶେ କେତେ ଉଦାସ ନଥିରେ
ତୁମେ ଆଜି ଦୁଃଖ ପାଅ ।
ଜଞ୍ଜାଳ-ଜାହାଜେ ସ୍ନେହ ସହ୍ୟାଦ୍ରି ଜ୍ୱାଳାରେ
ତୁମେ ଆଜି ଦୁଃଖ ପାଅ,
ପ୍ରାଣର ଚିକିତ୍ସାଳୟେ ଆଶାର ପ୍ରଳାପେ, ସତେ !
ଫୁଲର ଫର୍ଣ୍ଣେସ ହସେ !
ପଞ୍ଜାରେ ପଞ୍ଜାରେ ଭାଙ୍ଗେ କୀର୍ତ୍ତିର ପିଆଲା ସଖି !
ଦୁର୍ବାର ଆବେଗ !

ପିଲାଏ ଆସିବେ ସତେ,
କୁଲାୟେ କୁଲାୟେ—
କଇଁ କଇଁ ମଳୟର କେୟୁର ଘୂର୍ଣ୍ଣିରେ
ଯମୁନା ପାରିଲା ବସି ଅଜନ୍ତା ଖୋସା କି !
ମୀନାକ୍ଷୀ-ମୁରଜେ ନାଚେ ତାଜର ରୁବାଇ !
ପଲାଏ ଆସିବେ ସତେ !
ଲୌହର ଲାଳିତ୍ୟେ ଲୁଚି
ମୌସୁମୀରେ କୁଆର କାକଳି
କି ମର୍ମର ଖଣିର ସଂଖୁଳା !

ଅଶ୍ରୁର ଭିକ୍ଷୁଣୀ ଧାରେ ଥରିଯାଏ ବୋଧିର ବଲ୍ଲଭ !
ଦିଗନ୍ତ ବାଲିରେ ଛୁଟେ କୋଣାର୍କର ହୟ ମୋର
ବାହି ବାହି ସହସ୍ରଦଧିଚି,
ଉଦ୍‌ବାସ୍ତୁ ବସନ୍ତ-ମତି ଲୋଡ଼ିଯାଏ ଅମୃତ ମନ୍ଥେ !

ସାମ୍ୟର ନିର୍ମାଲ୍ୟରେଣୁ କୋଇଲି-ବୈକୁଣ୍ଠେ ଆଜି !
ଝର ଝର ରାଜଘାଟେ
ଥର ଥର କଂକଣେ ଆହାରୀ ?
ହାଡ଼ର ସଡ଼କେ ବୁଲେ ନିର୍ଜର ଫକୀର, ଆହା !
ବ୍ରଜର ମୁରଲୀ ସ୍ବରେ ପ୍ରମୂର୍ତ୍ତ ପୁଲକେ ପୁଣି
ଯୀଶୁର ଜୀବନ !

ସୃଜନ-ଶରରେ ବିଦ୍ଧ କି କ୍ରୌଞ୍ଚୀ-କବିତା ମୋର
ଅପୂର୍ବ ଅପୂର୍ବ ସଖି !
ଫୁଲର ଫର୍ଣ୍ଣେସ୍ ଜଳେ !
ଶୂନ୍ୟତାର ବୀଜେ ବୀଜେ
ପୂର୍ଣ୍ଣତାର ସ୍ଫୂର୍ତ୍ତିକି ଆମରି, ସଖି !
ମୁହୂର୍ତ୍ତ ଆମରି ?

ପିଲାଏ ଆସିବେ, ସତେ !
ରଶ୍ମିର କାନନୁ ଫେରି
ବର୍ଣ୍ଣାଳିର ପଥେ ପଥେ,
ଆଲୋକ ଧେନୁରେ କେତେ ଚରାଇ ଚରାଇ,
ଚନ୍ଦ୍ରର କନ୍ଦୁକ କେତେ ଗଡ଼ାଇ ଗଡ଼ାଇ

ଅନିର୍ବାଣ ଉଷାର ପ୍ରାନ୍ତରେ ?
ଦୃପ୍ତା ରେବତୀର ବକ୍ଷ ଦଳିଦିଏ ବଳରାମ ହଳୀର ଲାଙ୍ଗଳ !
ଅଶବ୍ଦ ଝାଉଁର ବନେ
ଫୁଲର ଫର୍ଣ୍ଣେସ୍ ଜଳେ !
କୋମଳେ କାଠିନ୍ୟେ କେତେ,
ନାରିକେଳ ଚଅଁରେ ଚଅଁରେ !

କି ପ୍ରାଣ-ଭଅଁର-ଭୂରୁ
ଝରୁ ଝରୁ,
ଚିତ୍ରୋତ୍ପଳା ଜାହ୍ନବୀର ଦୁକୂଳେ, ଦୁକୂଳେ,
ସମତା ଶସ୍ୟର ଶୀର୍ଷେ !
ଜଗନ୍ନାଥ-ବିଜ୍ଞାଣୀ ମୁଁ, ଉନ୍ମାଦ ! ଉନ୍ମାଦ !!

ଫୁଲର ଫର୍ଣ୍ଣେସ ଜଳେ,
କାଶ୍ମୀର କପୋଳ-ପଦ୍ମେ ଆରକ୍ତ ଉଲ୍ଲାସ !
ଶାଣିତ ସପନଚଞ୍ଚୁ ଅତନ୍ଦ୍ର ପ୍ରହରୀ,
କେତେ ଈର୍ଷା-ନିଃଶ୍ୱାସରେ
ଅଛିଦ୍ର ଛିଦ୍ରରେ !
ମୃତ୍ୟୁର ମଶୋହି ସରେ
ସ୍ୱାର୍ଥର ଚର୍ବିଳ ଦେହ ରଜତ ନିର୍ଝର !

ପିଲାଏ ଆସିବେ, ସଖି !
ଅଶୋକ ଅନ୍ତିମ ଲୋକେ
ଅଭିସାର, ମୁକ୍ତ ଅଭିସାର !
ବୁଭୁକ୍ଷୁ ଚନ୍ଦନ ବନେ ପ୍ରଗାଢ଼ ଚୁମ୍ବନ ଆଜି !
ଅତତ୍ତ୍ୱ ତଥ୍ୟରେ କେତେ
ଅତଥ୍ୟ ତତ୍ତ୍ୱର ଦୂଠେ
ଦୁଃଖରେ ଅଦୁଃଖୀ ଚିତ୍ତ ?

ଆମେ ଯେ ପଢୁଚୁ ମନ୍ତ୍ର
ଅନମ୍ରା ମୈତ୍ରୀର
ଜୀବନ ଯାତ୍ରାରେ ଆମ !
ଏରୋଡ୍ରମ୍ ପ୍ରଗଲ୍‌ଭ, ନୀରବ !
ଫୁଲର ଫର୍ଣ୍ଣେସ୍ ହସେ !
ଆମେ ଯେ ଗଢୁଚୁ ଯନ୍ତ୍ର,
ସୁଖରେ ଅସୁଖୀ ଆତ୍ମା !

କି ଶାନ୍ତିର ଅଶାନ୍ତ ସନ୍ତୋଷ !
ମୁହୂର୍ତ୍ତୁଁ ମୁହୂର୍ତ୍ତେ, ସଖି !
ଧୂଳିର ଧୂର୍ଜଟୀ ମୁଁ ଯେ,
ଝାଳରେ-ଝାଳରେ କେତେ ରୁଧିରେ ରୁଧିରେ
ସଖି ମୋର ପ୍ରତିଜ୍ଞା-ପାର୍ବତି !
ଉଡ଼ାଅ ମୋ ହସର ରୁମାଲ ଆଗୋ
ପ୍ରାଣର ରୁମାଲ !!

ଚେତନାର ଚିମିନୀ ଧୂଆଁରେ
ସୃଷ୍ଟିର ସୁଷମା ଜଳେ !
ବିଦଗ୍ଧା ଧରଣୀ
ମୁହୂର୍ତ୍ତ ଆମରି ସଖି !
ଉଡ଼ା ତୋ ରୁମାଲ, ଆଗୋ ।'
ପ୍ରୀତିର ରୁମାଲ !



# ଶ୍ରାନ୍ତିର ବେଳାରେ

ସୁମନ ମୁଁ ସ୍ୱପ୍ନର, ତୋଳିଲି କେବେ କି?
ନାହିଁ, ନାହିଁ, ତୋଳି ନାହିଁ, ତୋଳି କି ଜାଣେ ମୁଁ!
ଲୁହେ ଲୁହେ କିଣିଲି କି ଜାଗର ରାତିରେ–
ମଲ୍ଲୀ ସାଥିରେ କେଉଁ, ପ୍ରମୋଦେ ମାତିରେ
ଆଣିଲି କି ଗଭାରୁ ତା' ଜୀବନ-ରାଣେ ମୁଁ?

ଧୂଳିର ସାଗରେ ଯେବେ ଥରିଲା ଲହଡ଼ି,
ଆତୁରେ ସ୍ମୃତିର ତଟୁଁ ଫିଙ୍ଗିଲି ଦୂରେ କି?
ନାହିଁ, ନାହିଁ, ବିକି ନାହିଁ, ଦେଇନି ଦାନରେ
ପରଭୃତିକାର କେଉଁ ବିକୃତିଗାନରେ!
—କାହିଁ ସେ ତ ଆଜି ପୁଣି ଝୁରୁଚି ଝୁରେ କି?

ଜାଣେ ମୁଁ ଆସୁଚି ଘୋଟି ଶ୍ରାନ୍ତି-ବେଳା ଯେ!
ଲୋଟିବି ଭୂତଳେ ଅବା ଦୋଳିବି ଆକାଶେ:
ଅଂଟିରୁ ଖସିବ ଭୂରୁ-ଭଉଁଚ କୋଳି ଯେ
କଂଟିଲେ ଆଶାର ଝାଳ ନିମେଷ ଗୋଳି ଯେ!
ରହିବି ଅନାଇ ନିକି ତାହାରି ପ୍ରୟାସେ?

ଜହ୍ନ-ଜରିର ରେଖା କଂକାଳ କରେ ମୋ,
ସଂଜ ତୂଳିକା ଦେଲେ କୁତୁକେ ବୁଲାଇ,
ଫେରି କି ପାଇବି ତାକୁ?—ଖେଳୁଁ ରେ ଅନଳ
ମୁହୂର୍ତ୍ତେ କଠିନ, ପୁଣି ମୁହୂର୍ତ୍ତେ ତରଳ,
ଛାୟାର ମାଳଞ୍ଚେ ଦେବ ସ୍ୱର ତା ଝୁଲାଇ?



# ଆପଣା ସୁରେ ଆପେ ହିଁ ବାଜି

ଆମେ ଯେ ସବୁ ଚାଲିଚୁ ଆଜି,
ଆପଣା ସୁରେ ଆପେ ହିଁ ବାଜି
ସନ୍ତୋଷର ଅନ୍ଧକାରେ
ଆପଣା ବୁକୁ-ତନ୍ତ୍ରୀ-ତାରେ
ନିଜକୁ ନିଜେ ଲୋଡ଼ି,

ଆମେ କି ଜାଣୁ ଆମରି ପାଖେ,
ଆମରି ପ୍ରୀତି-ଦଲାଲି ଡାକେ
ଆମରି ଭାଉ ବଢ଼େ ଓ ପଡ଼େ,
ଆମରି ଦୁଖ-ଗ୍ରୀଷ୍ମ-ଝଡ଼େ !

ଅଶ୍ରୁମୟ ସୋହାଗ ଆମ
ଯାଏ ରେ ଯାଏ ପୋଡ଼ି !

କରୁଣା ବୁଣି କରୁଣ ରାଗେ
ଚାଲିଚୁ ପଛେ, ଚାଲିଚୁ ଆଗେ,
ଆମେ ରେ ଯେତେ ଭୋକର ଭାଟ,
ଭୟର ଭେକଧାରୀ,

—କାହିଁରେ କେବେ ବ୍ୟଥାର ବନେ,
କାହାର ଘନ ଗୁଂଜରଣେ,
ସହସା ପୁଣି କଥାର କେଉଁ
ମଳୟଲୋଳ—ମୃଦିରଲୀଳା
ମୁକୁଳ ଦେବ ପାରି,—
ସକଳ ଶୋକ-ପ୍ରଳୟମେଳେ
ସୃଜନ-ରସେ ଘାରି !

ଆମେ ଯେ ସବୁ ଚାଲିଚୁ ଆଜି
ଆପଣା ଦୁଃଖ ବିକାଇ ସୁଖେ
ଛାଉଲି ହୋଇ ଛୋପରା ମୁଖେ,
ଚାଲିଚୁ ପୋଡ଼ା ଖପରା ବୁକେ
ଚାଲିଚୁ ନିଜ ଖପୁରି କରେ, କରେ,

ଆମରି ତହିଁ,
ରହି ନ ରହି,
ଶୂନ୍ୟ ଭଲା ସାଂଖ୍ୟ ରୀତି ଧରେ ?

ଆମେ କି ସତେ ରହିଚୁ ଜୀଇଁ,
ପୋଷକୁ ପୋଷ ସ୍ୱପ୍ନ ପିଇ
ଗୋପନେ ଅତି—
ଆତ୍ମରତି !
ଆମେ ତା ଲୁଷା-ଠାର !

ଖରଡ଼ା ପାଇ ଆଶାର ତାପେ,
କରଡ଼ା ଖାଇ ଭାଷାର ପାପେ,
କଳ୍ପନାରେ ବିହାର ବିହୁଁ
ମହୁଲ-ମହୁଧାର !
ବୈତରଣୀ-ତୃଷ୍ଣା-ପାରେ
ମୁକ୍ତିରେଣୁ-ହାର ।

ଆମେ ଯେ କାଶି ଆଗେଇ ଯାଉ,
ଆଡ଼େଇ ଭାଷି ବାଗେଇ ଧାଉଁ,
ଧରୁନା ରାହା,
ଡାହାଣ ବାଆଁ,

ମଧ୍ୟମ ଯେ !
ନିଜକୁ ନିଜେ ଅଡ଼ାଇ ଆହା !
କଢ଼ାଉ ବାଟ,
ସରଳେ କେତେ,
ବଢ଼ାଇ ବାଡ଼ି ସତ !

କାଗଜ-ଗୀତି-କବିତା-ରାଜା
କି ମନୋହରୀ ଛବିରେ ତାଜା !
ବାରଜ କରି ସଜାଉ ନିତି
ମିଛରେ ସତ, ସତରେ ମିଛ ମତ !

ଆମେ ଯେ ସବୁ ପୁରୁଣା ନୂଆ
ବନ୍ୟା-ଧୂଆ ବିଲରେ କେତେ
ଆଶ୍ୱିନର କାକରେ ରୁଆ,
ଶାଙ୍କର-ପୂଆ ନଥିରେ କେତେ
ନୋହୁ କି ଆମେ ବନ୍ଧାଧରା ଗତ !

ଗହଳ ମନ ବିଜନ ଘରେ
ବହଳ ଫୁଲ-ବିଛଣା-ପରେ,
ତଥାପି କାହୁଁ ଅକାମକାମେ
ଭୁବନଜୟୀ ଶୋଷ କି ଆମେ,
ସୁରାରେ ଆହା !
ସ୍ନିଗ୍ଧ ରାଗେ
ମରମମୋହୀ ନୀରା !

ପୋକରା ହୃଦ ସରସି ଯାଉ,
ଗୋଖରା ଆଖି ତରସ ଖାଉଁ !
କରୁଣା ବୁଣୁଁ କରୁଣ ସୁରେ
କେବେ କି ଆମ ରୁଧିର ପୂରେ
ଅଧୀରେ କହ ନାଚୁନି କାହିଁ ଶିରା !

ତାରାର କୂଳେ ଦେଖି କି ଦେଖୁ
ଆମରି ନୂଆ ଶିଶୁର ପାଦ
ଗରବେ ମାରେ ଚିରା ?

ବାହାର ବିଷ ଘରକୁ ଆଣି
ଘରର ବିଷେ ମିଶାଉନୁ ତ
ମଇରିଗିରା-ବାଣୀ ?

ପୀରତି ଯେତେ ପୂଜେଇ ଉଠେ
ଭୁଡୁକା ମାରି ଭୂରୁର ତୁଠେ,
ଆମେ କି ତାକୁ ଫିଙ୍ଗିଦେଉ
ଜୀବନ-ଢଳୁଁ ଛାଣି ?

ସାତ୍ତ୍ୱିକତା ତତ୍ତ୍ୱ-ଶାଖେ
ମୃତ୍ୟୁମୟୀ ଜୀବନୀ ପାଖେ,
ଆମେ କି ନୋହୁ ଚରମ ନାଶୀ,
ପରମ-ଆଶୀ ?

ରକ୍ତ ଶୋଷ ନିଜର ବୁକୁ
ରକ୍ତବାହୀ ଦାନରେ କେତେ
ଅଜ୍ଞତମ ଜ୍ଞାନୀ ?

ନିଜକୁ ନିଜେ ନିଖାରି ଥରେ
ଓଲଟ ଫୁଲ କେଶର ପରେ,
ଜହ୍ନହୀନ ଲୁହର ପାଟେ
ଉବେଇଛୁବି ନିଜକୁ ଭଲା ଦେଖୁ ?

ନିଜକୁ ନିଜେ ମଣୋହି କରି
ନିଜର ଧୂପ ନିଜେହିଁ ଧରି
ନିଜେହିଁ ସିନା ମାଦଳ ସମ
ଅଦେଖା ଆମ ବଢ଼ିମା-ଭୁଜ ଟେକୁ !

ଆମେ ଯେ ସବୁ ଚାଲିଚୁ ଆଗେ,
ଚାଲିଚୁ ପଛେ, ଚାଲିଚୁ କରେ,
ଧୂଳିର ତୁଲେ ଫୁଲର ମୂଳ
ମୂଳରେ ଫୁଲ-ରାଣ,

| ୨୬ |

କରୁଣା ଯାଚୁଁ ନୟନ ବୁଜି
ଆମେ କି କେବେ ପାରୁଚୁ ବୁଝି
ଫୁଲ ତ ହୁଏ ଗରୁଆ କେଡ଼େ
ମେରୁରୁ ବଳି ଟାଣ !

ଆପୋଷ-ରୀତି ଆତୁରା ଭୀତି
ଜାଣେ ସେ କାହିଁ ଜାଣେ ?
ମଉଳେ ପଛେ ହସରେ ମାତି,
ସ୍ୱପନ-ସାଥୀ
ମହଲ ସାଥେ ଯୁଝିରେ ଯୁଝି
କଲୁଷ କାହିଁ ମାନେ ?
ଝରି ସେ ନିତି ଝରାଏ ତାର
ଧରାରେ ପ୍ରୀତି-କୀର୍ତ୍ତି ଧାର
ଖେଳାଇ ଦିଏ ଜୀବନମିତି
ମରଣଜୟୀ ଗାନେ ।



# ନୀରବ ଇନ୍ଧନ

ଏ ଯୁଗର ପୁଣ୍ୟ ପରିପାକେ
ଆମେ ଯେତେ ନୀରବ ଇନ୍ଧନ,
ଆମେ ଯେତେ ବେଦନାର, ଗ୍ଲାନିର ଆଲୋକ !

—ସୂର୍ଯ୍ୟ ମରେ, ସୂର୍ଯ୍ୟ ଜୀଏଁ !—
ଆମେ ଯେତେ ଅଭଗ୍ନ ପ୍ରତିମା,
କୋଟି କୋଟି ତାରକାର
ବିମୂର୍ତ୍ତ କାହାଳୀ !

ଅନଶ୍ୱର ଅସ୍ଥାୟୀର ଆକାଶ ଖନନେ
ଝାଳର ଝରଣା ତୀରେ
ହୃଦୟରେ ଢାଉର ପାହାଡ଼େ
ଉଷାର ମନୀଷା ଫୁଟେ
ରାତ୍ରିର ନିଃଶ୍ୱାସ !

ଏ ଯୁଗର ପୁଣ୍ୟ ପରିପାକେ
ଆମେ କି ନୋହୁରେ ଯେତେ
ଚିତ୍ତର ବିଶ୍ଳେଷେ ତୁମ
ଶସ୍ୟର ଜୃମ୍ଭଣ

ଚିତ୍ରିତ କଥାର ଯେତେ
ଚିନ୍ତିତ ପୂଜାର ଯେତେ
କୋଥଳି ବୁକୁରେ
ମୁକ୍ତିର ବନ୍ଧନ ସବୁ
ମୃତ୍ୟୁର ଦାବୀରେ କେତେ
ନିର୍ମମ ବିଶ୍ୱାସ !

ପାର୍କ-ବୃନ୍ଦାବନେ ସବୁ
ନିଷ୍ପାପ ଯୌବନ ଆମେ,
ଏ ଯୁଗର ପୁଣ୍ୟ ପରିପାକେ
ନରକର ସ୍ୱର୍ଗୀୟ ସୁଷମା

ଆମେ କି ଜନ୍ତୁ ଏଠି,
ସୃଜନର ସୂପକାର,
ଧ୍ୱଂସର ଧୃତିରେ ନିତି,
ଜ୍ଞାନାନ୍ଧ ଦର୍ଶନ ମୁହେଁ
ବାଢ଼ି, ବାଢ଼ି,
ଅକୁଣ୍ଠିତେ ପୁଷ୍ପର ଡିନର୍ !



# ବେଳେ ବେଳେ କିଆଁ କବିତା ଲେଖେ

ଆପଣାକୁ ଆପେ ପଚାରି ମରୁଚି
ବାଉଳି ହୋଇ
ବେଳେ ବେଳେ କିଆଁ କବିତା ଲେଖେ !
କେଉଁ ନିଉଛୁଣା ଛଇଳି ନିଆଁରେ
କାଉଳି ହୋଇ
କେଉଁ ଅପାଶୋରା ସପନ ଦେଖେ !

କାହିଁ ତାରାଶେଯେ ଝରିଲା ଯୂଇ,
ମଳୟ ଲୀଳାରେ ହୃଦୟ ଛୁଇଁ
ଡହ ଡହ ତେବେ ଶରଧାବାଲି ରେ
କେଉଁ ବିଧୁରାର ଅଧରଗାର ମୁଁ
ଧରାରେ ଅଧରା ଲେଖି ନ ଲେଖେ,
ବେଳେ ବେଳେ କିଆଁ କବିତା ଲେଖେ !

କେଉଁ ଉଆଁସୀର ଡାହାଣୀ ଆଖିରୁ
ପାଖେଇ ପାଖେଇ
କୁଆଁରୀ ଆଶାର ଶଶୀକୁ କାଖେଇ
କାହା ଓଳିତଳେ
ତିମିର ଗହଳେ
କେଉଁ ଯୋଷାମଣି ହୁଏ ଲୋ ଛିଡ଼ା !
ଲୁହ ସରସର
ଲହୁ ଜର ଜର
କି ପାଟଫୁଲିରେ ଫୁଲା ମରମ କି
ସରମେ ଭିଡ଼ା !

ମଲା ଶାମୁକାର କାହାଣୀ ଗୋଟାଇ
ତୋଳା-ଜାମୁକୋଳି ଲହଡ଼ି ଲୋଟାଇ
ଉଷା-ଉହ୍ଲେଇରେ
କେଉଁ ନିଶି-ଚଲା ଥକିଲା ମନର
ପରାସ ସେକେ !
ବେଳେ ବେଳେ କିଆଁ କବିତା ଲେଖେ !

କେତେ ନିଃଶ୍ୱାସେ ସୂର୍ଯ୍ୟ ଉଡ଼ାଇ—
ଧାଇଁଚି କାଳ !
କେଉଁ ମହିମାରେ ଜ୍ୟାମିତିମାପ !

ନୂଆ ପ୍ରମିତିର ଛାତିରେ ଗୁଡ଼ାଇ
ଆଲୋକମାଳ,
କେଉଁ ପୀରତିରେ ତୁଷାର-ତାପ !
ଶବଦସାଗରେ କି ନାହା ନଚାଇ
କେଉଁ ନିଶବଦ ନୁପୂର ଯଚାଇ,
କେଉଁ ବିରହିଣୀ ରାକା-ରକେଟ୍‌ର
ସ୍ମୃତି-ପକେଟରେ
ଝରାଇ ଦିଏ ରେ ନୂଆ ଜୀବନର
କେଉଁ ଜେମାମଣି ମଧୁରାଳାପ !

କବିତା କି ମୋର କେଉଁ ଉଆସର
କି ଖରା ବାରେଣି ଛାଇର ଲୀଳା ?
ହିମାଳ ରାତିରେ
ମରମୀ ତାତିରେ
ଛଇଳ ଛାତିରେ
ମିଶାଣ ଫେଡ଼ାଣ ଗୁଣନ ବ୍ୟଥା
ପୋଡ଼ା ବଳିତାରେ ମହକ କଥା ?

କେଉଁ ଅକାମୀର ଅକାମ କାମରେ
ଖାଲି ଅବିରାମ ଆହା-ଆରାମରେ
ଆଶା-ଶିଉଳିରେ ଅତୁଠ ଶିଳା ?
ଓହଳା ଥନର ଝୁଲିରେ ଝୁଲିରେ
କୁତୁକୁତୀ କେତେ ତରୁଣ ପତା ?
କବିତା କି ଖାଲି
କେତେ ଜିଗୀଷାରେ
ବିଜୟ ଭେରୀ
କେତେ ମୂରଲୀରେ ଚାମେଲି ଚେରୀ ?
କେଉଁ ପଥୁରିଆ ଓଠ-ପୋଟିକୋରେ
କେଉଁ ଫୁଲେଇର ଆଇଭିଲତା

ବାହାରେ ଭିତରେ ପାଣି ପବନର ନିରୋଧ ଚାଲେ !
କେଉଁ ଚପଳାର ପ୍ରୀତି ଚୁମ୍ବନେ
କେଉଁ ପ୍ରାଣାୟମେ ଆଖିର ଚୁମା ?
କାହିଁ କିଶୋରୀର କାଇଁଚ ପେଡ଼ିରେ
ପଁଇଚଫାଳେ ରେ
ଟିକେକ ଯୋଗରେ ବିଯୋଗ ଭୂମା !
ମଣିପଦ୍ମରେ ସାଧନା—ଭଁଅର
ଅବୁଝ ଖେଳା,
କବିତା କି ଖାଲି ଅମନ ମନର
ଗହନ ମେଳା ?

ଜନମେ ଜନମେ
ମରଣେ ଉଡ଼େ ?
କେତେ ରସିକିନୀ ରହସ୍ୟମୟୀର ଓଢ଼ଣା ଚିରି
ମରଣେ ମରଣେ
ଜନମେ ବୁଡ଼େ !

ଆପଣାକୁ ଆପେ ପଚାରି ମରୁଚି
କି ଗୀତ ଗାଇ !
ବେଳେ ବେଳେ କିଆଁ କବିତା ଲେଖେ ମୁଁ
କି ଲାଭ ପାଇଁ ?

କେତେ କେ କବିତା
ଲେଖିଗଲେ ସତେ,
ଅପଥ ପଥେ,

ମଜାଇ ମଜାଇ
ପୁରୁଣାରେ ନୂଆ
ନୂଆରେ ପୁରୁଣା ଫୁରୁଣା ମନ
ସତ କିରେ ଖାଲି
ଉଷ୍ଣ ବାଲିରେ ଅସରା ଚାଲି,

ନିଭିଯିବି ଯେବେ
ଜଳିବି ନି କିଆଁ
ଜଳିବି ନାଇଁ ?

କଳିବିନି କିଆଁ
ଧୂଳିର ମରମ
ସରଗ-ସପନେ
କ୍ଷଣକୁ କ୍ଷଣ !



# ମନରୁ ଖିଏ

ଆଲୁରି ଜହ୍ନଟା, ଛିଇ, କାହାର ଝିଅ ଲୋ !
ସଫେଦ୍ ସିଲ୍କ୍‌ର ହସ ଖସାଇ ଛାଡିରୁ, ମଲା !
ଖଟେଇ ହୋଇ କି ସତେ
ଲୁଚିଗଲା, ଲୁଚିଗଲା-
ଦେଉଳ କାନିରେ, ହେଇ !
ଅହେଦୀ ଦେହର ଅବା !

ଅଶ୍ଳୀଳ ଆକାଶ ତଳେ
ଏଡ଼ିକି ନିଲଠି, ଛିଇ !
ପ୍ରଗାଢ଼ ରତିର କୋହେ ହାଲୋଳ ପକାଇ ଦେଲା,
ଅନଙ୍ଗରେ ଲୋଡ଼ି ଲୋଡ଼ି ଅନୂଢ଼ା ବ୍ୟଥାରେ କାହିଁ !

ଜରତୀ ରାତିର କଳା,
ଫଣଫଣି-ମୁହାଁ ସେ ତ,
ଥରିଲା ବିରସେ ଖାଲି...
ଫୁଲର ପଲଙ୍କେ ଲୋଟୁ !
ନଶ୍ୱର ଦେବତା ଦାରୁ
କି ବଡ଼ ଶୃଙ୍ଗାରେ ଜଡ଼ !

ମୁହଁ ପୋତି ହଜିଥିଲା
ମାହାରୀ ହାହାରେ !
ଉତ୍ତମ ପୁରୁଷ ପରା ମଜିଗଲା ପ୍ରକୃତିର ତତ୍ତ୍ୱିକ ତୃଷାରେ !

ଭାଜିଲା ବଜାର ବାଟ,
ଆହା କେତେ ଆରାଧିକା ଯାତ୍ରିଣୀର ଅଭିଶାପେ
ଚଗଲି ଜହ୍ନଟା, ଛିଇ,
ଏଡ଼ିକି ଛଇଲି ପୁଣି !
ନାଚିଗଲା, ନାଚିଗଲା...
ଛୁଇଁ ଛୁଇଁ ମନ-ଛାଇ, ନ ଛୁଇଁ ନ ଛୁଇଁ କେତେ
ଶ୍ଳୀଳତା-ବାଲିରେ !

ମଳୟ ପିଟେ ଯେ ମଥା କୁହାଟି କୁହାଟି, ହାୟ !
ନାଗେଶ୍ୱରୀ ଭୂଲତାର ପାଖୁଡ଼ା ଛିଡ଼ାଇ ସୁଖେ
ଫର ଫର ଅଦେହୀର ଦେଉଳ ନେତ ଯେ !

ତୁନି ହୁଅ ସମୁଦ୍ରରେ !
ଥମ୍ଭନ୍ତୁ, ଥମ୍ଭନ୍ତୁ କିଆଁ,
ଏ ମୋର ବୁକୁରେ !



# ଏଇ ମାତ୍ର ସାତଟା କୋଡ଼ିଏ

ଏଇ ମାତ୍ର ସାତଟା କୋଡ଼ିଏ !
ବସନ୍ତ-ଉଆସେ ମୋର
ଝାଟିମାଟି ବସନ୍ତ ଉଆସେ–
ଚେଇଁଚି କି ଚେଇଁ ନାଇଁ
ଡୋଳାର ଡାଳିହା କେତେ ଡୁଳେଇ ଡୁଳେଇ,
ଫୁଲେଇ ଫୁଲେଇ
କାଢ଼ିଚି କି କାଢ଼ି ନାଇଁ
ଅଲାଜେ ଲାଜୋଇ ମୁହଁ
ମୁହଁର ବଜାରେ !
ଏଇ ମାତ୍ର ସାତଟା କୋଡ଼ିଏ !

ସ୍ୱପ୍ନର ବ୍ରିଜ୍ ଟପି
ବିଷୟ-ସୁଡ଼ଙ୍ଗେ ପଡ଼ି
ସେ କେଉଁ ନିଖାଦ-ଖାଦେ,
ଭିଡ଼ିମୋଡ଼ି ହୁଏ ଦୂରେ ମେଳର କାମିନୀ,
ଘୂଉଁ ଘୂଉଁ ଭଅଁରର ଜେଟ୍‌ର ଜ୍ୟାକେଟ୍ ତଳେ
ବାଢ଼ିଲା କି ପ୍ରାତରାଶ
ଟଟକା ହୋଷ୍ଟେସ୍ କେଉଁ ତୁଟୁକା ପ୍ରୀତିର !

ଡେଇଁ ଡେଇଁ ଗୁମାନର ଗେଣ୍ଡରୁ ଗେଣ୍ଡୁକୁ
ଅପାଣ୍ଡୁର ପ୍ରଜାପତି
ପୁରୁଣା ନିହାତି କାହିଁ
ଯାଚେ କି ହୃଦୟ ଟିକେ
ଦି'ବୋଡ଼ି ବୋଡ଼ିଏ !
ଏଇ ମାତ୍ର ସାତଟା କୋଡ଼ିଏ !

/ ୩୬ /

ଉଆଁସ ଓଳେଇ ସାରି, ମୁହାଁସର
ଆକାଶ ଏ,
ଲିପି ପୋଛି ନିଚିପଲେ ଦିଗନ୍ତ-ଅଗଣା,
ଘଣ୍ଟାଏ ଦି’ ଘଣ୍ଟା ହେଲା ?
ନାଇଁ, ନାଇଁ,
ଏଇ ମାତ୍ର ଯାଇଚି ସେ ଚାଲି—
ବାସନ୍ତୀ ଶାଢ଼ୀଟା ତାର, ବିଜୁଳି ଖମ୍ବରେ ଲାଗି
ମେଘର ଫେଷ୍ଟୁନ୍ !!
ଝଟ ଝଟ ଫୁଲ-ଝୋଟି ଦେହର ବାଡ଼ରେ ଏ ଯେ !

(ରହ ରେ ଅନରୁ ! ରହ,
ନଚାନା ନଚାନା,
ଆଉ ନୂପୁର
ନିଚୋଳ ତଳେ...
ଚତୁରୀ କୁଳର ନୂଆ— !

କରୁଣ ଅର୍କେଷ୍ଟ୍ରା ଥରେ
କୁରୁଳି କୁରୁଳି ପୁଣି !
ତୋ ମାୟା-ମାଳଞ୍ଚେ ପରା ?)

ଘାସର ମୁଚୁଳାପରେ
ଏଇ ଯେ ଚିକ୍ ଚିକ୍ କରେ
ଲିପ୍‌ଷ୍ଟିକ୍ ନାଲି !
ଏଇମାତ୍ର ଯାଇଚି ସେ ଚାଲି !

ମେଲାଣି ନେଇ ନି, ସତ !
ତା’ ଛଡ଼ା-ମହକଟିକ ଟେବୁଲ ପୋଥିର ମୋହେ,
ଅତୁଆତତୁଆ ତା’ର ଆଲୁଅ ରିବ୍‌ବନ୍ ସବୁ
ସମୁଦ୍ର-ଚାଦର ପରେ ଗୁଡ଼େଇ ତୁଡ଼େଇ !!

କି ଛାଲ ମେଲିଲା କିଏ ?

ସୁନାର ସର୍ପିଣୀ ଦଳ
ଫଅଁ ଫଅଁ ଶୀତ୍କାରିଣୀ ରାସ୍ତାର ତମାଳଦେହେ !
ସକାଳର ସାତଟା କୋଡ଼ିଏ ମାତ୍ର
ନୁହେଁ ତ ରାତ୍ରିର !

ତରବରେ ଢୋକି ଦେଇ
ପହିଲି ପିଆଲା ମୋର,
ପହିଲି କାମର,
ଈର୍ଷାରେ ମୁଁ ଜଳିଗଲି,
ଅହଙ୍କାରେ ପୋଡ଼ିଗଲି
ଜ୍ୟାମିତିର ସୂତ୍ର ଅବା ନିର୍ବୋଧ ସାହିତ୍ୟ ପରି
ଆଦୌ ଅଦ୍‌ଭୂତ ନୁହେଁ !
ଅମରତ୍ୱେ ମରିଗଲି !
ଏଇ ମାତ୍ର ସାତଟା କୋଡ଼ିଏ !

ମୁଁ କି ତାକୁ ଦେଇ ନାହିଁ
ପ୍ରାଣର ପ୍ରାଚୁର୍ଯ୍ୟ ମୋର
ଆଶାର ଅର୍ଜନ ଯେତେ
ମିହନ୍ତି ଆଶ୍ୱାସ ?

ମୁଁ କି ତାକୁ ଦେଇ ନାହିଁ
ହିମନ୍ତ ଉଷ୍ଣତା ଯେତେ,
ଦାବୀହୀନ ହାହାକାର,
ସ୍ନାୟୁର ଉଲ୍ଲାସ ?
ଘନ ଘନ ଆତ୍ମହତ୍ୟା ପଥରେ ପଥରେ ନିତି
ଅଗତ୍ୟା ସାନ୍ତ୍ୱନା ସ୍ଥିତି,
ଭୀରୁତା ପ୍ରତ୍ୟନ୍ତେ କେତେ
ଶୌର୍ଯ୍ୟର ମିନତି ?

ଏକାନ୍ତ ମୋହର ଦାବୀ,
ଏକାନ୍ତ ମୋହର ସେତେ
ସେ କିମ୍ବା ପ୍ରସରିଗଲା ସବୁରି ମର୍ମର ତଟେ
ସବୁରି ଚିବୁକ ଛୁଇଁ ?

ସେ ତ ଯାଇନାହିଁ ଆଉ ମେରୁର ମହୁଡ଼େ କା'ର
ପ୍ରେୟାରି ସୋଫାର ହସେ
କ୍ଷେପିର ଶେଯକୁ ?

ଗଣ୍ଡର ଗଣ୍ଡୋଲା-କୋଳେ
ଭାସି ଭାସି ଅଭିସାରେ
ଥରୁ ନାହିଁ ଭୋୟାଲିନ୍
ଭରମି ଭରମି ଏବେ
ଡେରି ଡେରି କରି କେଉଁ
ଢଳ ଢଳ ଟଳ ଟଳ
ନାଇଟ୍‌କ୍ଲବର ତୁଠେ
ଶୀତର ସ୍ମୃତିରେ ତାହି ଜାଜ୍, ବିଥୋଫେନ୍ !

ମାଟି ହେଲା ହେଉ ମାଟି !
ସାତଟା କୋଡ଼ିଏ ଏଠି,
(ସମୟର ସୁଏ ତାଟି ?)

ସୁନ୍ଦରୀ କି ଦୋଚାରୁଣୀ
ବିରୋଧ-ବ୍ୟଞ୍ଜନା ?
ସୁନ୍ଦର କି ବ୍ୟଭିଚାର ?
ଜାଣେ, ସେ ଲୋଟିବ ଜାଣେ,
ଅବାଧ କୌତୁକେ ତାର
ପ୍ରତ୍ୟେକ କପୋଳ ପରେ
ନରମ ଗର୍ବରେ !!

ଜାଣେ, ସେ ଫୁଟିବ ଜାଣେ,
କଣ୍ଡର ବିଭାଷ୍ଟୁ ଝରି
ସରମ ପର୍ବରେ
କେତେ,
ଯୋଡ଼ି ଦେବ ମୁହେଁ ମୁହଁ
ଅଳସ, ଅଳସ,

ଜଡ଼ାଇବ ଆଢ଼ନୁଆଁ ଭୂରୁର ତୋରଣେ
ରସାଳ ମଞ୍ଜରୀଟିଏ ଚିନାର୍ ଭୁଜରେ
କେଉଁ,
କଥାରେ ଗୁଞ୍ଜରୀ,—
''ଉଠ ଆଗୋ ! ଉଠ, ଆଗୋ !
ଛିଇ, ଥାଉ ଥାଉ.. ଆଉ...
ହୁଡ଼ ନା,
ଭିଡ଼ ନା—
ଏ ଯେ....

—ଜଳିଗଲି, ଜଳିଗଲି,
ପ୍ରାଣର ଜ୍ୱାଳାରେ ତା'ର
ସ୍ନେହାଂଶୁ ମାଳାରେ !

ସବୁରି ଅଧରୁ ଆଣି ଆରକ୍ତ ଚୁମ୍ବନ ସେ ତ
ମିଶାଏ ଚୁମ୍ବନେ ମୋର,
ମୋ ଚୁମ୍ବନ ଗୋଳିଦିଏ
ସବୁରି ଚୁମ୍ବନେ ନେଇ।
ମୋ ନେତ୍ରନେଞ୍ଜରା ଲୁହେ,
ପଞ୍ଜରାର ସରୋରୁହେ,
ପ୍ରାଣର ଜାଳାରେ ତାର—
ଅତୋଷ୍ୟା ଆରତି-ରତି
ଅଛି, ଅଛି,
ନାହିଁ, ନାହିଁ !

ଜଳିଗଲି କି ସୁଖରେ—
ସକାଳ,
ସକାଳ ଏ ତ !
ସାତଟା କୋଡ଼ିଏ ମାତ୍ର,
ସାତଟା କୋଡ଼ିଏ।



# ହାସପାତାଳରେ

ଫୁଲ ତୋଡ଼ାଟିଏ ରୋଗୀର ଟେବୁଲ ପାଖେ
ଚୁବି ଗାଡ଼ିଆରେ ଚବ ଚବ ବାଇଝାଲି,
ସମରେ ଅସମ, ଫାଙ୍କାତାଳେ ଗୀତି ଖର,
ମନର ଗହନେ ଆତ୍ମାର ପ୍ରେତ-ତାଳି !

ସେ ମତେ ଭୁଲିଚି, ମୁଁ ତାକୁ ଭୁଲିଚି ସତ ?
ଦେହର ଗୁହାରେ ଆଦିମ ତୃଷାର ନିଁଶି !
ଶୂନ୍ୟ ଲଫାପା, ପ୍ରଶ୍ନ-ପ୍ରହେଳି-ବାସ,
ରଦ୍ଧ ପେଡ଼ିରେ ଭଙ୍ଗା ଅତର ଶିଶି !

ଆକାଶେ ଯେବେ ମୋ' ଅଙ୍ଗୁଳି କାଟେ ଗାର,
ସେମ୍‌ତା ହସରେ ଖେମ୍‌ତା ମଡ଼େଲ୍ ସେ କି ?
ଦଗ୍‌ଧ ଓଠରେ କମ୍ପନ, ରୂପ-ଜ୍ୱାଳି !
ଉଜୁଡ଼ା ହୁଡ଼ାରେ ଚୂର୍ଣ୍ଣ ଘାସର ଚକି ?

ସେ ଏକ ଚାତୁରୀ ଉତୁରି ପଶିଚି କେତେ,
ଝରା କେଶରର ଅଘରି ପରାଗ-ମେଳେ !
ଫୁଲ ତୋଡ଼ା ପଛେ ଦେହ ଭସ୍ମର ଢେଉ
ଲୁହ ଚୌପିକରେ ସେ ତ ଅମାନିଆ, ଖେଳେ !



# କବିତାର କକ୍‌ଟେଲ ପାର୍ଟିରେ....

ହେ ମୋର କଙ୍କାଳ ସବୁ,
ସଫଳ ବ୍ୟର୍ଥତାର !
ହେ ମୋର କୋଟରାୟତ ଚକ୍ଷୁ,
ପ୍ରମତ୍ତ ବ୍ୟସ୍ତତାର !

ଟ୍ରେନ୍ ଯେତେ ଭାଙ୍ଗୁଚି ଆଜି, ଭାଙ୍ଗୁ !
ବିମାନ ଯେତେ ଧ୍ୱସ୍ତ ହେଉଚି, ହେଉ !
ତାରୁଣ୍ୟର ହସ ଯେତେ ପିଚ୍‌କାରୀ ମାରୁଚି, ମାରୁ !
ଦୁଃଖ ଆଉ ଯାତନାର
ଡବ୍‌ଲ୍‌ଡ଼େକର୍ ତଳରେ—
ଛିନ୍ନ ଏକ ମୁହୂର୍ତ୍ତର କୋଣରେ,
ଆଜି ପୁଣି କକ୍‌ଟେଲ୍ ପାର୍ଟି ଏ.... !

ବେଶବାସର ବିନ୍ୟାସ ତୁମର, ସାରିଁଚ ତ ?
ତୃପ୍ତିର ନେପଥ୍ୟରେ ?
ନୂତନତମ ପ୍ରତୀତିରେ ?
ଗତାୟୁ ଯେତେ ଐତିହ୍ୟର କଟାକ୍ଷକୁ ଭୁଲି,
ଝୁଲ ଟିକେ, ଝୁଲ !

ହିମାଦ୍ରିର ଗର୍ଭରୁ ହୋମାଗ୍ନିର ଆହ୍ୱାନ ଏଇ, ଆସେ !
ଘାତକର ଜହ୍ନ ଏଇ ଉଠେ !
ତୁମର ଆଉ ମୋର
ଲୌହର ପତାକାରେ ଲହଲହ ଜିହ୍ୱା ତାର,
ଜିଘାଂସାର !

ଭୁଲ, ଥରେ ନଥିର କଳଙ୍କ ତୁମେ, ଭୁଲ !
ଯୁଗର କାନ୍ତରାଟି ସବୁ,
ସାରଲ୍ୟରେ କୁଟିଳ
କ୍ଷମତାର ଦଲିଲ ସବୁ ଭୁଲ !

ଓଠର ଟେବୁଲ୍ ପାଖେ—
କାଳର କ୍ୟାଟରର୍ ମୁଁ, ଠାରେ !
କୋଟି କୋଟି ସ୍ୱପ୍ନର ମେନ୍ୟୁ ଲେଖି,
ବିମୂର୍ତ୍ତ ବାସନା ମୁଁ, ଠାରେ !
ଆଦେଶ ଦିଅ ପ୍ରୀତିର,
ଅଗ୍ନିମୟୀ ପ୍ରୀତିର !

ତୁମେ କ'ଣ ଜାଣ ନା ?
ଶ୍ରାବଣର ମେଘ ଆଜି ଉଦ୍‌ବାସ୍ତୁ !
ଭ୍ରାନ୍ତିର ଉତ୍ସଙ୍ଗରେ ଭ୍ରାତୃହତ୍ୟାର ନୃତ୍ୟ ହିଁ, ସତ୍ୟ !
ମୈତ୍ରୀର ଅରଣିରେ ଅକୃତିର
କେତେ କେତେ ରଶ୍ମିର ଶସ୍ୟ ଆଜି, ଚୂର୍ଣ୍ଣ !
ତାରାର ତାର-ବାଡ଼ରେ ପ୍ରଣୟର ବିଭକ୍ତି, ଖାଲି !
ଶୂନ୍ୟର ଜ୍ୟାମିତି !

ହେ ମୋର କଂକାଳ ସବୁ,
ନିର୍ଜଳ ସାଧନାର !
ହେ ମୋର କୋଟରାଗତ ଦୃଷ୍ଟି,
ସଂଗୁପ୍ତ କାମନାର !
କୁମ୍ଭପକା ଉତ୍ତରୀକୁ ଖସାଇ
ଭୀରୁ ଯେତେ ଦାସ୍ୟମୟ କାବ୍ୟର,
ସିନ୍ଥେଟିକ୍ ବାସର ନଗ୍ନତା ନାଚୁ ପଛେ, ନାଚ !
ବର୍ବର ଦାମ୍ଭିକତାରେ
ଶାସନର କାନ୍ତାରରେ, ନାଚୁ !

ନାଳଘର ଚିତ୍କାରରେ
        ପ୍ରୀତିର ଏଜେଣ୍ଟ ଆଜି କାହିଁ ?
ତାହାର ଲୋକରେ ଶୋକର ପୂଜାରୀ ସେ ଭୋଗୀ !
                କବିତାର କକ୍‌ଟେଲ୍ ପାର୍ଟି, ଏଇ !
                —ଯେଉଁଠି ପୁଷ୍ପ-ହୁଏ କୀଟ,
                        କୀଟ ହୁଏ ପୁଷ୍ପ ;
                ଯେଉଁଠି ବହ୍ନି ହୁଏ ଅଶ୍ରୁ,
                        ଅଶ୍ରୁ ହୁଏ ବହ୍ନି !

                ସ୍ୱର୍ଣ୍ଣର ଈଗଲ୍‌କୁ ଥରାଇ—
                        ତୀବ୍ର ହୁଅ ! ତୀକ୍ଷ୍ଣ ହୁଅ !
                        ଆଦିତ୍ୟର ବର୍ଣ୍ଣରେ
                        ଜୀବନର ଯଜ୍ଞବେଦୀକୁ ଘେରି,
                        ତାଣ୍ଡବ ଆଜ ହଲ୍ଲୀଷକରେ ତୁମର,
                            ତୀବ୍ର ହୁଅ ! ତୀକ୍ଷ୍ଣ ହୁଅ !
                            ଅଧ୍ୱର୍ଯ୍ୟୁସବୁ ନୂତନତମ ଯଜୁଃର ।

ଘୃଣାର ପ୍ରାଚୀରକୁ ଧସାଇ—
        ଅଧୀର ସଂକେତରେ ତୁମର
            ଆଦେଶ ଦିଅ ପ୍ରୀତିର,
            ନିର୍ମତମ ପ୍ରୀତିର !!

                କାଳର କ୍ୟାଟର୍‌ର ମୁଁ,
                            ଚାହେଁ,
                        ବିନମ୍ର ଗର୍ବରେ
                            ଚାହେଁ ।
                        ହେ କଂକାଳ ସବୁ,
                            ଶିଳ୍ପୀର !
                ହେ ମୋର କୋଟରାୟତ ଦୃଷ୍ଟି ସବୁ,
                            କବିତାର !



# ପ୍ରକାଶ

ଖୋଲି ଖୋଲି ଦେଲି ନିଜକୁ
ଯେତେ ମୁଁ,
ଆଲୁଅ-ପାଖୁଡ଼ା ନିତି
ବାହାରି ପଡ଼ିଲି ଏକା,

ବୁଜି ବୁଜି ଗଲି ସେତିକି କାହିଁକି,
ଆଘାତୁଁ ଆଘାତେ,
ଭିଜା ଆଖିପତା ରୀତି !
ନିଜଠି ରହିଲି ଲେଖା !

ନିଜର ହୃଦୟେ ନିଜକୁ ରଖିଲି
କେଉଁ ଟସରର କୀଟ।
ବସି ବସି ବୁଣେ ପାଟ-ବେଢ଼ଣର ବନ୍ଦୀଶାଳା ମୁଁ,
ଯୁଗ-ବଣିଜାର ପଛେ ପଛେ, ସତେ !
ମୁରୁଛ ବଜାଇ ବିଟ !

ଜାଣେ ମୁଁ, ଖିଝିବି ନିମିଷ ପରେ ରେ !
ହେବି ମୁଁ ଉତୁରୀଟିଏ !

ସୂଚନା ହୋଇ ମୁଁ ସ୍ନେହର ଶହୀଦ୍
ସାଜିସୁଜି ହୋଇ ଉଡୁଥିବି କେତେ,
କେଉଁ ସୁତନୁର ତଟେ—

ସେଇକି ମୋହର
ସାର୍ଥକ ପ୍ରୀତି-ଖିଏ !!
ବୁଜି ବୁଜି ହୋଇ ସେଇଥିପାଇଁ କି
ନିଜର ଭିତରେ ଜୀଏଁ ?



# ନାଇଁ ତାର ନାଆଁ ନାଇଁ

ଆକାଶ ଉତୁରି ପଶେ ଧୂଳିର ମରମେ ଯେବେ
ତୁମେ କି ଦେଖିଚ ତାକୁ ? ହୁଏତ ଦେଖିନ !
ନାଇଁ ନାଇଁ ନୁହେଁ ସେ ତ ଅଲେଖ ଶୂନ୍ୟରେ !
ହେଇ ସେ ସହଜ ଅତି ସରୂପ, ସଭାବ
ହେଇ ସେ ତ କଟିଗଲା ଅମୁହାଁ କଳରେ !

ସାବଧାନୀ ଥିଲା ସେ ତ ସବଳ ଚତୁର କେଡ଼େ
ତୁମ ମୋଓ ପରି ଥିଲା ମହତ୍ ଓ ଅମହତ୍,
ଉଦାର କୃପଣ,
ଘୃଣାର ଖଙ୍କାରେ ଲୋଟି ସ୍ନେହର ଖନିଜ ଖୋଳୁଁ
ଶହୀଦ୍ ହେଲା ସେ ଏବେ—
ମାନିବ ତୁମେ କି ?

ଦେଇନି କିଛି ସେ—(ମାନିବା ନିଃସାର ତୁମ !)
ପ୍ରୀତିର ମଜୁରି ତାର
ଦଳ-ଅଦଳରେ, ଅବା
ଦେହର ଦିଅଙ୍କୁ !–
ଖାଇଚି ସବୁ ସେ ନିଜେ, ଖାଇଚି ଏକାକୀ,
ଉଡ଼ାଇଚି ଦିନ ତା'ର ଦିଲ୍‌ଖୁସ୍ ହସରେ ।

ତୁମର କୃପାରେ କାହିଁ ଗଢ଼ିନି ଅଟ୍ଟାଳି
ଚଢ଼ିନି ମଟର ତିଳେ, ବାଢ଼ିନି ଉତ୍ସବ,
ଅବାଧ ହୋଇନି କେବେ ବିଧାନ ବିଧିର ଯେତେ,
ଅସାଧେ ହୋଇନି ଲେଖା ପୁଲିଶ ଖାତାରେ...
ଥିଲା କି ତାକୁ ସେ, ଥିଲା ?
ନିର୍ମମ ନିହାତି ?

/ ୪୬ /

ସିନ୍ଧି କରୁଥିଲା ପଶି ବିଦ୍ରୂପର୍-ହୃଦୟେ,
ନିର୍ଭୟେ ସେ ନେଉଥିଲା ପୁଳାଏ ଦି'ପୁଳା ହସ,
ପୋଷେ କି ଦି'ପୋଷ ରୁଷା, ସ୍ୱପ୍ନଜ କାହାର।

ହେଇ ସେ ତ କଟିଗଲା ଅଦୃଶ୍ୟ କଳରେ,—ଅନା!
ଚାଲିଲା ବେଦମ୍ କଳ—
ଗରମ ନିଷ୍ବାରେ
(ନ-ଚଳାଟା ହୋଇଥାନ୍ତି କାଷ୍ଠା ଉପବାସ ତାର,
ବିଷମ ବିଚ୍ୟୁତି ପରା!)
ଉଶ୍ୱାସ ହେଲାନି ମହୀ, ଭାରୀ ହେଲାନି ବି!
'ଶାନ୍ ନଗରରେ' କେତେ ମାନ ନଗରରେ
ମୁହୂର୍ତ୍ତୁ ମୁହୂର୍ତ୍ତେ ନିତି, ଅଜସ୍ର ଅଜସ୍ରେ,
ଆକୁଳେ ଘୁରିଲା ସେ ତ
ଉତ୍ପାଦନ କରି କରି ହର୍‌ରଙ୍ଗୀ ଚାହାଣୀ।

ତୁମେ ତାକୁ ଦେଖି ନାହଁ, ହୁଏ ତ ଦେଖିଚ!
(ଦେଖିଥିଲେ ମାନିବାଟା ସଂଗତ ହେବ ନି?)
ନ ଥିଲା ସେ ସଖା ତୁମ, ନ ଥିଲା ଦୋସର,
ଥିଲା ସେ ଗୁଆଏ ଲୁଣ, (ମଧୁର କାରିକ ପୋଥି)
(ଜାଣେ, ସେ ଜଣାଇ ନାଇଁ, ଏଡ଼ିକି ଭୀରୁଟା!)
ଆହରି ଥିଲା ସେ ତାକୁ, ରକ୍ତ ଦେଇ କପାଳର
ଶ୍ରୀଜଙ୍ଗ-ଚଟାଣେ!

ସତ କହ! ସତ କହ! ଖାଇନ ତା'ଠଉଁ କେବେ
ଚେତନାର ତୃଜପତ୍ର
ମକଚି ମକଚି ତୁମ
ବରଫ୍ ନେଡ଼ିରେ?

ପିଇନ ତା' ସାଙ୍ଗେ ବସି
ହଡ଼ହଡ଼ ଦହଡ଼ ଚାହା,
(ଆନ୍ତରିକ ନୁହେଁ ପରା !)
ଶ୍ରାନ୍ତିର ରାତ୍ରିରେ ?

(କାମରୁ ବାହୁଡ଼ି କେତେ ବିଗିଡ଼ା ହସରେ
ଆଖିର ଝଟକୁ ତାର
ପିଇନ ଟୋପାଏ ସୁଖ,
ଅସୁଖୀ ଉତ୍ସବେ ?)

ରହ ! ରହ ! ଶୁଣ ! ଶୁଣ ! ପଳାଅ କାହିଁକି ?
ଅଫିସ୍ ଡାକୁଚି ତେଣେ, ଡାକୁଚି ଘରଣୀ ?
ତୁମେ କି ଭାବୁଚ, ତୁମେ ସଚଳ ଦୋଅଣୀ ନୂଆ
-ଅଚଳ ବଜାରେ ଏକା ?
ତୁମେ ତା' ଧାରୁଆ ନୁହଁ ଶାଗରେ ମାଛରେ ଯୋଗେ
(ବେଳେ ବେଳେ ଆଣିଥିଲ ବିଡ଼ି ବା ତା' ଓଠୁଁ ?)
ଟାଣିଥିଲ ଝାଳପୋଛୁଁ, ତାହା କି କରଜା !)
ଜାଣନ୍ତ କେମିତି ତାକୁ, ଚିହ୍ନନ୍ତ କେମିତି ?
ନଥିଲା ସେ ନାମଜାଦା ପ୍ରୀତିର ଆସାମୀ,
ଦୁଃଖୀର ପକେଟମାରୁ, ଚଢ଼େଇ ଉଡ଼ାଳି ଅବା
ଚିକ୍କଣିଆ ଚାତୁରୀର ଗଦି କି ଗୋଦାମ୍
ଆମର ମଗଜମାରୁ ହୋଇଥାନ୍ତା ଯଦି ସିଏ,
ଦିଶୁଥାନ୍ତା ମୁହଁ ତାର ସୁରଙ୍ଗୀ କାଗଜେ କେତେ
ରେଳବାଇ ଇଷ୍ଟେସନେ, ବିମାନ ବନ୍ଦରେ—
ଗୀର୍ଜା କି ମନ୍ଦିର ପଥେ,
ସକାଳ କପାଳେ ପୁଣି
ରାତିର ମୁଛାରେ !

// ୫୮ //

କାହିଁ, ତାଇ ନାଆଁ ନାହିଁ,
ବିଲୁପ୍ତ ଗାଆଁ ତା !
ଯାଇନି ବଢ଼ିରେ ଭାସି, ଖାଇନି ବାଡ଼ି ଯେ !
ବ୍ଲକ୍ ଅଫିସରେ ଅବା
ପଞ୍ଚଶାସନରେ
ପଲସ୍ତା ଭିତରେ କେତେ
ଦାଗା ଆଉ ହିସାବର !

ଜାଣିନ ହୁଏତ ତାକୁ, ଜାଣ ବା ନ ଜାଣ !
ଜାଣିଛନ୍ତି ତାକୁ ଏବେ
ମ୍ୟାଗଟ୍ ମାଛିଏ !

—କାଟିଗଲା ପରେ ହେଇ ! ଅଦୃଶ୍ୟ କଳରେ, ଅନା !
ଦେଖୁଛି ସେ ଦେହଟିକୁ ଅକୁଣ୍ଠେ ଗଡ଼ାଇ ନିଜେ
ଛୁରା ଆଘାତରେ ନୁହେଁ
ପାର୍ଟି ମାଲିକର କେଉଁ
ଚାଷାଙ୍କର କୂଳେ କୂଳେ
ବାଲୁକା ପ୍ରାନ୍ତରେ ।

କପାଳିଆ ଥିଲା ସେ ତ ଚାଲିଲା ଆଗରୁ—
(ସଂକାଙ୍କୁ ପ୍ରକାଶ ଏହା, ବିଶ୍ୱାସ କରୁ ନା !
ସାଂବାଦିକ ମିଥ୍ୟା କହେ ସତ୍ୟର ଆଦରେ ?)
ଗ୍ରାସିଲେ ବାଘୁଣୀ ତାକୁ, ଦଂଶିଲେ ନାଗୁଣୀ,
ଅଥବା ଟ୍ରାମ୍ ଟ୍ୟାକ୍ସି ରିକ୍ସାର କୁହାଟେ
ଭୁଲିଯାଇ ଭଣ୍ଡୁଣ୍ଡେ ଖେୟାଲ ଖେମଟା,
ଭୁଲିଯାଇ ନିଶିପାହା କଳାର କୱାଲି,
ଫୁଙ୍କିଦେଲା— କାହିଁକି ଯେ ଆଡ଼ବଇଁଶୀଟି, ଆହା !
ଅଭୁଲା କାଳର କେଉଁ
ନିଛାଟିଆ ତୋଟାତଳେ କିଶୋରୀ ସାଥୀର—
ଭୁଲିଯାଇ ପିଆନୋରେ ପିଆଲା ପିଓନି !

କଲର ପାହାଡ଼ଚୂଳେ
ହଠାତ୍ ଉଠିଲା ଫୁଟି
କାଲର ପଳାଶ।

ଫୁଲର ନାଲିସ୍ ଏଣୁ ଫଳରେ ନାଲିସ୍ ଏବେ,
'ଆଟ୍ ହୋମ୍' ପାର୍ଟିରେ ଧୀରେ!
ବିଚାର ବିଭ୍ରାଟ ସାର, ବିଟପୀ ସଭାରେ ଖାଲି!
ମାତିଉଠେ ହତାଶିଆ ବିଳାସ ବୈଶାଖେ ଏଣୁ
ଫୁଲରେ ନାଲିସ୍ ଏବେ, ଫଳରେ ନାଲିସ୍—

''ଜଳିଯାଉ ଆମେ ଯେବେ;
ଜଳୁଚି ଧରଣୀ!
ଉତ୍ସବେ, ଉତ୍ସବେ; ଏତେ
ଫୁଟିଲା ଉଦ୍ଧତ କିଆ
ଫୁଟିଲା ପଳାଶ ଏଇ—''
—ତୁମେ କି ଦେଖୁଚ ଆଜି, ତୁମେ କି ବୁଝୁଚ?
ପେଷି ହୋଇ ମଲା ଯିଏ,
କଟିଗଲା, କଟିଗଲା,
ଆକାଶ ଉତୁରି ପଡ଼ି ଗଲାଣି ମରଣେ ଏଇ
ଧୂଳିର ଧୂଳିର ଆମ!
—ହୁଏ ତ ସେ ତୁମେ ଅବା
ହୁଏ ତ ମୁଁ ଉ ସେ।



# ରକ୍ତ ସାଗରେ ମର୍ମ ଫୁଟେ

ଆଜି ତ ମଣିଷ ଢଳି ପଡ଼େ ଭୋକେ,
ଆଜି ତ ଶିଶୁର ଛାତିରେ ଗୁଳି
ମୁହେଁ ମୁହେଁ ଖାଲି ସାମ୍ୟବାଦ ହୋ !
ହାତୁଁ ହାତେ ଛୁରୀ ଯାଉଚି ବୁଲି !
ଆଜି ତ ଗାଆଁରେ କଙ୍କାଳ ନାଚେ,
ସହରେ ସହରେ ଦୋହଲେ ଜାତି
ସୁନେଲି ହସରେ ଲୁଣ୍ଠନ ଚାଲେ
ଫୁଲି ଫୁଲି ଉଠେ ଦସ୍ୟୁ ସାଥୀ !

ବାହୁନି ଯାଉଚି କୁଆଁରୀ ଆଶା ହୋ !
ନଥିରେ ଫାଁପ୍ସା ଯୋଜନାମାନ,
ହାଡ଼ରେ ହାଡ଼ରେ ଶାସନ-ସଡ଼କ
ମଡ଼କମାରୀରେ ସ୍ୱରାଜ-ଟାଣ !
ଗାନ୍ଧି ଝୁଲିରେ ପଶୁଚି ପୁଲକେ
ମୂର୍ଦ୍ଧାର କେତେ ରାଜନ ରାଣୀ
ବିଦେଶୀ ବଣିଜ ଶିଳ୍ପ-କଳରେ
କାହିଁ ଭାରତର ମର୍ମବାଣୀ !

କାଲି ଯେ ଶାସିଲା ନାଶିଲା ପରଜା,
ଆସନ ଯାହାର ମଡ଼ାର ଥାକ ;
ଆଜି ଯା ଉଆସେ ଦିବସେ ଉଠିଚି
କୁଳବୋହୂକୁଳ କରୁଣ ଡାକ
ଆଜି ତା' ଗଳାରେ ଫୁଲର ମାଳ ହୋ,
ଆଜି ସେ ଶାସନ ସୂତାଟି ଧରେ
ମୁହେଁ ମୁହେଁ ଖାଲି ବୁଦ୍ଧ ନାମ ହୋ
ବନ୍ଧୁକ ମୂନେ ଧର୍ମ ଥରେ

କାଲି ଯେ ଲଢ଼ିଲା, ସଢ଼ିଲା କଷଣେ,
ଆଜି ସେ ମଣିଷ ମଥାରେ ଚଢ଼ି
କେତେ ଟାଉଟରି ଟାହୁଲା ଛୁଟାଇ
ବୁଲୁଚି ସୁନାର ସଉଧ ଗଢ଼ି !
ଓହଳି ପଡୁଚି ମାଆର ଥନ ହୋ,
ଝୁଣି ଝୁଣି ମରେ କୋଳର ଛୁଆ,
ବକ୍ଷ ବିଲେ କାହିଁ ଆଦିବାସିନୀ ହୋ,
ସଡ଼ପ ଛେଲିରେ ଘଷୁଚି ଲୁହା !

ହୃଦୟ ତ ଖାଲି ତେଲ ହଳଦି ହୋ !
ସାବୁନଫେଣର ସପନରାଶି
ରୋଗଣା ଦେହର ଲହୁ-ଲାଳସା ହୋ,
ପଶୁ ଦମ୍ଭରେ ଫିସାଦି ଫାଶି !
କାଲି ଯେ ଗାଇଲା ଜନ-ବନ୍ଦନା
ହାତରେ ତା' ଚୋରା ପୁଞ୍ଜିବାନା !
ସତ୍ୟାଗ୍ରହୀର ସତ୍ୟ-ଶିବିରେ
ଆଜି ତ ସାହେବୀ ଡିନର୍‌ଖାନା !

ଆହେ ମୋ ଦେଶର ସଂଗ୍ରାମୀ ବୀର !
କେଉଁଠାରେ ତୁମେ, କେଉଁଠି କହ !
କେଉଁ ଗିରିଗୁହା କନ୍ଦରେ ତୁମେ ?
କେଉଁ ବିଭ୍ରାଟେ ନୀରବ ରହ !

ଆଜି ପରା ହେଇ, ପୃଥ୍ୱୀ ବୁକୁରେ
ସାମ୍ୟବାଦର ଯାତ୍ରୀ ଛୁଟେ
ଭାଜି ଭାଜି ପଡ଼େ ଖଡ୍‌ଗର ରଡ଼ି
ରକ୍ତସାଗରେ ମର୍ମ ଫୁଟେ !

ତୁମେ କି ରହିବ ନିଜକୁ ଚୋଷି,
ମରଣ ବରଣେ ପୁଂଜିଶରଣେ
କେଉଁ ଅଲାଜୁକ ଜୀବନ ପୋଷି ?



# ଜୀବନ୍ତ ଅନ୍ଧାର ଖାଲ

ସେ ଘାଟ ଫିଟିବ ନାହିଁ ?
ସେ ଘଟ ଉଠିବ ନାହିଁ ?

ଉଷା ଆଉ ଗୋଧୂଳିର ମୁହଁ-ଚୁହାଚୁହିଁ-ଗୋଳା
ସେ ଘାଟ ପଡ଼ିଲା ସତେ ?
ଆଶାର ସିନ୍ଦୂର-ବୋଳା
ସେ ଘଟ ପାଷାଣ ଆଜି ?

କେଜାଣି ସେ କେଉଁ କାଳୁଁ ଖୋଲା ଘାଟ ଥିଲା ପରା,
ଖୋଲା ବାଟ ଥିଲା ସେ ତ ଅଖୋଲା ମନର !
କି ଘଟ କେ ଥାପିଥିଲା ଅକାଟ କାଟରେ ଖାଇ !

ଆସୁଥିଲେ ବୋହୂ ଝିଅ,
ଆଖିର ଲଟାରେ କେତେ,
କଥାର ଝଟାରେ !
ଥିରି ଥିରି ଆସୁଥିଲେ
ପହିଲି ଅଳସ ଧୋଇ
ନୂଆ ନୂଆ ସ୍ୱପ୍ନର ପାହୁଡ଼ସ୍ୱନରେ ସତେ ;
ନେସି, ନେସି, ଚପା ହସ
ଚିପି ଚିପି, ଲୁହ-ଲୀଳା
ନଖର ଶିଳାରେ ସୁଖେ
କଳା ଶିରା ଜକ ଜକ
ତଳିପତା ତଳେ ତଳେ,

ଉଜାଗରୀ ଯାମିନୀର ବାଲୁରି ବିଳାସୁଁ ଖସି,
ଓଦା ଓଦା କଉତୁକେ,
ଜାକିଜୁକି ରଖୁ ରଖୁ ବୁକୁର କାହାଣୀ ବୁକେ;

ଝିରି ଝିରି ବାଲିଝର ଫିଟି ପଡୁଥିଲେ ପରା
ସରଳ ନିଳଠୀ ସବୁ ଲୁଚାଇ ମରମ ନିଜ
ସରମ ନଚାରେ !

ଆସୁଥିଲେ କାଳ କାଳ,
—ଖୋଲା ଘାଟ ଥିଲା ପରା ?
ଆଖପାଖୁ ମଶାଣିର ପାଉଁଶ ଭସାଇ କାହିଁ !
କେତେ ଚିତା-ଚଇତନ-ଛତିଆ ଛଳେଇ କାହିଁ !

ଛୁଟୁଥିଲା ନାଲି କଇଁ ଚହଟି ଚହଟି ସତେ
ଅମାନିଆଁ କୁଆଁତାରା
ଓଠରୁ ଓଠକୁ !

କି ବନ୍ଧ ବସିଲା ସତେ !
ତୁଠେ ଯେ ଅତୁଠ ସୋଗ !
ପଚା ସଢ଼ା ହୃଦୟର
ଅଦଳ ଦଳରେ !
ଗାର କାଟି ଆଙ୍ଗୁଠିରେ
ଅଭାବରେ ଅନିଭୋଗ
ସୁନାର ଧୂଳିରେ,

କେହି କି ଆଡ଼ାଏ ନାହିଁ ଅସନାମସନା ମୁହଁ ?
ଭୁଲ୍-ବୁଝାବୁଝି ବେଳା !
ରଣ-ଶୁଝାଶୁଝି ଖେଳା ଚିକ୍‌କଣ କ୍ରୋଧର !

କେହି କି ମାଜେ ନା ଆସି
ତରୁଣ ତକ୍ଷାର, ଆହା
ସଜୀବ କଳସୀ !

ବାହାର ଥାପନା ସବୁ !
(କାହାର, କାହାର ବା ଏ ଯେ) ?
ଅଜୀବ ଘଟତ ଖାଲି— !
ସେ ଘାଟ ଫିଟିବ ନାହିଁ
ଐତିହ୍ୟ-ଓହଳ ତଳେ-
ଆସିବନି କେହି କେବେ -
ଉଜେଇଁ ଅପୂଜା ଦିଅଁ ?

ଅମୁକ୍ତ ପ୍ରେତର ଜଳି
ବାଲୁଙ୍କୀବୁଙ୍କୀର ବୁଢ଼େ— !
ଲହୁଲି ବୟସ ନୁଏଁ
ଲୁହର ଆଞ୍ଜୁଳି ତୋଳୁଁ !
ସଞ୍ଜର ଶିଞ୍ଜଳି ଫୁଲେ
ଅନ୍ଧାର ପାଏ ନା ଖୋଜି
ଅନ୍ଧାରର ରାହା ଅବା !
କି କାରୁ କାହାର ଏ ଯେ !
ଦିଗନ୍ତ ଅନ୍ଧାର ଖାଲି
ଜୀବନ୍ତ ଅନ୍ଧାର !



# ସାରେ କି ପରାଣବୁହା

ସକେଇ ମରୁଚି ଆକାଶ କିଆଁଲୋ !
ଜକେଇ ଆସୁଚି ମନ !
ତୋରାଣି ବାସିରେ କି ସଜ ଶୋଷ ଲୋ
କାହା ମୁହେଁ ଛନ ଛନ ।

''ବି' ପୋଷ ଲୁହରେ ମରମ ପୋଷେ କି
ବଡୁରାଇ ଦେଲି ଛାଟି
ସତେ ମିତଣି ଲୋ ତୋ ହସ-ଉଷୁମେ
ଗଜୁରି ଉଠିବ ମାଟି !

ମାଟି ନୁହେଁ ସେ ତ ମୋ ଛାତି ଗହୀର
ତହିଁରେ ରୋଉଚି ଗାନ
କେତେ ରାମ ଗଲେ କି ବନବାସେ ଲୋ
କାହିଁ କା' ଉଆସ ନାମ ?''

ଝୁମୁ ଝୁମୁ ବାଜି ଓଢ଼ଣା ଉହାଡୁଁ
ଜଣାଏ ଘରଣୀ ଆଖି—
''ଝୁମି ଝୁମି ଯୁଗ ଚାଲିନି ନିତି କି
କେତେ ଦୁଖସୁଖ ଚାଖି ।

ଧରମ ରାଜନ କି ପଶା ଖେଳୁଚି
ଭାରିଯା ରଖିଚି ଝୁଡ଼,
ହସ ଟୋପିକରେ ଘରଚଟିଆ କି
ପାରୁନି ବାରୁଣୀ ବୁଡ଼ ?

ଟାକରା ଫୁଟାଇ କି ଦୟା ଦାମୁଡ଼ି
ଅଡ଼ାଇ ଚାଲିନୁ କାହିଁ!"
କୁଆଁରୀ ଆଶାର ଆଁବୁଲ ଚୋଷି କି
ଓଠ କରେ, ନାହିଁ, ନାହିଁ!

"ଏ ହାତୁଁ ସେ ହାତେ ଡେଉଁଚି ଜମି ଲୋ
ଓଲଟି ପଡ଼ିଚି ଦାଆ,
ବରଗଛେ ଦୋଳେ ବାଦୁଡ଼ିମାଳ ଲୋ
ରେଜିଷ୍ଟେରୀଖାନା ସାହା !

କଇଁ ଫୁଲ-ଧଳା କପାଳ-କାଗଜେ
କି କଳା-ଟିପର ଦାଉ,
ହୃଦୟ-ନିଲାମୀ ସଲାମୀ ଭାଷା ଲୋ
କଲମୀ ଖୁସିର ଭାଉ !

ମୂଲିଆ କୁଳର କି ଜୟ ଗାଇ ରେ !
ଧାଉଁଚି ନିଇଠା କାଳ !
ଆକାଶେ ଓହଳି କିଏ ଜାଣୁଚି ରେ
ଓଉ କଷି କେତେ ଫାଳ ?

ତାଳଗଛ ଛାଇ ହାବୁକା ମାରୁଚି
ମୂଳ ଛାଡ଼ିଯାଏ ଭୂଇଁ
ବାଇଆ ବସାରେ କୋରୁହାଁ ବାସ ଲୋ
ପରାଣ ଯାଉଚି ଛୁଇଁ !

ମନପବନରେ ପିଟିବି ଛାଟେ କି
ନେଳି ନେଳି ଦିଶେ ବୁଆ !
କଅଁଳ କାମନା ପାଚି ପାଚି ଗଲେ
କାହିଁରେ ଲୋଟିବେ ଶୁଆ !

ବଳୀୟାର-ଭୁଜ ବଢ଼ ଦେଉଳେ ଲୋ
ଲୁଣି ସମୁଦର ତୁଠେ,
କେତେ ଚଢ଼ା ପରେ ପଢ଼ଉ ଗଡ଼େ ଲୋ
ବାଲି ହରିଣ କି ଛୁଟେ !

କେଉଁ ନଡ଼ିଆର ଗୋଟମା ଛିଡ଼େ ଲୋ
ଠିଆ ପିଆଶାଳ ଛିଆ,
ବାଜେଣି ଗଳା ତ ତୁନି ନ ହୁଏ ଲୋ
କାଳ ପରା ସବାଖିଆ ।''

ଢକ, ଢକ, ଢକ, ବାସି ତୋରାଣି ଲୋ,
ଦକ କି ଯାଉଚି ଛାଡ଼ି ?
କେଉଁ ମନହିଡ଼େ ଘଳିଆ ପଡ଼ି ଲୋ
କି ପାଣି ଯାଉଚି ମାଡ଼ି !

ଭାରୀ ମୁହୁଁ ଚିପି ବରୁଣଟାଏ ଲୋ
ବୋହୂ ଟିକେ ଚୁଉ ଚୁଉ—
''ମଲା, ନିଉଛୁଣା ଛଇଛଟକେ ଲୋ
ପାଉଁଶ କି ହୁଉ ହୁଉ !''

ଉଡ଼ି ଉଡ଼ି ଯାଏ ଉଡ଼ାଜାହାଜ ରେ
କେଉଁ କାଳିମାଟି ଆଡ଼େ
ନିଆଁଲଗା ମନ ରାବି ମରୁଚି ଯା'
ମଲା ସିଜୁଗଛ ହାଡ଼େ !''

ଆହା ଦୋଷରର କି କାଳମାଟି ସେ
କି କଳି-କତରା ଘର !
ରସକରେଇରେ କି ହସଉତୁରା
ତରଳା ଲୁହାରେ ସର ।

ଅମାନିଆ ଏଡ଼େ ଉଡ଼ାଜାହାଜ ଲୋ
ଉଡ଼ି ଉଡ଼ି ଯାଏ ଧାଇଁ
ତୋରାଣି ବାସିରେ କି ସଜ ଶୋଷ ଲୋ
କି ଅଣବାହୁଡ଼ା ପାଇଁ ?

ଅତୀତର ନିଖ ଉଖାରି କେଶରୁ
କହେ ବୋହୂ ଥିରି ଥିରି—
''ବାଟ କରିଗଲେ ହାଟ ବସେନି କି
ଫିଟି ଲୋଟେନି କି ଶିରୀ ?

ପୁରୁଷୁଁ ପୁରୁଷେ ଦୁଖର ବେତା ତ
ଏଇ ମଥାପରେ ଥୁଆ
ବାଟ ପଡ଼ିଯାଏ ବାଟ ତ ଫିଟେ ଲୋ
ସରେ କି ପରାଣ ବୁହା !

ପରାଣବୁହାରେ ବିହନ ତାରା ଲୋ,
ତୋରାଣି ଭିତରେ ଶୋଷ !
ଆକାଶ ଯେତେ ତ ସକେଇ ମରେ ଲୋ
ସେତେ ତା ଅସରା ତୋଷ ।

ବିହନ ଏଣିକି ବୁଣୁଚି କଳରେ
ବୁଲିଯାଏ କଳମଇ ।''
ଫଣଫଣ ମୁହେଁ ତରୁଣୀ ଥରି ହେ
ଚମକି ପଡୁଚି ନଇଁ—

''କଳ ଆସେ ପୁଣି କଳ ଚାଲିଯାଏ
ଚୂନା ହୋଇଯାଏ ଟେଳୀ
କାତ ଥିଲେ ସିନା ହାତ ମୁଠାରେ ଲୋ
ଭାସି ଯାଉଥିବ ଭେଳା !

ଆମେ ନୋହୁ ମିତ କାଳର ଗୀତ କି
କଳରେ ରୋଇଲା ଧାନ !
ଆମ ବିନୁ ଓଷା ଉଜୁଆ କାହିଁ ଲୋ
ଲୁହରେ ଲହୁର ରାଣ !

ଆମେ ଜଳି ଜାଳୁ ମଶାଣି ବିଭୂତି
ଝରି ଯାଉ ଝିପି ଝିପି !
ଆମେ ସିନା ଗଢୁ ଆକାଶବାଣୀରେ
ପଢୁଥାଉ ମାଟି ଲିପି !

ପୋଡୁ ପାଟଶାଢ଼ୀ ହାଟ ବଜାରେ ଲୋ
ଚକ୍ଷୁ ମୁଠିକରେ ମୂଲ
ଆମେ ଦୁହେଁ ବସି ଯୁଗ ବାଛୁଥିଲେ
ଫିଟି ପଡୁଥିବ ଫୁଲ ।''



# ଛବିର ଛାଇ

ଏଇ ! ଏଇ ! ଆଲୁଅର ଝୁର୍‌ଝୁରି ନଚାଇ
ଛୋଟ ବଡ଼ ଆକାଶରେ ବଜାର-ଛକରେ
ତାରା ସବୁ ଚାଲିଗଲେ ତିମିରୁ ତିମିରେ— !

ଇଚ୍ଛା ହୁଏ ମୁହଁ କାଢ଼ି ପଢ଼ନ୍ତି ନିରୋଳେ—
ରୁମା ରୁମା ବଉଦର କଳାର କମ୍ବଳ ତଳୁ
ଥୁରୁ ଥୁରୁ କାଗଜରେ ଅକାମୀ ମନକୁ,
ତମର ଡିବିରି ଜାଳି ବିଟୋଳ ବସ୍ତିରେ !

ଜହ୍ନିଫୁଲ ଜଳିଯାଏ
ଜଳି ଯାଉ ପଛେ ଆଜି ବଡ଼ିମା ବାଡ଼ରେ !
ଦରବୁଢ଼ୀ ହେଉ ଘରେ
ଫରଫରୀ ଯାତନାର ଅଭିମାନେ ହସକୁରୀ କୁଆଁର ପୂନେଇଁ

ତାଳପତ୍ର ପାଇକର ଫରୀର ଆଖଡ଼ା ପରେ,
ପାଣିର କୁହୁଡ଼ି ମାତୁ
ପରୀର ଜରୀରେ ପଛେ,
ଇଚ୍ଛା ହୁଏ ପଢ଼ନ୍ତି ମୁଁ—
ଆଛୁର ବାସନା-ଛୁଆଁ ନିଶାର ନିମିଷେ
କଥାର କୋତରା ବୁକେ କାତରା କାମିନୀ ଆଗୋ !
ବିଚିତ୍ର ଚିତ୍ରର ପରେ ଲହୁର ଚିଟଉ !
ଇଚ୍ଛା ହୁଏ ପଢ଼ନ୍ତି ମୁଁ,
ମଖମଲି ମମତାର କ୍ଷମତା-ଫଳକ ପୋଛି
କ୍ଷୀରୋଦରୀ ସୁଏ ସୁଏ
ଅଖଳା ଅଖଳା ହସ
ପଖଳକରାର ତୁମ,

ପ୍ରାଣର ପାତାଳୁ ଆଣି
    ମତୁଆଲୀ ପୀରତିର
        ଉଦାର ଧୃଷ୍ଟତା ଯେତେ,
ଦଳି ଦଳି କୃପାଣର ତପସ୍ୟା ପ୍ରଚାର !

ଛାତିର ତବଲା ପରେ ଠେକା ପରେ ଠେକା ମାରି
ଦୂରାତୀତ ମହୁରୀର କରୁଣ ଫୁର୍ତ୍ତିରେ,
ଲାଜେ ଲାଜେ, ଭୟେ ଭୟେ,
        କପାଳର ଡାଲା ଆମ ଅଧୀରେ ସଜାଡ଼ି
    କି ଦଶ ଦଶାର ଫୁଲେ
    ଅଫଳୀ ଆଶାର କେତେ ବରତ ଉଜାଇଁ ତମେ
    ଚାହୁଁଥାନ୍ତ ଥରି ଥରି କାଳର ଉହାଡୁଁ !
ଇଚ୍ଛାହୁଏ ସତ, ସଖି ! ଅସତ ସତରେ ସିନା !
ଦିନର ଜହ୍ନରେ ଏଣେ ଘୂରେ ନା କି ଲଟୁ ପରି
ଆଦରାଆଦରି ହୋଇ ବୁଲେ ନା କି
        ନର୍ତ୍ତକୀର ନୟନ ସୂତାରେ କାହିଁ,
ନୂଆ ନୂଆ ଯାଚି ହୋଇ ଖୁସିର ଖେଳଣା ନିଜେ,
                        ନିଜର ନିଜକୁ ।
    ନାଲିନେଳି କାଗଜର ସ୍ନେହର ଶିକୁଳି ଗଢ଼ି
    ଦେହରେ ଦେହରେ କେତେ,
    ଝୁଲେନି କି ଭିଡ଼ି ହୋଇ ଅପୂଜା ପ୍ରତିମା-ପୁରେ
    ଶାରଦ ଜୀବନ ପଥେ ସରୋଦ କଂକାଳ !

ଆପଣାର ଛାଇ ତୁମେ !—
ତୁମକୁ ଗୋ ଡେଇଁ ଡେଇଁ ନ ଡେଇଁ ନ ଡେଇଁ
ଜୀବନର ଅପରାଜିତା ମୋ !



# ଜୀଇଁବ ସେ, ଏମିତି ଜୀଇଁବ

ଆମେ ଯଦି ଜାଣିଥାନ୍ତୁ ଜୀଇଁବ ସେ, ଏମିତି ଜୀଇଁବ !
ଆକାଶକୁ ଟେକି ଦେଇ ଟେଣ୍ଟେଇ-ଗୋଡ଼କୁ,
ଅଣ୍ଟାଳି ଗଭୀର ଗର୍ଭେ ମହାଶୂନ୍ୟତାର
ସଂଧାନୀ ମନର ସତେ ବିଜ୍ଞାନ-ଶୁଣ୍ଢରେ,
ମୁହଁ ମାଡ଼ି ଗାସ୍ତାଟ୍ୟର ମରମ ପିଇବ !

ତା' ବାନ୍ୟା ଉଡ଼ାଇ ଉଚ୍ଚେ ମୃଦଙ୍ଗ ବଜାଇ
କେତେ କେତେ ତାରୁଣ୍ୟର ତିଳକ ମାଟିଆ,
ସ୍ୱପ୍ନର ସୁଡ଼ଙ୍ଗେ କେବେ ଚାଲିଥାନ୍ତୁ କିରେ
ଅନଙ୍ଗ-ବ୍ୟଙ୍ଗରେ ନୂଆ ଭ୍ରୂଭଙ୍ଗ ସଜାଇ ?

ଆମେ ଯଦି ଜାଣିଥାନ୍ତୁ, ସ୍ୱର୍ଣ୍ଣିମ ଖରାରେ
ପ୍ରବଳ ବର୍ଷଣେ ଯେବେ ବନ୍ୟା ଅସେ ଲୋମେ ଲୋମେ
ପ୍ରାଣର ପ୍ରାନ୍ତରେ,
ବୃଦ୍ଧିପାଏ ଦେହେ ଦେହେ ପ୍ରୀତିର ତାପାଙ୍କ,
ଭାସି ବୁଲେ ମେଞ୍ଚା ମେଞ୍ଚା ଜୀବନ୍ତ ଅତୀତଟିର
କାହାଣୀକଚରା ସହ ଭବିଷ୍ୟବାଛରା,
ସନ୍ଧ୍ୟା ଘୋଟେ ମୁହେଁ ମୁହେଁ, ଅଫିସ-ଫେରନ୍ତି ହସେ
ଶୁଷ୍କ ମୁହୂର୍ତ୍ତଟି !

ଜଳନିରୋଧୀ ରବ୍‌ବର ଚିଜ ପାଖେ ପାଖେ
ଛିନ୍ନ ସ୍ତନ-ବନ୍ଧନୀର ମଲ୍‌ମଲି ମଝିରେ ଖେଳେ
ଅସହାୟ ଅଜି ଯେତେ ଫରୁଆ ଆର୍ଶିର !

ଜୀଇଁବନି ଖାଲି ସିଏ, ଏମିତି ଜୀଇଁବ !
ଚାଲିଗଲେ ଦୈତ୍ୟଭଳି
ବଡ଼ିମାର, ଜଡ଼ିମାର ଜବଲ୍‌ଡ଼େକର୍ ସବୁ
ହାତରେ ଆହୁଲା ମାରି ଅଭିନବ ନାବଙ୍କେଳି
ଅଧୀରେ ବିହିବ ;

ନଗ୍ନତା ଢାଙ୍କିବା ଲାଗି ଯୁଗାନ୍ଧ ଆତ୍ମାର ତା'ର
ଛୁଞ୍ଚି ଭଳି ଅଙ୍ଗୁଳିରେ ପରସ୍ତ ପରସ୍ତ
କନାଧଡ଼ି-ଢେଉମାନ୍ନ ସୁଖନ୍ତେ ସୀଇଁବ !

ଆମେ ଯଦି ଜାଣିଥାନ୍ତୁ, ଏମିତି ଜୀଇଁବ !
ଷ୍ଟୁଡ଼ିଓ ଅନ୍ଧାରେ ଥାପି ମଡ଼େଲ ରୂପରେ
ତା'ଚିତ୍ର ବିରଚି ଆମେ, ତା' ମୂର୍ତ୍ତି ଗଢ଼ାଇ,
ବ୍ୟବଛେଦ ଟେବୁଲରେ ବିଶ୍ଳେଷି ବେଦନା ତା'ର
ସ୍ନେହର ଶ୍ମଶାନେ କେତେ କ୍ୟୁ କରି କରି
ଯାଇଥାନ୍ତୁ ମନୁ ଆମ ତା' ଭୂତ ଛଡ଼ାଇ !

ଆମେ ଯଦି ଜାଣିଥାନ୍ତୁ, ମରି ସେ ମରିବ ନାହିଁ!
(ନୁହେଁ ସେ ଶହୀଦ ସତ, ନୁହେଁ ସେ ନେତା ଯେ !)
ଅଳିନ୍ଦରୁ ଦେଖି ତାକୁ ମୁଗ୍‌ଧା ପୀରତିରେ
କୁଟିଳ କଟାକ୍ଷ ହାଣି ନଚାଇବେ ପକ୍ଷ୍ମରାଜି
ନିଜ ନିଜ ପକ୍ଷ ବାଛି ବିଦ୍ୟାଧରୀକୁଳ,
ପ୍ରଣୟ-ପ୍ରସ୍ତାବେ ମାତି ସଭୟ କୌତୁକେ,
—ଜୀଇଁଲା ସେ, ଜୀଇଁଲା ସେ, ଶସ୍ୟର ଦୁଲାଳ ଯେଣୁ
ବୁଝିବେ ହଠାତ୍ ।

ଆସିଥିଲା ନିକାଞ୍ଚନ ପଲ୍ଲୀର ପଣତୁଁ
ଅନ୍ନ କିଣି, କିଣିଛି ସେ ବିମୂର୍ତ୍ତ ମରଣ !
କୋଟି କୋଟି ବୁଭୁକ୍ଷୁର ଦୃଷ୍ଟି-ପଟୁଆର ପାଖେ
ହାୟରେ ହାରାମୀ ଆମେ, ମିଥ୍ୟା ଅନ୍ୟାୟର;
ଗଦା ଗଦା ଗଳ୍ପ ଆଉ ବିଜ୍ଞାପନୀ ଛାପି,

ଆମ ଧୂର୍ତ୍ତ ଚେତନାର ଦୈର୍ଘ୍ୟ ପ୍ରସ୍ଥ ମାପି,
କେବେ ଭଲା ବସିଥାନ୍ତୁ ପ୍ରଣୟର ବ୍ୟୁରୋକ୍ରାଟ୍ ସାଜି
ଜୀଇଁଲା ଖବର ତା'ର
ସଦାଚାରୀ ଫିସାଦିର ଫାଇଲ୍ ତଳେ ଚାପି ?

ଆଃ, ଯଦି ଜାଣିଥାନ୍ତୁ, ଜୀଇଁବ ସେ, ଏମିତି ଜୀଇଁବ !
ନୋଟିସ୍ ନ ଦେଇ କିଛି,
ପୁଷ୍ପିତ ଛାତିରେ ଥରେ, କଲେଜସ୍କୋୟାରଟିର,
ବର୍ଷାର ମହ୍ଲାରେ ନାଚି
ବ୍ରାହ୍ମୀ ଅକ୍ଷରରେ ସତେ, ନିଜକୁ ଲିହିବ

ନିବୁଜ ପାଟିରୁ ତା'ର ସ୍ଲୋଗାନ ଉଠାଇ
ନିଛାଟିଆ ଲିମ୍ବ ପାଖେ ଟ୍ରାମ୍ ଅଟକାଇ
ହେବ ଏକ ହରତାଳ,
ମସ୍ତ ହରତାଳ !!

ହରିତାଳୀ ଆଖି କରି ଦୀପ୍ତ କରବାଳ ତା'ର,
ଢକ ଢକ କରି ଆମ ମୂହୂର୍ତ୍ତ ପିଇବ !

ଥୋଇ କି ନ ଥାନ୍ତୁ ଆମେ ମମତ୍ୱର ପଣା ?
ନୂଆ ନୂଆ ଆଦର୍ଶର ମୂର୍ଦ୍ଧାର ଗାଡ଼ିରେ
ନିର୍ଦ୍ଦୟ ଉତ୍ସବେ ସେ କି ହୋଇଥାନ୍ତା ଟଣା !!



# ହୃଦୟ ତୋ ଖୋଲ ରେ

ଆସିଲା ରେ ଯୁଗଶେଷେ
ଆସିଲା ରେ, ଆସିଲାରେ ସୁଶୋଭନ ଦିବସ !
ହସି ଖୁସି ଲହରାଇ
ହଂସରେ ପହଁରାଇ,
ଜୀବନର ସରସୀରେ ସ୍ୱପନରେ ପରଶି,
ଉତ୍ସୁକା କେତକୀର ଉରସରେ ତରସି,
ଦୁଖସୁଖେ ଭରସିରେ
କଇଁରୁଷା ବରଷି,
ଉତ୍ସବ ସମାରୋହେ
ସରସ ତ ଦିଶେ ନାଇଁ ବିରସ !

ଖୋଲ, ଖୋଲ, ହୃଦୟ ତୋ ଖୋଲ ରେ !
ରାଗରୋଷଭୁଲା ଯେତେ ଗୀତ ତୋର ବୋଲରେ !

ଫୁଲଝରା ପଥପରେ ନାହିଁ କୀଟ କାହିଁ ତ !
ରଗ୍ଣର ପାଶେ ସତେ ଶୁଶ୍ରୂଷା ଧାଏଁ କି ?
ମନମରା ରଜନୀରେ, ତରା-ହସେ ଚାହିଁ ତ !
ଜନମନ ତୋଷିବାକୁ କବି ଗୀତ ଗାଏ କି ?

ଅବୁଝାରେ ବୁଝାଇରେ, ଅଶୁଝାରେ ଶୁଝାଇ,
କୋଟି କୋଟି କ୍ଷୁଦ୍ରତା-ଛିଦ୍ରରେ ବୁଜାଇ,
ଅଜଣାର ସୁରେ ସୁରେ
ସଜନର ଯାନ ତାର ବାହେ କି ?
ସ୍ପନ୍ଦନ-ବିମାନରେ ଯାଏ କାହିଁ, ଯାଏ କି ?

ଟୋପି ଟୋପି ଚନ୍ଦନ ଅଛି ତ ରେ କପାଳେ ?
ଆଖି-ଆଖି-ବଂଧନ, ନିର୍ମାଣେ ଅଧୀରା !
ଯେତେ କୁହୁ କ୍ରନ୍ଦନ କାଉଳାଏ କରାଳେ,
ଶର୍ମିଳ ପ୍ରାଣେ ବାଜି କରେ ନି·ତ ବଧୀରା ?

ମମତାର ପାଇଁ କେତେ ମାଲିକାନା ଯୋଗାଇ
ପୀରତିର କବଲାରେ ଲିହି ଚୋରା ସଇ ତ,
ଆଜି ଯୁଗ-ଝୁଲଣ ତ ବିରହରେ ଭୋଗାଇ
ମାଳତୀରେ ଲୋଡ଼ାଏ ନି କଣ୍ଟକୀ ଦୟିତ ?

ଆଜି ତ ସକାଏ ନାଇଁ ପଲ୍ଲୀର ଲତିକା ;
ଥକାଏନି ଗିରି-ମୁଖେ ନିର୍ଝର, କରୁଣା ?
ପକାଏନା ନିଜ ପଥ ଅନନ୍ୟଗତିକା
ମନ୍ମଥ ମରଣରେ, ରତି-ରୋଷେ ଅରୁଣା !

 କୁଟୀର ଉଆସ ମିଶି ସବୁ ଏକାକାର କି ?
ଆମ ଆଗେ ରାଜାରାଣୀ ମନ୍ତ୍ରୀ ତ ଖେଳଣା !
ଝାପ୍‌ସା ନୟନଜଳେ ପୁଲହର ଗାର କି !
କେହି ନୁହେଁ ହୀନିମାନ, କେହି ନୁହେଁ ସେରଣା ?

ଆକାଶରୁ ନୁହେଁ, ଆରେ !
ପଞ୍ଜରା ତଳରୁ,
ଆସିଲା ରେ ଯମଜୟୀ
ଅମୃତ ଦିବସ !
ଜହ୍ଲାଦ କଟାରିରେ ହଟାଇ ରେ ହଟାଇ,
ବିଜ୍ଞାନୀ ଆଲୁଅରୁ ଅଜ୍ଞାନ କଟାଇ,
ବାପୁଜୀର ରୁଧିରରେ—
କ୍ଷେତ ଖଳାକଳରୁ,
ଉଲ୍ଲାସେ ଅବଗାହି
ସକ୍ରିୟ, ଚବିଶ !

ଖୋଲ, ଖୋଲ, ହୃଦୟ ତୋ ଖୋଲ ରେ !
ଆଜି ପରା କୋଳାକୋଳି,
ହୃଦେ ହୃଦ ଗୋଳାଗୋଳି,
ଧୂଳିର ବତାସେ ସତେ
ଶିଶୁ-କଳରୋଳ ରେ ।
ଖୋଲ ଖୋଲ ହୃଦୟ ତୋ ଖୋଲ ରେ !



# ଦୁଇ ଡେଣାର ମଝିରେ

ଉପରେ 'ତେରେସ୍କୋଭା'—
ତଳେ 'କିଲର୍'
ମଝିରେ ତମେ ଆଉ ମୁଁ।

ବେଶ୍, ଭାରଶୂନ୍ୟ ଆମର ଦେହ,
ବେଶ୍, ସ୍ୱପ୍ନମୟ ଆମର ମନ,
କେତେବେଳେ ଆବୃତ ଆମେ
ବିଜ୍ଞାନର କେସ୍‌ରେ,
କେତେବେଳେ ନଗ୍ନ ଆମେ
ସାହିତ୍ୟର ଗନ୍ତାରେ।

ଦର୍ଶନର ସାର ଆମେ
—ଦ୍ୱୈତରେ ଅନୀହା,
ଅଦ୍ୱୈତର ଅପ୍ରିକ୍ଷା,
ଦ୍ୱନ୍ଦ୍ୱରେ ବସ୍ତୁ!
ଆଖିରେ ଆଖିରେ କିଡ୍ କିଡ୍ ଆମର!
ଆମେ କଣ ଘୂରୁନୁ—
ନିଜର ପ୍ରତିଫଳନ ଦେଖି
ଦିଗହୀନ ଦିଗରେ!

ଉପରେ ତେରେସ୍କୋଭା—
ତଳେ କିଲର୍,
ଆମେ କ'ଣ ଘୂରୁନୁ?
ଖାଲି ରକ୍ତାକ୍ତ, ଆଉ ନିରନ୍ନ ଯାହା—
ଆକାଶଟା ଆମର।
ବେଳେ ବେଳେ ଜ୍ୱଳି ଉଠେ,
ଅଶ୍ରୁ ର ଉତ୍ସବରେ।



# ଡାକୁଚି ସେ ଯେ, ତୋହରି ସାଥୀ

କିଏ ସେ କହେ ଦେବତା ସେହି, ଦେବତା ସେତ ନୁହେଁ ରେ, ନୁହେଁ ।
ଖେଳିଚି ଖେଳ, ହସିଚି ହସ, ମଣିଷ ପାଇଁ ମଣିଷ-ଲୁହେ !
ସକଳ ଗାଳି ନିନ୍ଦା ସହି
ବର୍ଷା ଖରା ମଥାରେ ବହି
କଅଁଳ ଶିଶୁ-ମୁଖରେ ଆଜି, ସେହି ଯେ ନୂଆ କାହାଣୀ କୁହେ !
କାହାର ପାଶେ ଅଜଣା ସେହୁ ? ପରାଣ କୋଷେ ସବୁରି ରୁହେ ।

ଧୂଳିର ଫୁଲ-ମହକ ସେ ତ , କାହୁଁ ରେ ଆସି ଯାଏ ରେ କାହିଁ ?
ସ୍ନିଗ୍ଧ ହାସେ ଆତୁର ହିୟା ଥରଇ ବ୍ୟଥା-ପରଶ ପାଇ !
ବଜାଇ ନିଜ ଜୟର ତାଳି,
ନିଜର ପୂଜା-ପ୍ରଦୀପ ଜାଳି,
ପଟୁଆରେ ସେ ଆଁତୋପେ କେବେ ଆସିନି ମହାଗରବେ ଧାଇଁ
ଶିଳ୍ପୀ ସେ ଯେ ଉହାଡ଼େ ବସି, ନିହାଣେ ଗୀତ ରଚଇ ଥାଇ

ଲୁହରେ ଲୁହ ମିଶାଇ କେହି ପ୍ରଳୟ ନିଆଁ ଜାଳିଚି ଆଉ ?
ଶିଳାରେ ଶିଳା ବଜାଇ ସିନା କଳଇ କିଏ ମଣିଷ-ଭାଉ
କିଏ ସେ କହ ତାହାରି ସମ
ସେନେହ-ଶରେ କରିଚି ରଣ ?
ମରଣ-ଜିଣା ନରମ ସୁରେ, ଶମାଇ ଶତ ଦୁଃଖ-ଦାଉ !
ତାହାରି ଲୁହ, ତାହାରି ହସେ, ଖସିନି କିରେ ଶାସନ-ରାହୁ ?

ଏ ଜାତି-ବଡ଼ଦେଉଳେ ସେ ଯେ ବିସ୍ମୃତିର ବାଲୁକା ତଳୁ
ଦୁନିଆଦ୍ୱାରେ ଆଣିଚି ନିତି ମଣିଷ-ସେବା-ଅଶ୍ରୁ ଚଳୁଁ!
ଏ ଜାତି ଗାଲମାଧବ ସେ କି!
ଯାଇନି ନିଜ କୀରତି ଲେଖି ?
କେତେ ଏ ଜାତି-ବୋଇତ ଲାଗି ମହାଦୀପ ସେ ଅନିଭା ଜଳୁଁ
ଜୀଆଁଏ ତା'ର ପରାଣ-ତାପେ ନିରାଶ ଯେତେ, ଦୁଃଖୀ, ମଳୁ!

ବାହାରେ କାରା-କିଳିଣୀ ସିନା ତାହାରି ଡାକେ ଯାଇଛି ଭାଜି;
ଭିତରେ କେତେ ବନ୍ଧନ ଯେ ଘେରିଚି ଜାତି-ଚରଣରାଜି।
ଶୁଖିନି ମାଆ ନୟନ-ପତା
ଭାଇର ମୁଖେ ଭଗାରି-କଥା!
ଆଜି ଯେ କେତେ ମଣିଷ-ଆଖି ଉଦାସ, ଲୁହେ ହେଉଛି ମାଜି,
ତରୁଣ ଜନ ଅସରା ହସ ପଲ୍ଲୀପୁରେ ଉଠିନି ବାଜି!

ମରଣେ ଯା'ର ସୃଜନ-ଗୀତି, ଆଷାଢ଼େ ଆଶା-ବାରିଦ ଗାଇ
ଯାଇଚି ଦିନେ ବଉଳବନେ କେତକୀ ପୀତ-ଆନନେ ଚାହିଁ!
ବଜ୍ରସମ ପ୍ରହାର ଯା'ର
ଚୂରିଚି ଶତ ଜୀବନ-ଭାର;
ଭସାଇ ନେବ ଦ୍ୱନ୍ଦ୍ୱ ସବୁ ପ୍ରୀତିର ବେଣୁ ବିହ୍ୱଳେ ବାଇ,
ଭିତରେ ଯେତେ ବନ୍ଧନ ସେ ରଖିବନି ରେ; ରହିବ ନାହିଁ!

ଡାକୁଚି ସେ ଯେ, ହସୁଚି, ଅନା ମାଆର ଶୁଭ ଅଶ୍ରୁଧାରା!
ଜନକଜନ-ଆକୁତି ସେ ତ, ବନ୍ଧୁକୁଳ ପୁଲକମାଳା
ପ୍ରିୟାର ହସ କପୋଳ ପରେ
ମରମେ ନିତି ସପନ ଭରେ;
ପୂର୍ଣ୍ଣିମାରେ ଆଣେ ସେ ନୂଆ ପୂର୍ଣ୍ଣିମାର ତୃଷାର ଜ୍ୱାଳା!
ସେହି ତୋ ଦେଶ, ଶୋଣିତେ ନିଜ ପୂରାଇ ତା'ର ଜୀବନ-ଥାଳା!

ଆକାଶେ ଯେତେ ପତାକା ଉଡୁ ନାଲିଆ ନେଲି ତିରଙ୍ଗି ଅବା !
ଜଣିଏ ସେ ଯେ, ଅଗଣ ପରା, ମଣିଷ-ଆଶା-ସପନ-ଜବା !
ସକଳ ଋତୁ-ସରଣୀ ବାହି
ଚଳୁଚି ମହାରାଗିଣୀ ଗାଇ,
କୋଟିଏ କୋଟି ପତାକା ସେ ଯେ କୋଟିଏ କୋଟି ଜନର ସଭା !
ମରଣେ ଶୋହେ ତାରକା ସମ, ଧରଣୀ-ଶିରେ ମୈତ୍ରୀ-ଗଭା !

ଶପଥ ନିଅ ! ଶପଥ ନିଅ, ତାହାରି ସ୍ୱରେ ତରୁଣ ଜାତି !
ଆଉ ନ ଝରୁ କାହାରି ଲୁହ, ଆଉ ନ ଆସୁ ପ୍ରଳୟ ରାତି !
ଆଉ ନ ରହୁ ପଶୁର ସାଜ,
ଦୁନିଆଶୋଷୀ ଦସ୍ୟୁରାଜ;
ଛଳନାମୟ ହସର ତଳେ ଆଉ ନ ନାଚୁ ହିଂସା-କାତି !
ଶପଥ ନିଅ, ହତ୍ୟା-ମୁଖେ ପତାଇ ତୋର ଅମର ଛାତି !
ଡାକୁଚି ସେ ଯେ ଦେବତା ନୁହେଁ—
ତୋହରି ସାଥୀ, ତୋହରି ସାଥୀ !



# ସ୍ନେହର ସେକ୍ରେଟେରିଏଟରେ

ଫିଟି ପଡ଼ିଲା,
ଫେବୃୟାରୀର ଜରୁରୀ ଫାଇଲ୍‌ଟା,
ମନକୁ ମନ
ଅକ୍ଟୋବର ମଝିରେ !

ଓଲଟାଇ ଦେଇ ନିଜକୁ ନିଜେ
ଛିନ୍ନ ମେଘର ମେହରାବିର ତଳେ ତଳେ
ତମେ ହିଁ ପୁଣି ! ତମେ !!

ମରହଚ୍ଛି ବସନ୍ତଟା ଦାନ୍ତ ନିକୁଟି ହସି ନ ଥିଲେ
କେଉଁ ପ୍ରପଞ୍ଚର ପ୍ରଳୟ ହୋଇଥାନ୍ତା ବା ଆଜି—
ଆଜି ଏଇ ଲଞ୍ଚର ଆଓ୍ୱାର୍‌ରେ,
ମସୃଣ ମୁହଁର ଝରକାର କାଚରେ
କେଜାଣି କେଉଁ ଶୃଙ୍ଗାରର ଢେଲାର ଆଘାତରେ
ଏତିକି ଗାର ତୁମର !

କେଉଁଠି କେଉଁ ଅତୀତର କିଆବୁଦାରେ
ରାବି ଉଠିଲା ଚୁପ୍‌ଚାପ୍ କୁମ୍ଭାଟୁଆ !
ପାହାଡ଼ିଆ ଛାତିର ଖୋଲରେ
କେଉଁ ଏକ କାପ୍ତିର ସ୍ୱର ଯେ !
ସ୍ୱପ୍ନର କରିଡ଼ର୍‌ରେ ସିଏ ଯାହାର
ଦି ସୁଡୁକା ଚାହାଣୀର ଅଶ୍ଳୀଳତାରେ ଏବେ !

/ ୭୨ /

ସଭ୍ୟତାର ଭୁଡୁକାମରା ରସରେ ମସ୍‌ଗୁଲ୍
ନୂଆ ନୂଆ କଳ୍ପନାର କ୍ୟାଣ୍ଟିନ୍‌ରେ ବା କିଏ ?
ନିଜ ନିଜ ଝାଳର ବାସ୍ନାରେ ଆକ୍ରା-ମାକ୍ରା ସବୁ;
ନିଜନିଜର ସଂଶୟ ଧୂଆଁରେ ଅନ୍ଧ
ମୁଲତବି ମମତାର ମାମଲାଟାକୁ ପେଶ୍ କରି
ଆକାଶିଆ ଜୁଡ଼ାଟିକୁ କୃଷ୍ଣଚୂଡ଼ାର
ନଚାଇ ଦେଇ, ନୁଆଁଇ ଦେଇ,
କାରୁଣ୍ୟର କେନାରେ !
ତମେ ହିଁ ପୁଣି ! ତମେ !!
ଛିଟିଛିଟିଆ ବାଦାମ-ପତ୍ରୀ ରୁମାଲ୍‌ରେ ଆଖି ପୋଛି—
"ନିଜକୁ ନିଜେ ହଜାଇ ଦେଉଁ ଯଦି ନିଜଠି, ଦୋଷ କ'ଣ ?"

ସ୍ଲେଟ୍ ଭଳି ପୁଅର ମୁହଁରେ ତେଣେ
ଦୁଧର ଗାରଟିଏ ନ ପଡ଼ିଛି, ନ ପଡୁ !
ବୁକୁର କ୍ୱାଟର ରେ ଘରଣୀର
କାହାର ସାଇକେଲ୍‌ଟା ଡେରା ହେବଣି, ହେଉ !
ଓଠର ପୋର୍ଟିକୋରେ ମଟରଟା ଲାଗିବଣି, ଲାଗୁ !

ଫିଟି ପଡ଼ିଛି ଫେବୃୟାରୀ ଜରୁରୀ ଫାଇଲଟା
ମନକୁ ମନ
ଅକ୍ଟୋବର ମଝିରେ !
ନୂଆ ନୂଆ ଯୌବନର ଯୋଜନା ଯଦି ଭାଙ୍ଗେ,
ଆଶାର କନ୍ଦଳରେ କେତେ କାହାର
ପ୍ରୀତିର ପଞ୍ଚାୟତ ଯଦି ମରେ !

କାଳର ନିର୍ଜ୍ଜରତାରେ ଜରୁରୀ ବୋଲି କିଛି ଅଛି ନା କ'ଣ ?
କ୍ଷତି କ'ଣ ମୁଲତୁବି ରହେ ଯଦି ମାମଲାଟା
ନିର୍ଲଜ୍ଜ ନିଃଶ୍ୱାସ ପାଇଁ,
ପୁଣି ଏକ ଫେବୃୟାରୀର !



## ଚଲା-ବଉଦରେ

ମଲା ବାରବାଟୀ- ଛାତିରେ ଆଜି ଲୋ
କଅଁଳି ନ ଉଠୁ ଦୁବ,
କାହିଁ ଚାଲିଗଲୁ ଚଲା-ବଉଦରେ
ମନାସି କାହାର ଶୁଭ !

କିଏ ସେ ତତେ ତ କହି ନ ଥିଲା ରେ
ଆସିବାକୁ ଏଥି ଚାଲି;
କିଶଳୟ କୋଳେ ଉଡ଼ାଳେ ରହିରେ
ପରାଣ ଯିବାକୁ ଘାଲି !

'ତୁଙ୍ଗ ଶିଖରି ଚୂଳରେ ଚୂଳରେ'
ଜାଳିଲୁ ଅନଳହୁଳା,
ଆକାଶେ ଉଡ଼ାଇ ପଥର ଲୁହା ରେ
ପାଣିରେ ବୁଡ଼ାଇ ତୂଳା !

ତୋ ବୁକୁ-''ରକତେ ରଞ୍ଜିତ'' କରି
ଏ ଜାତିର 'ଅସି-ଧାର',
ଆପଣା ଛାତିରେ ଲେଖିଗଲୁ କିରେ
''ବିଜୟ-ବିଭବ-ଗାର ?''

ଦରିଆ-ମଝିରେ ଅଝାଲ ଟେକି କି
ଯାଇଚୁ ବଣିଜ କରି,
ବଣିଜାର ଦଳ ତୋ' ଘରେ ପଶି ରେ
ତୋ ବୀଣା ନେବେ ତ ହରି !

ନଈରେ ପଡ଼ିଚି          କଳା ଡଅଁର ଲୋ !
ଘାଉଁରି ଯାଉଚି ନାଆ,
କିଏ ମୋଡ଼ିଦିଏ          ଏ ଦିଗେ, ସେ ଦିଗେ,
କିଏ ଲୋ କାହାର ସାହା !

ବିହୁଡ଼ା ହୋଇନି          ଆଶାର କିଆରି
ଉଭେଇ ଯାଇଚୁ ମେଘ !
ଠିରିକି ପଡୁଚି          ଆଖିର ଫାଳ ଲୋ,
ମରମରେ ଉଦ୍‌ବେଗ !

ଲୁହ-ଚିଲିକାର          ମୁହାଁଣ-ତଳୁ ଲୋ
ମିଳିନି 'ଜାଇ'ର ଚୂଡ଼ି,
କେଉଁ 'ବନସ୍ତ'ରେ          ପାଇକ-ଥାଟ ଲୋ
ବାଟ ତ ଯାଉଚି ହୁଡ଼ି !

ତତେ ତ ଭୁଲିବ          ଆଇନଶାଳା ଲୋ
ଭୁଲିବ ମନ୍ତ୍ରୀ-ଗାଦି !
କେତେ ରାଜନୀତି-          ବାଜୁରା ପାଲାରେ
କେତେ ବାଦୀ-ପ୍ରତିବାଦୀ !

ଭୁଲିବ କି, କହ !          ପାହାଡ଼ୀ ନଈର
ସୋହାଗ-ଉଛୁଳା ତାନ,
ପାଟଫୁଲି ତଳେ          କେଉଁ କିଶୋରୀର
ପାଟଲିମ ଅଭିମାନ ।

ଛଟକିନୀ ବଡ଼          କଟକ-ନଗରୀ,
ସତେ କି ରଖିବ ମନେ ?
ଆଜି ଫୁଲମାଳ          କାଲିକି ବାସି ଲୋ,
ପୋଡ଼ା ମୁହେଁ ଲୁହ କ୍ଷଣେ !



# ମଧ୍ୟାହ୍ନର ରାତିରେ

ଫୁରୁ ଫୁରୁ ବାଦାମୀ କେଶର ମେଘରେ
ମଧ୍ୟାହ୍ନର ରାତି !

ନେଳି ନେଳି ମମତାର ମୋଟେଲ୍‌ରେ
ଭଙ୍ଗା କେଉଁ କାର୍‌ଟା ପଶିଲା, ବୋଧେ ! କାହାର ?
ଗୀର୍ଜାର ଘଣ୍ଟା ଏଇ ଚୁପ୍ !
ସଂଯମର ବାର୍‌ରେ, ଆଃ ! ବେଲିଡ୍ୟାନ୍‌ସ୍ ତାରାର !
ଉଠ, ଆଗୋ, ଉଠ !

ଦର ଦର ପୋଡ଼ା ବଂଶବନର ଶିର୍ ଶିର୍
ସ୍ୱୀକୃତି ଘେନି,
ଡ୍ରେନ୍-ପାଇପ୍‌ର ପୋଷାକ ତଳେ ତଳେ
ବିଟ୍‌ନିକ୍ କାନ୍ଦଣା ଯେ ଲୋଟୁଛି !
(ତୁମ ଆଖିର କାହାଣୀ ଭଳି ଝଚ୍‌ରେ !)
ଉଠ, ସଖି, ଉଠ !

ମୁକ୍ତିର ବିବର ଗଢ଼ୁଁ କଳେରାର କ୍ୟାନ୍‌ଭାସ୍ ପରେ
ବିମୂର୍ତ୍ତତାର ଆର୍ଟ ଯଦି ରେଖେ କିଏ, ରେଖୁ !
କଳା କଳା ବୋଲ୍‌ଡର୍‌ର ପ୍ରବାହ ଆଜି ହଟାଏ,
ବାଲିର ସମୁଦ୍ରକୁ ହଟାଏ !

ହୋଓ ହୋଓ ଇତିହାସ ଯେ ଦେହର ଉତ୍ସବରେ,
ଲିଞ୍ଚିଙ୍ଗ୍ କିନ୍ତୁ ଆତ୍ମାର !
(ଆଲୁଅର ଛାଇ-ଛିଆ ବୁକୁରେ
ଆତ୍ମା ବୋଲି କିଛି ଥାଏ ଯଦି, ତୁମର କି ମୋଅରା)

/ ୭୬ /

ଖୋଲା ଖୋଲା ସ୍ୱପ୍ନର ଲିମୁସିନ୍‌ରୁ
ଟୋପାଏନାକୁ ରକ୍ତରେ ରଂଜିତ କରି ଓଠକୁ,
ଉଠ, ଆଗୋ, ଉଠ !

ଯୁଗର ଗାଛିନି ପାଖେ ପାଖେ
ଯୋଡ଼େଇର ମୁହଁରେ ଠିକ୍
ରାସ୍ତା ସହ ରାସ୍ତାର,
ପ୍ରାଣରେ ପ୍ରାଣମିଶା ଝଲେଇର ବେଳାରେ ଏ,
ହୃଦ୍‌କିନା ଜଳିଲା ଯେ ରଙ୍ଗଟା—
କେବର କେଉଁ ଅତୀତର
ଫୁତ୍କାରକୁ ଉଡ଼ାଉ !
'ଲିଙ୍କନ୍'ରେ 'କେନେଡ଼ି !'

ମାଦଳ ପୃଥିବୀଟାକୁ ଗଡ଼େଇ ଦେଇ
ସୂର୍ଯ୍ୟର ଗହ୍ୱରକୁ,
ନୂତନତମ ନ୍ୟୁରେମ୍‌ବର୍ଗୀ ନୃତ୍ୟର କବରରେ
ଉଠ, ସଖି, ଉଠ !

ମଧ୍ୟାହ୍ନର ରାତି ପୁଣି ଡାକେ !
କାଳର କଳଙ୍କ ପୋଛି ରାମଧନୁରୁ ଥରେ
ରକ୍ତର କରବୀରେ ଆମର,
ଦେବାକୁ ହେବ ଯେ,
ଦେବାକୁ ହେବ—

ହକିର ଷ୍ଟିକ୍‌ଟା, ପିଲାଙ୍କୁ
ରଶ୍ମିର ଅଙ୍ଗନରେ !

ଆହୁରି କେତେ ଟେକ୍‌ସାସ୍‌ର
ଜଙ୍ଗଲ ତ ଜଳିନି !



# କାଳିସୀ ଲାଗିଲା ମତେ

ଆଜି ବିଷ୍ଣୁବର କି ଶୁଭ ଲଗନେ,
ଘୂରି ଘୂରି ଆସି ଏ ନୀଳ ଗଗନେ
ଛିଡ଼ା ହେଉଁ ଏଇ ମଞ୍ଜୁ କାନନେ
କିଏ ଡାକିଦିଏ ?
—କି, ଡାକିଦେଲା, ସତେ ?

ନୂଆ କାମନାର କୁହୁରେ କୁହୁରେ
ନୂଆ ସାଧନାର ହୂଉରେ ହୂଉରେ
କାଳିସୀ ଲାଗିଲା ମତେ !

କାଳିସୀ ଲାଗିଲା ମତେ !
ହାଡ଼େ ହାଡ଼େ ବାଜୁ ଯୋଡ଼ି ନାଗରା ରେ !
ଉଡ଼ି ଉଡ଼ି ଖେଳୁ ଧୂଳି ଘାଗରା ରେ !
ସଜ ସୂରୁଯର ରଶ୍ମି-ପାଖୁଡ଼ା
ସଜାଇ ଦିଅରେ
ତୁମ ମନାସର ପଥେ !

ଲୁହ-ତୋଳା ସାରି ଚାଲିଲି ଝୁଲି ମୁଁ,
କେତେ ଇତିହାସ ଇତିର ଫୁଲି ମୁଁ !
ପଚା ଅତୀତର ତୁଠୁଁ !

ଫୁଟୁ ଟକମକ ଅକୁହା କାହାଣୀ,
ଅଦେଖା ଚାହାଣୀ,
ଫୁଟୁ ଟକମକ ଫୁଟୁ !

ସବୁ ହୃଦୟର ବେଦନା ଢାଳି ରେ
ତାଳିରେ ଢାଳିରେ
ଦୂର ଆକାଶରେ ଉଠୁ !

କିଏ ଅଛ କାହିଁ ?
ଦୁରୁ ଦୁରୁ ବୁକେ ଆଡ଼େଇ ଯାଅ ନା !
ରାଗି ରୁଷି ମତେ ଗାଡ଼େଇ ଚାହଁନା !
ମୁହିଁ ଯେ ତୁମର,
ନୂଆ ଜୀବନର
ଅମର ଜୁମର,
ମନର ଗୁମର,
ମୁହିଁ ଅସିତିରେ ସିତି !

ମୁକ୍ତି-ପୋଷକରେ ଆତ୍ମକଳନା,
ଚାହା ଟୋପିକରେ ପ୍ରାଜ୍ଞ-ଛଳନା,
ମୁହିଁ ଅଭାବୀର
ଖଳ ସ୍ୱଭାବୀର
ସବୁ ଅନୀତିର ନୀତି !

ଯେତେ ବିଫଳତା ଅଧୀରା ଯାମିନୀ
ଯେତେ ବିଲୁଳିତା ବିଧୁରା କାମିନୀ
ତାରା-ଫରୁଆରେ
ଝରା ମରୁଆରେ
ତାରା-ସୁରଭିର ରୀତି !

ମୁହିଁ କଟାଳିଲେ ସବୁ କଳିଗୋଳ
ମୁହିଁ ମଟାଳିଲେ ପ୍ରାଣ-କଳରୋଳ
ମୁହିଁ ଅଗୀତିର ଗୀତି !

ଡହ ଡହ କୋଟି ଡୋଳା-ଅଙ୍ଗାରେ
ମୁଁ ଆଜି କରିବି ନାଟ !

ଡାକି ଡାକି ବୁଲୁ ରଣ-କାହାଳୀରେ
ନୂଆ ପାଠ-ପଢ଼ା ଗଣ-ଚାହାଳୀ ରେ !
ଝଡୁ ପୁରୁ ପୁରୁ
ମୟାର ମକୁଟା ପାଟ !
ଖୋଲି ଖୋଲି ତୁମ ଜୀବନର ମୁଣା,
ଆଣ, ଆଣ, ବେଗେ ରୁଧିରର ଝୁଣା !
କେତେ ଗୁଳି-ଗୁଳା-ଅନଳେ ପୋଡ଼ା ମୋ
ମୁହଁରେ ମୁହଁରେ ଛାଟ !
ଧୂଆଁରେ ଧୂଆଁରେ
ଫିଟାଇବି ଆଜି
ମୁଁ ଯେ ଅବାଟରେ ବାଟ !

ମୁଁ ଆଜି କରିବି ନାଟ !
ନୂଆ ଭେଲିକିରେ ଭଳାଇ, ଭଳାଇ,
ସଂଶୟେ ବଳ ଟଳାଇ, ଟଳାଇ,
ଏ ଯୁଗ-ରାଇଜ, ଯମ-ଜଉତିଷ କିଏ ?
ଆଖିରେ ଆଖିରେ
ପରଳ ରୋଉଚି
ଢାଳୁଚି ଗରଳ ସିଏ !
ଦିଅ, ଦିଅ ମତେ ଦିଅ ପଣାପାଣି !
କୁହୁକ-ଲୀଳାରେ ନେବି ମୁଁ ଉଡ଼ାଣି,
ନୂଆ ଜାତକର କପାଳୁ ପୋଛିବି
ଭୟ-ଆତୁରିଆ
ଯେତେ ଯା' ଅପାଠ-ପାଠ !
ମୁଁ ଆଜି କରିବି ନାଟ !

ଜାଣେ, ଜଳି ଜଳି ଉଜଳି ଜଳେ ନା,
ନୂଆ ବିଧାନର ବତୀ !
ଜାଣେ, ଟଳି ଟିଳି ଏବେ ତ ଟଳେ ନା,
ମଲା ରାଜନର ଛତି !

ଖାଲି କୋଳାହଳ, ତୁଚ୍ଛା ଚହଳ,
ଖାଲି ଯାଆଆସ, ଏ ଦଳୁଁ ସେ ଦଳ !
ଖାଲି ଅସୂୟାର ଡହଳ-ବିକଳ
ଖାଲି ସ୍ୱାର୍ଥର ରତି !

କାହିଁ ଶିଶୁମଥା ଚକଟି ଚକଟି,
ବୃଦ୍ଧ-ଆଟୋପ ହସ୍ତୁଚି ଆକଟି,
ତରୁଣ ଚୁମୁଛି କୀଟଖିଆ କଟୀ,
ମାଟି ନିଧୁବନେ,
କି ସୀଧୁସେବନେ,
ଆଜି ତ ଅଯତି ଯତି
କାହିଁ ସଢ଼ିଯାଏ
କୁଆଁରୀ ନତି ଯେ;
ଅସତୀ-କୋଳରେ ସତୀ !

ଅଭିସାର-ନିଶା ନୟନୁ ନ ତୁଟୁ
ସମାଜ-କଳରେ କେ ହାତ ପକାଏ, ଆରେ !
ବ୍ୟାଟନ ନଚାଇ ପ୍ରୀତି-କଟକରେ,
ଛଇ ଛଟକରେ
ମରଣର ସୁଏ
ଧରମ ଶୁଣାଇ,
ଧନର କାତଟି ମାରେ !

କାମକୁତୁକିନୀ କଳା, ଲଙ୍ଗୁଳୀ
ବୋହୂ କରି ଆଣେ ଘରେ ମଙ୍ଗୁଳି,
ଦୁକୂଳ ଖସାଇ ନିଜ ଦୁଲାଳିର
କି ଲାଜ-ସରମ ସାରେ !

"ମୋହ ବିନା ଏଥି ଆନ କେ ନାହିଁ ରେ !
ଦର୍ଶନି ସବୁ ମୋହରି ପାଇଁ ରେ ।"
—ନିଜ ରୂପଗୀତି ନିଜେ ତ ଗାଇରେ
କି ମୂକ ମରମ ଘାରେ !

ଯିଏ ତୁମେ ଯେତେ ମରଣ-ପୋଷା ରେ !
ଭୋକର ଓଷାରେ
ଶୂନ୍ୟ ଆକାଶୀ ଦର୍ଶନ-ପାରେ
ଅସାରେ ଅସାରେ ସାର !

ତୁମେ କି ଦେଖୁନ,
ତୁମରି ମୁକୁରେ
ସବୁ ନିଭିଯାଏ ସମୟ-ବୁକୁରେ ?

ଯେ ମାଆ ହରାଏ
ନୟନନିଧିରେ,
ମାନିଚି କି କେବେ
ଅବିଧି ବିଧିରେ ?
ନିଭେ ନା ରେ ତା'ର,
ନିଭେ ନା ଲୁହର ଗାର !

ତୋଳି ତୋଳି ଆଣ କାମଳ ମନରୁ
ବିଷ କନିଅର
ଉଡ଼ାଅ ଉଡାଅ ବାନା ।
କୋଟି ନୟନରେ ଅସୁମାରି ବାଲି
କିଏ ସଜାଡୁଚି ନାଲି ଫିତା ଖାଲି;
ଅଫିସରି ଘରେ ନାଚୁଣୀ କାଶରେ
ଓଡ଼ିଶୀ ଭିତରେ ୱାଲ୍‌ଜ୍ ହାସରେ
ବାଜୁଚି ମାଉଁସ-ଖାନା !
ଆଜି, ମମତାର କି ମହାମଡ଼କ !
ଖାଲି କ୍ଷମତାର ବିଷମ ସଡ଼କ ।
କାହିଁ ବିବେକର
ବିଚାର-ଟେକର
ସମତା-ରେଖର ଦାନା ।

ଏଇ ନାଚେ ମୋର ଯାଉଁଳି ବେତ ଯେ !
ମହା ଜାଗରଣେ
ମହା ମରଣର
ମହା ଜୀବନର
ନିତି ଶରଣଦ
ପ୍ରୀତିବରଣର ।
କାହାକୁ ମାରିବ, କାହାକୁ ତାରିବ,
କାହାକୁ ରେ କେତେ ବିଷାଦେ ଘାରିବ,
ଜୀଆଇଁ ଦେବ ରେ
କାହା ଦେହେ ଦେଇ ଚିଆଁ,
ହସ ଉଦାସୀରେ !
ହସ ଉପାସୀ ରେ !
ହସ ନିରିମାଖୀ
ହସ ନିଆଶୀରେ !
ଲୁହରେ ଲୁହରେ ନିଆଁ !

ଏଇ ଲୋଟେ ମୋର ମୁକୁଳା କେଶ ଯେ !
ଢଳଢୁ ଜଳଦେ
ଆକାଶୁଁ ଆକାଶ ପାରେ
ନୂଆ ଆଶିଷର ଧାରେ !
ମେରୁ କରପୁଟେ ତୁଷାର-ଫୁଲ ମୋ
ସାଗରେ ସାଗରେ ଊର୍ମି-ଝୁଲ ମୋ,
ଆଗ୍ନେୟ ରସେ ପ୍ରୀତିର ମୂଳ ମୋ ।
ତୁମକୁ ରଖିବି ବିପଦୁଁ ଆପଦୁଁ
ମୋ ପ୍ରାଣ-ପଣତେ ବାରେ ।

ଏଇ ନାଚେ ମୋର ଯାଉଁଳି ବେତ ଯେ !
କାଳିସୀ ଲାଗିଲା ମତେ !
ହାଡ଼େ ହାଡ଼େ ବାଜୁ ଯୋଡ଼ି ନାଗରା ରେ;
ଉଡୁ ଉଡୁ ମୋର ଧୂଳି ଘାଗରା ରେ;
ନୂଆ ସଜନୀର ସୁରର ପରାଗ
ଝରି ଝରି ପଡୁ ପଥେ !
କାଳିସୀ ଲାଗିଲା ମତେ... !



# ଶୁକ୍ଳ ମେଘର ସୋଫାରେ

କେଉଁ ଏକ ବସନ୍ତର ପଳିତ ପତ୍ରଟିଏ ଭଳି
ଛିନ୍ନ ହସର କବିତାଟି ମୋର, ଆଜିର,
ଭାସି ଭାସି ଛୁଇଁଯାଏ ଯଦି ଭବିଷ୍ୟର କୂଳରେ—
ନୂତନତମ ପ୍ରଣୟରେ ଭିଜା ଭିଜା
ଚେଳାଞ୍ଚଳକୁ ତୁମର—
''ଇଲୋ, ମା'ଲୋ''! କହି ଚମକିବ ନାହିଁ ତ ଆଦୌ....
ଅତର୍କିତରେ।
ପୂର୍ବରାଗର ଆଞ୍ଜୁଳାଟିଏ ଟେକି ଫିଙ୍ଗି ଦେଉ ଦେଉ
ବିହ୍ୱଳ କେଉଁ ପ୍ରଣୟୀର ନୃତ୍ୟମୟ ଡ଼ୋଳା ଉପରେ,
ହଠାତ୍ ?

ସ୍ୱପ୍ନର ଖୋଇ ତୁଟାଇ
ବିଦଗ୍ଧ ବିଶ୍ୱାସରେ ତାହାର
ସଲସଲାଏ ଯଦି ସେ ମନ୍ମୟ ମାଳଞ୍ଚକୁ ତୁମର—
ଶିହରିବ ନାହିଁ ତ ଖୁଞ୍ଚା ଖାଇ ନିଜଠୁଁ
ନିଶ୍ଚଳ ଭାସମାନତାରେ,
ଆହତ ଅହଂକାରରେ ପୁଣି ?—

ଶୁକ୍ଳ ମେଘର ସୋଫାରେ ଶୋଇ ଶରତର,
ଉଷା କି ଗୋଧୂଳିର ଲାଲ ଲାଲ ଚଟି ଭିତରୁ
ଥିରି ଥିରି ନଚାଇ ଲିଲି ପରି ଅଙ୍ଗୁଳିଗୁଡ଼ିକ ପାଦରୁ
ଉଦାସ ଉଦ୍‌ବେଗରେ ?

/ ୮୪ /

କିଏ ଜାଣେ, ମଧୁର ନିଷ୍ଠୁରତାରେ
ଠେଲି ଦେଇ ଦୂରରୁ ତାକୁ, ଦୂରକୁ,
ଝରିବ ଯଦି ଆଶ୍ୱିନର ବର୍ଷା ଭଳି,
ଲୁଚେଇ ନେଇ ପ୍ରଣୟୀର ପାଖରୁ ନିଜକୁ
ଅଧୀର ନିମଗ୍ନତାରେ !!

ହୋ ହୋ ହସରେ
ପହଁରିବ ଯଦି ମୂର୍ଚ୍ଛିତା ହୋଇ ସଚେତ୍ ପ୍ରଗଲ୍‌ଭତାରେ !!
ତୁମେ କ'ଣ ବାରିପାରିବ ସତେ ସେତେବେଳେ ?
—ଚାଉଳ ଆଉ ଗହମର ହାହାକାରରେ
ପଳିତ ପତ୍ରିଟିଏ ଭଳି
ଛିନ୍ନ ହସର କବିତାଟି ମୋର,
ଆଜିର,
—ତୁମର ତ ?

ଆଃ, ହରିତ୍ ହୋଇଥିବ,
ଚାହାଣୀର ସଜଳ ଉଷ୍ଣତାରେ ହିଁ !
କେତେ କାହାର !



# ଇତିହାସର ବୈଠକଖାନାରେ....

ଠକ୍ ଠକ୍ କରି ନଚାଇ ଦେଇ
ସୁରକ୍ଷିତ ଆତ୍ମାଟିକୁ ତୁମର
ତତଲା ତତଲା ପାପୁଲିରେ କେବେ,
ଛିନ୍ନଛତ୍ର କରି ସଂଶୟୀର ଉତ୍ସାହରେ,
ବୁଣିପାରିବ ଭଲା ଅନାତୁର ବେଦନାର କଢ଼ଗୁଡ଼ିଏ ?

ଦାରିଦ୍ର୍ୟବିକା କାରୁଣ୍ୟର କାକାଳିକୁ ପୋଡ଼ି ପୋଡ଼ି
ଆଜିର କେତେ କଲମୀ ମୁହଁର ତୋଟାମାଳରେ କେଉଁଠି
ହତାଶାର ପଖାଳକୁ ହାପୁଡ଼ି ସୃଷ୍ଟିର ବିଳାସରେ ଥରେ
ଝୁମି ଝୁମି ଝୁଣିପାରିବ ଭଲା ବିମୂର୍ତ୍ତ କେଉଁ କଳ୍ପନାର ଛାଇକୁ ?

କୁରୁଳେଇ ଦେଇ ସ୍ୱପ୍ନର ବିକଳନରେ
ଚେତନାର ବିଭଗ୍ନ ରେଣୁଗୁଡ଼ିକ,
ବିଶ୍ୱାସର ବଏଲର୍ ଭିତରେ ସ୍ୱସ୍ତିର ଆକାଶଟିକେ ମାପି
କୃତଜ୍ଞ ଏକ କୃତଘ୍ନତାର—
ଗୁଣିପାରିବ ଭଲା
''ବେକରାର ଦିଲ୍''ର ସ୍ତୋତ୍ର ସବୁ
ଗୋତ୍ରଚ୍ୟୁତା କବିତାର ବେଗାରୀରେ କେବେ ?

ନାଃ
ଇତିହାସର ବୈଠକଖାନାରେ ତୁମର
ତୈଳାକ୍ତ ଚରଖା ଯେ ଖାଲି ଗୂପାର !
ସିନ୍ଦୂର-ଗୋଳା ଗାନ୍ଧିଟୋପିର ପାଖେ ପାଖେ
ମହାତ୍ମ୍ୟର ମୂର୍ତ୍ତିଟିଏ; ବ୍ରଞ୍ଜ୍‌ର ।
(ଲାଳସାର ଦଂଶନରେ କ୍ଷୀୟମାନ ସ୍ୱର୍ଣ୍ଣାଭାଟିକ ସେଥିରେ,
ଅଗୌରବ ନୁହେଁ ନିଶ୍ଚୟ !)

/ ୮୬ /

ହେଇ, ସେଠି ଗୋଲାପର ମାୟାରେ
ମୃତ କେଉଁ ଯୌବନର ଜବାହାର ଜ୍ୟାକେଟ୍‌ଟା
ବୈଗୁଣ୍ୟର ବ୍ରାକେଟରେ !
ଇସ୍ ! ପୁଂଜିର 'ଖଟମଲ୍' ସବୁ ସାଲୁ ସାଲୁ ଯେ ସେଥିରେ !
ଭାବୁଚ, ଏହା ଭର୍ତ୍ସନା ବୋଲି
ସହଜିୟା କେଉଁ ତାନ୍ତ୍ରିକତାର ?
ଦୃପ୍ତି ବୋଲି ତେଜସ୍ୱିୟତାର
ଲୌକିକ କେଉଁ ଦୃଷ୍ଟିର ଯାନ୍ତ୍ରିକତାରେ ।

ତୁମେ କ'ଣ ସେଇ ନୁହଁ
ଯାହାକୁ ଦେଖନ୍ତି ଆସି ବିଦେଶିନୀ ନିଶିଗନ୍ଧାଏ
କୂଟତାର କାର୍‌ଟିକୁ ଛୁଟାଇ ଦେଇ ଚାଣକ୍ୟପୁରୀର ଗର୍ଭକୁ ?
ହସନ୍ତି ଟିକିଏ, ମାକିଆଭାଲି ରୁମାଲରେ
ଯାହାକୁ ଚାହିଁ ଲୋକସଭାର ବିବରଣୀ କି ଗେଜେଟର ପଛରୁ
ହସପିଟାଲ୍ ସେବିକା କି କଲେଜର ଶିକ୍ଷିକା,
ପୃଷ୍ଠା ପରେ ପୃଷ୍ଠା ଓଲଟାଇ ରଙ୍ଗୀନ୍ କେତେ ଭୂଲତାର !

ନା, ନା, ନୁହଁ; ତୁମେ ନୁହଁ ସିଏ !
ସଜଳ ଏକ ସତ୍ୟ ତୁମେ, ନୂତନତମ ସଭ୍ୟତାର ସଂଧ୍ୟାରେ ।
ସମ୍ବାଦର ଶିରୋନାମାରେ ଦୈନିକ
ଧୂପଦୀପର ସମର୍ଥନ କେତେ,
ଚଳନ୍ତି ରୋମାନ୍‌ସ୍‌ର ଅସରନ୍ତି ବିବକ୍ଷାର ପୁଣି !

(ବେଳେ ବେଳେ ତାହା କ'ଣ ସଙ୍କୁଚିତ କରେନା
ତୁମକୁ ଆଉ ମୋତେ ?)
ଉଜ୍ଜ୍ୱଳ ଏକ ମିଥ୍ୟା ପୁଣି ତୁମେ !
ଅନୁଚ୍ଚାରିତ ଅବ୍ୟୟ ତୁମେ,
ମାତ୍ରା ଆଉ ତଥାପି ଯେତେ ଭୂଛିର !

ମନ୍ତ୍ରୀର ବିବୃତି ପରି ବିଧାନର ବିକୃତିରେ,
କଟାକ୍ଷର ବ୍ୟାଖ୍ୟା ଭଳି
ସୁଦୀର୍ଘ ସଂପାଦକୀୟରେ ସବୁ,
ବ୍ରାହ୍ମଣ୍ୟର ଅନୀତିରେ ?
(ଯାହା ପ୍ରସାରିତ କରେନା ଆମକୁ,
ବେଶ୍ ଗାଣିତିକ ପୁଣି ସ୍ଥିତିସ୍ଥାପକ ଯଦିଓ !)

ଅଦୃଶ୍ୟ ଏକ ରୋଲର୍ ଭଳି
ତୁମେ ହିଁ କ'ଣ ଗଡ଼ି ଚାଲ
ବୁଭୁକ୍ଷୁ ଯେତେ ଶିକ୍ସର ଉପରେ ?

ତୁମେ ହିଁ କ'ଣ ଚିହାଉ ଦେଇ ଧର୍ମଘଟ ପାଇଁ
ସ୍ଲୋଗାନ ଉଠା, ମୈତ୍ରୀର !—
ଦରଦାମର ବୃଦ୍ଧି ପାଇଁ ଦକ୍ଷିଣା ଓ ଦସ୍ତୁରି ପାଇଁ ନିଜଚ,
ତେଣେ ତାଲା ଠୁଙ୍କ ପ୍ରାଣର କାରଖାନାରେ !
ତା'ପରେ ସେ କି ଉତ୍ସବ ହୁଏ ସତେ
ସାଂସ୍କୃତିକ ତାଳିରେ, ସାମାଜିକ ମାଳିରେ !

କେବେହେଲେ ପ୍ରମତ୍ତ ହୋଇଚି ଭଲା ମଧୁର ବ୍ୟସ୍ତତାରେ,
ନିଷ୍ଫଳ ବାତୁଳତାରେ ଅନ୍ତତଃ !
ରକ୍ଷିତାର ଦୈହିକ ଅସୁସ୍ଥତାରେ ସାମାନ୍ୟ,
ସକାତର ଆଭିଜାତ୍ୟ ଭଳି,
ସହିଷ୍ଣୁ ରହି ମୁଖମୁଦ୍ରାର ଆସ୍ଫାଳନରେ ?

ନା, ନା, ଉଦ୍‌ଭ୍ରାନ୍ତ ନୁହେଁ ମୁଁ !
ଜୀବନଠୁଁ ବଳି କୃଷ୍ଣ ମୁଁ, ଶୁଭ୍ର ମୁଁ !
ମୃତ୍ୟୁଠୁଁ ବଳି ଭେଦ୍ୟ ମୁଁ, ବୋଧ ମୁଁ ।

ତୁମର ଅସ୍ତିତ୍ୱରେ ହିଁ ଆଜି କେତେ କେତେ ଦିନାନ୍ତ ମୋର—
ତୀକ୍ଷ୍ଣ ଅତି ଗ୍ୟାସୀୟ ଆଶ୍ୱାସରେ
ବିଦ୍ଧ କରି ରାସ୍ତା ଗଢ଼େ
କଠିନ ଆଉ ମସୃଣ କପାଳରେ ତୁମର,
ସଂଗତ କରେ ବୋଲ୍ଡ଼ର-ତବ୍‌ଲାରେ
ବ୍ୟଥାର ବନ୍ଦରରେ ଆଜି।

ତୁମର ଶ୍ରେଣୀମୟ ଅଫିସରୀ କୁଳର କ୍ଳୀବତ୍ୱ ଉପରେ,
ତୁମର ଅନୁର୍ବର ବର୍ବରତା ଉପରେ,
କଟୀନଚା କବୀନ୍ଦ୍ର ମଣ୍ଡପର,
ବିଦ୍ୟୁନ୍ମୟୀ ମେଖଳାକୁ ଖସାଇଦେଇ ହସାଇ ଦିଏ
ନିଷ୍କରୁଣ ନିଃଶ୍ୱାସ ଖାଲି ଫୁଟ୍‌ପାଥ୍ ଶିଶୁର।

ଆଉ,—ଜନୟିତ୍ରୀ ପୃଥିବୀଟି ମୋର
ପ୍ରଦକ୍ଷିଣ ନ କରୁ
ଏକମାତ୍ର କାମନାର ସୂର୍ଯ୍ୟକୁ ସେଇ
ପ୍ରଦକ୍ଷିଣ କରେ ନିଜକୁ ନିଜେ,
ଭାରହୀନ ଭାରମୟ ଦେହରେ
ଯୁଗାନ୍ତର ଅସ୍ଥିତିର ତଟରେ
ଭାସମାନ ବିନ୍ଦୁର ବିସ୍ମୃତିରେ।

ତେଣୁ ନୂତନତମ ପ୍ଲାଜ୍‌ମା ମୁଁ,
ନୂତନତମ ପ୍ରୋଟୋଜୋଆର ଉତ୍ସ ମୁଁ,
ଉଦ୍‌ଭାସ ମୁଁ!

ଟିକି ଟିକି କରି ଅରକ୍ଷିତ ଆତ୍ମାକୁ ମୋର,
ସ୍ନେହର ସଂହୃତିରେ ଆଜି
ଛିନ୍ନଛତ୍ର କରି
ସ୍ୱର୍ଣ୍ଣମୟୀ ବେଦନାରେ ମୋର
ବୁଣେ ଖାଲି—

ନାଃ, ପାରି ନାହଁ,
ପାରିବ ନାହିଁ ତୁମେ !
ଦେଖ, ମାଫ୍ କରନା କିନ୍ତୁ,
ମାଫ୍ କରେନା ମୁଁ !
ନିର୍ମମ ଉଦାରତାର କ୍ରୀଡ଼ାରେ !!

ଅପ୍ରତ୍ୟାଶିତ ସାକ୍ଷାତରେ
ବୈଦେଶିକ କିନ୍ନରୀର କାଫେରେ କେଉଁଠି,
ଅପରାଜିତାର ଆକର୍ଷଣ ଭଳି
ଦୃଷ୍ଟିର ନେପଥ୍ୟରେ,—
ନିର୍ବାକ ହୁଡି ଟିକିଏ ମୁଁ
ସବାକ୍ ଖୁଞ୍ଚା ଟିକିଏ ମୁଁ
ବାସ୍, ଏତିକି !



# ତୁମରି ମର୍ମେ ପଶେ

ନିଭୃତେ ତୁମ ପତାର ପର୍ଦ୍ଦା ଖୋଲି
ହୃଦୟ ଯେବେ ମୋ, ତୁମରି ମର୍ମେ ପଶେ;
ଚିର ଜାଗରୂକା, ଚିର ନିଦ୍ରିତା ଆଗୋ !
ଅନାଥ ହଜି କି, ତୃପ୍ତି-ତୁଷାର-ରସେ ?

ଦୁର୍ଲଭ କେଉଁ ବହ୍ନି ଧରିନି କହ ?
ଚିନ୍ଦ୍ରିତା ତୁମ ବିଦେହୀ ପୃଷ୍ଠା ଚିରି...
ପ୍ରାର୍ଥନା ମୋର ଭର୍ତ୍ସନା-ତୀର ସମ
ନ ଭେଦି ଭେଦେ କି ତୁମ ମନ୍ମୟ-ଶିରୀ ?

ସମ୍ଭାଳି ରଖୁ ସ୍ରସ୍ତ ଭାବନା-ବାସ,
ତ୍ରସ୍ତା ଏଣୀ କି ଚଂଚଳି ମନ-ବନେ
—ଅହେତୁ ଆଗମେ ଅନାକାଙ୍କ୍ଷିତଟିର—!
ଛକିତେ ଚାହଁ କି କମ୍ପିତ ଅପଘନେ ?

ଭଗ୍ନ ରାଣର ବିଦ୍ରୂପେ କେତେ ଛବି !
ସ୍ୱର୍ଣ୍ଣ-ରସାଣେ ବର୍ଣ୍ଣବିହୀନ ପରା !
ବିସ୍ମୃତି-କଣେ ଶୁଷ୍କ ରାଗିଣୀ-ରେଣୁ
ଉଦ୍ଦାମ ରୋକେ ମୃଦୁ ସଂଯମ-ଝରା !

ପ୍ରଳାପିକା ତୁମେ ! ସମ୍ମୋହେ ଉଠି ଖରେ,
ନିର୍ବାଚନେ ଗୋ ସମ୍ଭାଷି ଆସୁଁ ମତେ,
ସ୍ନିଗ୍ଧ କପୋଳୁଁ ଚିନ୍ତାର ମଳି ପୋଛି
ସଂକୋଚ ପୁଣି ରହ ତନ୍ଦ୍ରାର ପଥେ !

ଆତ୍ମ-ଗୋପନେ ଆବରଣୀ ଟାଣୁଁ ଥରେ
ଯାଏ ଝରିଯାଏ ଆମ୍ରମୁକୁଳ କାହିଁ
ନଗ୍ନ ଦିନର ବଂଚିତ ଅନୁରାଗ
ଦଗ୍‌ଧ କୁହୁର ଅଭିଯୋଗେ ଅବଗାହି !

ଦିଶେ, ମୃଗୟୁର ଚର୍ମ ତୂଣୀର ଦିଶେ !
ଗଢ଼େ ଭୃଙ୍ଗାର, ପ୍ରାଣ-ପହ୍ଲାରେ ଗଢ଼େ !
କେଉଁ ବିଳାସୀର କନକ ଅଙ୍ଗୁରୀୟ
ସ୍ମୃତି-ପଣତର ଛିନ୍ନ ଦସିରୁ ଝଡ଼େ !

ଜାଣେ ମୁଁ, ତୁମର କେହି କିଛି ନୁହେଁ, କେହି
ତୁମେ ସରାଇର ଅରୂପ ରୂପର ସାକୀ !
କେତେ ମରମୀର ସନ୍ନ୍ୟାସ-ବ୍ୟଥା ମେଳେ
ତୁମେ ଖେଳ ଖାଲି ବିଶ୍ୱ-ବିଭୂତି ମାଖି !

ହୃଦୟେ ତୁମର, ଜାଣେ ମୁଁ, ଶ୍ରାନ୍ତ କେତେ
ଯାପିଥିବେ ଆସି ସାନ୍ତ୍ୱନା-ସୁଖେ ରାତି,
ରକ୍ତ-ଅଧର ଦଂଶି କି ସମାରୋହେ
ଦଳିଥିବେ ତୁମ ତାପିତ ତାମ୍ରଛାତି !

ଆସିଥିବେ ଭୁଲି ବିଦ୍ୟାବାଗୀଶ କାହୁଁ
ବିନୟଗର୍ବେ ବଖାଣି ତତ୍ତ୍ୱ ବେଗେ !
ଭିକ୍ଷୁ କେ ଢାଳି ଲୁବ୍‌ଧ ଦେହର ଭାଷା
ଝାସିଥିବେ ପ୍ରାଣ, ନବ ନିର୍ବାଣ-ମେଘେ !

ମୋଓ ପରି ଖୋଲି ପତାର ପର୍ଦ୍ଦା କିଏ
ତନ୍ମୟେ ଏଡ଼େ, ରଶ୍ମିର ଧାରା ଇଡ଼ି
ବହୁଭୁକ୍ତା ଗୋ, ପ୍ରୀତି-ଅଭିଜ୍ଞା କହ !
ଉନ୍ମାଦେ ଧରେ ପ୍ରାଣ-ଶତଦଳ ଭିଡ଼ି !

/ ୯୨ /

ଚୁମ୍ବନ କାର, କଳା-କୁଝ୍‌ଝଟୀ ଚୂରି
ଝରାଇଚି କେବେ ତୃଷାର ପାରାବାରେ
ଧୀର ସଂଶୟେ ଆଶ୍ୱାସି ରୂପମୟି !
ଥରାଇଚି ଭଲା ଆହ୍ଲାଦ-ହାହାକାରେ !

ସଂକୋଚ କାହିଁ! ବଜା ! କଙ୍କଣ ବଜା !
ପ୍ରୀତି-ପଙ୍କରେ ଶୁଚିଶୁଭ୍ରା ମୋ ନଟି !
ସଞ୍ଚରି ତୁମ ତନୁ-ସଂଗୀତ-କୂଳେ
ମୁଗ୍ଧ ମୁଁ ପଢ଼େ, ହେମ-ଜ୍ୱଳନ୍ତ କଟୀ ।

ନର୍ମ ଲୀଳାର ନାହିଁ, ନିର୍ଣ୍ଣୟ ନାହିଁ।
ଶାଶ୍ୱତ ବ୍ୟଥା ନିର୍ବାଧେ ଦିଅ ଢାଳି;
ମସୀ-ପଲ୍ଲବେ ଖଣ୍ଡିତା ଶଶୀ ଆଗୋ !
ଅଶ୍ରୁ-ଶିଶିରେ ମୃଣ୍ମୟୀ ଦୀପ ଜାଳି !

ସଙ୍ଗମେ ଆମ ଗ୍ରହତାରକାର ଭ୍ରୂଣ
ଗର୍ଭରେ ତୁମ ପ୍ରସ୍ଫୁଟ ହେଉ ସଖି !
କଳି-କିଶଳୟେ ଶୁଭ ଉତ୍ସବ ରସ
ଅଣୁ-ଅନଣୁର ଅନ୍ୱୟେ ଯାଉ ରଖି ।

ଆତ୍ମୀୟ ମୁଁ ଯେ, ଚାହିଁ ନ ଯାହାକୁ ତୁମେ,
ଆସେ ଯାଏ କେବେ, ମୂର୍ତ୍ତ ମୁଁ ଅବକାଶ !
ଛନ୍ଦଗହଳେ ଶତ ତପ୍ତର, ପ୍ରିୟା !
ନିଷ୍କ୍ରିୟ ବୁକେ ସକ୍ରିୟ ପରିହାସ ?



# ଆରେ ଦୁର୍ଭାଗା ଦେଶ

ଆରେ, ଦୁର୍ଭାଗା ଦେଶ ରେ ମୋହର !
ଆରେ ଦୁର୍ଭାଗା ଦେଶ !
ଅନ୍ଧ ନୟନେ ବରଣ କରିଲୁ
ଏ କି ଏ ଦୈନ୍ୟ !
ଭାବର ଦୈନ୍ୟ କ୍ଳେଶ !

ବନ୍ଧ କରି ତୁ ଜୀବନ-ସରିତ
ମନ୍ଦିର ତଳେ ତଳେ ରେ ତୋହାର,
ପ୍ରସ୍ତର ତଳେ ତଳେ,

ରୁଦ୍ଧ କାରାରେ
ତୁଚ୍ଛତା ଘେରା
ସଂସ୍କାର-ଭାରେ
ପିଷ୍ଟ କରିଲୁ
ଶକ୍ତି ତୋ ପଳେ ପଳେ !
ପଶ୍ଚାତେ ରଖି ଦୃଷ୍ଟି ନିୟତ
ସୃଷ୍ଟିର ପଥ ମଣିଲୁ ଅପଥ
ଗର୍ବିତ ହେଲୁ ମୂର୍ଚ୍ଛା-ଆହତ !
ଦୁଃଖ, କଷଣ, ଲଜ୍ଜା ସହିଲୁ
ଧରିଲୁ ଭିକ୍ଷୁ-ବେଶ
ଆର ଦୁର୍ଭାଗା ଦେଶ !

ଶଙ୍ଖ ତ କେତେ ବାଜିଲା ଦୁଆରେ
ନିଦ୍ରା ତୁଟିଲା କାହିଁ ରେ, ତୋହର
ଚିତ୍ତ ଉଠିଲା କାହିଁ ?
ପ୍ରୀତି-ଫାଲ୍‌ଗୁନେ ଦୀପ୍ତ ପରାଗେ
ପୁଣ୍ୟ ଫୁଟିଲା ନାହିଁ !

ପଙ୍କିଳ ହେଲା ତୀର୍ଥ-ସଲିଳ,
ଗରଳେ ଭରିଲା ଦକ୍ଷିଣାନିଳ !
(ପ୍ରାଣର ପ୍ରଦୀପୁଁ ସରିଲା ତଇଳ ?)
ଲୁଳିଲା ଚର୍ମ, ଯଉବନେ ତୋର
ଥରିଲା ପକ୍କ କେଶ !
ଆରେ ଦୁର୍ଭାଗା ଦେଶ !

ଦଳିତ ମାନବ ଅନ୍ତର ଭେଦି
ଛୁଟିଲା ମୈତ୍ରୀ-ରାଣରେ ତୋହର
ଉଠିଲା ସାମ୍ୟଗାନ୍ !
ଗଗନେ ଶୁଭିଲା ବୁଦ୍ଧର ବାଣୀ
ଶୁଦ୍ଧ ହେଲା ନି ପ୍ରାଣ ?
ମୁକ୍ତିର ଲାଗି ସନ୍ନ୍ୟାସୀ ସାଜି,
ଅଙ୍ଗେ ବହିଲୁ ବଂଧନରାଜି
ପ୍ରଗତିର ଗଲା ସ୍ୱନ୍ଦନ ଭାଜି !
ବିସ୍ମରି ତୋର ବିଶ୍ୱ-ଚେତନା
ଭସ୍ମ-ମୁଠିରେ
ହେଲୁ ଧର୍ମର ଶ୍ଳେଷ !
ଆରେ ଦୁର୍ଭାଗା ଦେଶ !
ଚନ୍ଦନ ଲେପି ଶିଳାତୁଳସୀରେ
ଢାଳିଲୁ ଭକ୍ତି-ଲୋର ରେ ତୋହର
ପାଳିଲୁ ମୁକ୍ତି-ଖୋର !
ନାହିଁ ଯିଏ ନାହିଁ, କୀର୍ତ୍ତନେ୍ ତାର
ଧରିଲୁ କଣ୍ଠା-ଡ଼ୋର !
(ହାଇ ରେ ଅନ୍ଧ ! ଲୋତକେ ଚୂରିବୁ
ଲୁହା-ଶୃଙ୍ଖଳ ତୋର ରେ ଦେଶ ମୋ'
ସଂସାରୀ ଦୋଷ; ତୋର !)—
କେତେ ଉପବାସ ଆତ୍ମ-ପୀଡ଼ନେ
ସଂଚରି କେଉଁ ନନ୍ଦନ ବନେ
ଲଭିବୁ କି ମହାମୋକ୍ଷର ଧନେ !

ମୁକ୍ତି ତ ନୁହେଁ ଜଣକର ଆରେ—
ସୁଖ-ସ୍ୱପ୍ନର ଲେଶ,
(ଦୂରିତ ହୁଏ କି ସଂଘବିହୀନେ—
କଳୁଷ-ଲିପ୍ତ ବେଶ ?)
ଆରେ ଦୁର୍ଭାଗା ଦେଶ !—

ଯଜ୍ଞରୁ ତୋର ଆଦ୍ୟେ ଖେଳିଲା
'ସମିତି ସମାନୀ',
ମହାକାଳ-ବୁକେ ମୁକ୍ତି-ନିଧାନୀ
କି ମହାମନ୍ତ୍ରେ ଖେଦି ଅମ୍ବର ତଳ !

ନୋହୁ ଦୁର୍ଭାଗା, ନୋହୁ ଦୁର୍ଭାଗା
ଦେଶ ତୁ ମୋହର—
ଦୁର୍ଦ୍ଦମ ତୁ ଯେ !
ଦୁର୍ବାର ତେଜେ—
ଜାଗ ରେ ଊର୍ଜ୍ଜସ୍ୱଳ !
ଦୁର୍ଗମ ଦୂର ମୁକ୍ତି ସରଣୀ
ପ୍ରଜ୍ଞାର ଧାରେ,
ମନେ ଘେନ ବାରେ ।
ପ୍ରଳୟ ନୃତ୍ୟ ଥଳ ରେ ଦେଶ ମୋ !

ଅଖିଳ ଜନର ଐକ୍ୟ କରଣୀ,
କର୍ମ ପ୍ରେରଣା ବଳ !
ବିପ୍ଳବ ଆଜି ବିଶ୍ୱ ଦୁଆରେ
ନିଃସ୍ୱର ଆଜି ନିଃସ୍ୱ ସାହାରେ
ଦଳିତ ଜନର ସଂଗ୍ରାମେ ଆମ,
ରକ୍ତ ଶୋଷଣ,
ଧର୍ଷଣହୁଏ ଶେଷରେ ଦେଶ ମୋ
ଭାଗ୍ୟବିଧାୟୀ ଦେଶ !
ଧର ବିପ୍ଳବୀ ବେଶରେ ଦେଶ ମୋ ।
ପ୍ରାଣ-ସଂଧାନୀ ବେଶ !



# ଆଦିମ

ନିଜକୁ ନିଜେ ନଖେଇ
ଫିଙ୍ଗିଦେଲି,—ଉପରକୁ ତୁମର !
ଇସ୍ ! କି କଣ୍ଟାଟା !
ତୁମେ ତାକୁ ଚାଖିଲନି ! ଶୁଂଘିଲ ବା !
ତା' ପରେ ଦୁହେଁ ଚାଲିଗଲୁ ଜଙ୍ଗଲକୁ,
ନାଇଁ ?

ଝାଳ ଗମ୍‌ଗମ୍,
ଫେରିଲୁ ଯେତେବେଳେ
କେତେ କେତେ ରଶ୍ମିର ବଉଳ ଝରିଯାଇ ନଥାଏ ବା
ବାଟରେ ଆମର,
କିଲିବିଲି କରି ଆମକୁ !
କେତେ କେତେ ଗଇଣରେ ଭରଯିଇ ନଥାଏ ବା
ବିଲିବିଲେଇ
କିଆରୀଗୁଡ଼ିକ, ସୁରର !
ବାହାରିଲ ତୁମେ ସ୍ୱପ୍ନରୁ ପୋଷେ ସିଝେଇବା ପାଇଁ !
ମଙ୍ଗଳକୁ ନୁହେଁ ତ ?
ଇଃ, କଣଟାଏ ! ଝୁଣ୍ଟି ପଡ଼ିଲି ମୁଁ !
ଦାନ୍ତେଇ ଦେଲି, ମାଙ୍କଡ଼ାମିରେ;
ଗଳିଗଲି, ଗଳିଗଲି ସେଥିରେ
ଛାତିତଳେ, ଉଷୁମେଇ ଏମିତି ପଚେଇଥିଲ ତାକୁ ?
ଯାହାକୁ ଫିଙ୍ଗିଥିଲି, ଆଃ !
ସେଇ ଯେ ମୁଁ ନୁହେଁ ତୁମେ !

ହସୁଥିଲ ସେତେବେଳେ
ଦୁଷ୍ଟାମିର ସନ୍ତୋଷରେ
ଉଲ୍‌ର ବଲ୍‌ଟିକୁ କାମୁଡ଼ି
ବସଷ୍ଟାଣ୍ଡରେ କେଉଁଠି

ଖତେଇ ହେଉ ନ ଥିଲ ତ
ପାଚିଲା ଜହ୍ନଟାକୁ ?



# ଦେବତା ନାଇଁ ଭୁବନବନେ,

ଦୁଆର ତୋର ରୁଦ୍ଧ କରି
ନିଜର ରଚି ନିର୍ବାସନ
ଅଜ୍ଞତାର ଦେଉଳ ତଳେ
କାହାର ତୋଳୁ ସିଂହାସନ ?
କିଏରେ କିଏ, ଦେବତା ତୋର ?
କାହାର ଲାଗି ହେଉ ରେ ଭୋଳ ?
ଧ୍ୱାନ୍ତଘେରା କେଉଁ ସେ ଦେଶେ
ସ୍ୱପ୍ନେ କରୁ ସଂଚରଣ ?

ଈଶ୍ୱର ସେ ବିଶ୍ୱର କେ ?
କି ଯାଏ ଆସେ ତାହାର ସାଥେ ?
ତାହାରି ଲାଗି ଅନ୍ଧ ଭଳି
ବୁଲୁରେ କିଆଁ ରିକ୍ତ ହାତେ ?
ବନ୍ଧ କରି ଚିନ୍ତାଧାରା,
ପାର୍ଶ୍ୱେ ତୋଳୁ ନିବିଡ଼ କାରା !
କଳ୍ପନାର ପ୍ରତିମା ପାଶେ
ପୂଜନ ରଚୁ ସଂଜପ୍ରାତେ !

ଝଂଝା ଉଠେ ଆକାଶେ ଯେବେ
ବନ୍ୟା ଆସେ ପ୍ରଖରେ ଛୁଟି,
ଗୋଟିକ ପରେ ଗୋଟିଏ ଯେବେ
ସଉଧ ଶିର ପଡ଼ଇ ତୁଟି,
ପ୍ରେୟସୀ ଏଡ଼ି ପ୍ରେମିକ ଦୁଃଖ
ଶୁଅଇ ଯେବେ ମୃତ୍ୟୁ-ବୁକେ,
ପୁତ୍ରହରା ରମଣୀ ଯେବେ
ଧରଣୀ ତଳେ ପଡ଼େ ରେ ଲୁଟି,
ଈଶ୍ୱର ତୋ ମଉନେ ରହେ
ଆସଇ ନାହିଁ ଶିଳାରୁ ଉଠି !

ଗୋଟିକ ଲାଗି କୋଟିଏ ଯେବେ
ଚୁମଇ ଯାଇ ସମର ଭୂଇଁ;
ଦିଅଇ ଢାଳି ଉଷ୍ଣ ଲହୁ
ଶାଣିତ ଶତ ଖଡ଼୍‌ଗ ଛୁଇଁ;
ଦେବତା ତୋର ନୀରବେ ହସେ
ଗମ୍ଭୀରାରେ ଲୁଚି କି ବସେ ?
ଜଗତ ଘେରି ଜଳଇ ସିନା
ନିଠୁରତାର ହିଂସ୍ର ଜୁଇ ।

ଫାଟଇ ଯେବେ ଧରାର ବୁକୁ
ଧ୍ୱଂସ ଆସେ ମୂର୍ତ୍ତି ଧରି;
ଲୋଟଇ ଯେବେ ଜୀବନ ଶୋକେ
ଛପଇ ତୋର କାହିଁରେ ହରି ?
ସିନ୍ଧୁ ଯେବେ ଗରାସେ ନାହା,
ଦେବତା ତୋର ନ ହୁଏ ସାହା !
ନୟନ କୋଣେ ତପ୍ତ ଜଳ
ଉଠଇ ସିନା ବ୍ୟର୍ଥେ ଭରି !
ତୁହି ରେ ଖାଲି କ୍ଷୁଦ୍ର ଘରେ
ବସୁରେ ଘେନି କ୍ଷୁଦ୍ର ଭାବ !
ଭସାଉ ନାହିଁ ପୁଲକ ଭରେ
ଅତଳ ଜଳେ ଜୀବନ-ନାବ
ଜଗନ୍ନାଥ ପଙ୍କୁ ଦେଖୁ,
ତଥାପି ତା'ର ପତାକା ଟେକୁ !
ପଲ୍ଲୀପୁରେ ଅଜ୍ଞାତ ସେ,
ତୋଳୁ ରେ ତା'ର ବିଜୟ-ରାବ !

ବୁଦ୍ଧି ଅଛି, ବିବେକ ତୋର
କ୍ଷଣକୁ କ୍ଷଣ ଉଠଇ ଜାଗି,
ତଥାପି ତୁ ରେ ସ୍ୱାଧୀନ ନୋହୁ
ବୁଲୁରେ ଖାଲି ଭିକ୍ଷା ମାଗି !

ଯେ ଯାହା କହେ ନେଉ ରେଁ ମାନି
ଯେସନେ ତାହା ଶ୍ରେଷ୍ଠ ବାଣୀ !
ସେଇ ବାଣୀରେ ମୁକ୍ତି ତୋର
ମରୁରେ ମରୁ ତାହାରି ଲାଗି !

ବାହୁରେ ନାହିଁ ଶକ୍ତି ତୋର
ସ୍ୱାସ୍ଥ୍ୟ ନୁହେଁ ଅଙ୍ଗେ ଭରା,
ଯୌବନରେ ଦୁର୍ବଳ ତୁ,
ଗ୍ରାସଇ ଆସି ସହାସେ ଜରା ।
ରଶ୍ମି ସୂର୍ଯ୍ୟ ଖେଳଇ ପାଶେ,
ଅନ୍ଧକାରେ ମରୁ ତୁ ତ୍ରାସେ !
ରହଇ ପଡ଼ି ବିଶାଳ ନଭ,
ଶସ୍ୟମୟୀ ଶ୍ୟାମଳ ଧରା !

ସ୍ୱପ୍ନ କେବେ ଦେଖୁଚୁ କିରେ
ହିମାଦ୍ରିର ଶୃଙ୍ଗ ପରେ ?
ଜୀବନ ଆଗେ ଛୁଟିଚୁ କିରେ
ସୁଦୂର ଦେଶେ ଆବେଗଭରେ ?
ମାନବ ତୁ ଯେ, କ୍ଷୁଦ୍ର ନୋହୁଁ !
ଅନ୍ତରରେ ପ୍ରତିଭା ବୋହୁ !
ବୁଝିଚୁ କିରେ ସତ୍ୟ ଏହି
କର୍ମ ତୋର ନିୟତ ଧରେ ?

ମନୁର କଥା ସତ୍ୟ କହୁ,
ଶତେକ ଶତ ବର୍ଷ ପରେ !
ଯୀଶୁର ନୀତି ମିଥ୍ୟା ନୁହେଁ,
ତହିଁରେ ତୋର ଆସ୍ଥା ଧରେ ।
ସ୍ୱାଧୀନ ପ୍ରେମେ ସରଜି ବାଧା
ପୂଜୁରେ ସୁଖେ କୃଷ୍ଣ-ରାଧା !
ଅଦ୍‌ଭୁତ ତୋ ଦର୍ଶନରେ
ଅନ୍ଧକାର ନିବିଡ଼େ ଥରେ !

ସର୍ବହରା ବିଶ୍ୱେ ତୁ ରେ,
ବଞ୍ଚିତ ତୁ ସକଳ ଧନେ !
ଖୋଜୁ ରେ ବୃଥା ଜୀବନ କଥା,
ଦେଉଳ ତଳେ ଶୂନ୍ୟ ମନେ !
ଶିଳାରେ ପିଟୁ ମୁଣ୍ଡ ଖାଲି,
ଯାତ୍ରାପଥେ ତପ୍ତ ବାଲି
ନାଇଁ ରେ, ନାଇଁ ଶୀତଳ ଛାଇ,
ଦେବତା ନାଇଁ ଭୁବନ-ବନେ !



/ ୧୦୨ /

# ଧୂଆଁର ପିଣ୍ଡୁଳାଟିଏ

ଶିମ୍ଳିଫୁଲେ ସରମ୍ ତୋର ଲାଲ୍
ଶାଳର୍ ବନେ ଜହ୍ନ-ଉଆଁ ରାତ୍ !
ଶୁଣୁଚ ଆଜି ତ ?
ସଜନି ! ମନେ ମାଦଳ ମତୁଆଲ୍
ମରମ୍ ପରେ ମରମ୍ ରଖେ ହାତ !
ନେପଥ୍ୟେ ରାଗିଣୀଟିଏ
ଶବ୍ଦର ଛାୟା ଯେ !

ଖେଳୁନି ଆଖିରେ ?
ନିବିଡ଼ ତାରଲ୍ୟେ ଥରେ
ହାତରେ ନ ଲାଗୁଁ ହାତ
ଅଟଳ ସଂଶୟେ
ନିବାତ ଶିଖାର ତଳେ
ମହମ ବତୀର ?—

ପଡୁନି ମନେ କି ?—
ଏମିତି ନିର୍ବେଦ ରାତି, ପହିଲି ଗୁଲ୍‌ଗୁଳି,
ଥରିଲା ବଂଗ୍‌ଲୋ ଆଉ ଥରିଲା ଟେବ୍‌ଲ୍ ।
ଚୁଂଟାଂ, ଚୁଂଟାଂ,
ଗିଲାସୁଁ ଗିଲାସେ ବାଜି
ତାଳ୍‌କେ ଦି' ତାଳ୍ !
କାଛ କରେ କରେ ଠିକ୍ ଝର୍‌କା ସେପଟେ
କୁଁକୁରିଲା କିଏ ?
ନାଇଁ, ନାଇଁ, ମୁଁ ନୁହେଁ !
ଥୁର୍ ଥୁର୍ ଝୁଲାରେ ଝୁଲାରେ ଝୁଲି ବେହାଗ-ବାହୁନାମେଳେ
ସୁର୍ ସୁର୍ ଦାଦ୍‌ରା ?—

—କୋଇଲା-ଫୁଲେ ଲାଗିଲା ଆଜି ଆଗ !
ମାଟିର ରସେ ଜୁକୁରୁ ଜୁକୁ ହିଆ ରେ ଧନ୍,
ଜୁକୁରୁ ଜୁକୁ ହିଆ !
ମୁଗ୍‌ନି ମୁହେଁ ଝର୍‌ଣା ରେଖେ ଦାଗ !
କୁଟ୍‌ରା ତୁ କି ?
ଫୁକୁରୁ ଫୁକୁ ଠିଆ, ରେ ଧନ୍,
ଫୁକୁରୁ ଫୁକୁ ଠିଆ !—

ଚଙ୍ଗ୍ ଚଙ୍ଗ୍ ଚୋପ-କାଠି
ଚାଙ୍ଗୁର୍ ଛାତିରେ !—

—ଖଣିର ତଳେ ମଣିର ନଈ
କୋଇଲା ପୋଡ଼ି ଲାଲ ଲୋ, ଧନି !
ଶିମ୍‌ଲିଫୁଲେ· ମରମ ପୋଡ଼ି, ଲାଲ !
ମହୁଲ ମାୟା ଆଣ ଲୋ ବେଗେ, ଆଣ୍ !

ସଜନି ! ଆଜି ଜାଲର ପରେ ଜାଲ ଲୋ ଏଇ
ଗାଲର ପରେ ଗାଲ ଲୋ କେତେ !
ରଜ୍‌ନୀ ମତୁଆଲ୍ !
ଦୁଇଟି ଦେହେ ଗୁଟିଏ ସିନା ପ୍ରାଣ୍ !

କୁର୍ କୁରି ଉଠିଲା, ଇଃ !
କୁର୍‌ହେଇ ଚୁମୁଟା ସତେ ବା ।
ସେ କି ରେ ହିନ୍ଦୋଲ୍ !

—ଢୁକୁରୁ ଢୁକୁ ଢୋଲ୍ ରେ ଧନ !
ଢୁକୁରୁ ଢୁକୁ ଢ଼ୋଲ୍,
ପାର୍‌ବୁ ଯଦି ମଥାରୁ ମୋର
ତାରାର୍ ମାଳା ଖୋଲ୍‌ରେ ଧନ ?
ଭୁଇଁର ଜାଳା ଖୋଲ !

ଅତଳ ନିଃଶ୍ୱାସ !
ଡେଇଁଲା ଜହ୍ନଟା କାଇଁ ଅନାଥ ମେଘକୁ !
ହରିଣୀ ଗୋ ! ସଦ୍ୟ ଶୀକାର ମୋ !
ଟେକିଲ କାନ କି ତୁମ,
ନ ଲସି, ଉଲୁସି ପୁଣି
ଉଦ୍‌ଭଟ ଭୟରେ ?—

—ଆଆ ଲୋ, ଆଆ ! ପାହାଡ଼ ହେବା ପାର୍ !
ଲଟାର ସାଥେ ଝଟାର ଛଟା ମେଲ ।
ଓଖର ଓଠେ ଅଲସୀ ଛବି ଠାର୍ !
ମହୁଲ ମହୁ ଅଠାରେ ଲଠା-ଖେଲ୍ ।
ମନ୍‌ର ସାଥେ ମନ୍ ଲୋ ଯଦି ସହି ।
ଦେହରେ ଦେହ, ଓଲଟ ପକ୍ଷୀ ଗେଲ !

ଚୁପ୍ ! ଚୁପ୍ !
ଡାକିଲା କିଏ କି ?
ଡହକି ଡାହୁକୀଟାଏ କୋଠରୀ-କଣରୁ ?
ଛିଙ୍କିଦେଲା ପାହାନ୍ତି ତାରାଟା,
ଚିଢ଼େଇ, ଉଢ଼େଇ ସତେ
କାକର ମୋଞ୍ଚାଏ, ଛିଃ !
ଲାଗିଲା ଉନ୍ମାଦେ ସେ ତ ଗିଲାସ୍ କାନିରେ
ଟାଙ୍କୁରାଇ ତନ୍ତୁଗୁଡ଼ା ନିଶୂନ ଛାତର ।

—ଶିଆଳିଇଟି ଧାର୍ ରେ ଧନ
କଟାରୀ ମୁହେଁ ଧାର୍ !
ପୀରତି ପଥେ ଲଟ୍‌ରା ପରା
ହାହାର କୋଟି ଗାର୍ !
ସରମ କେଇଛନ୍ !
ଭାଇଟା ମୋର ରାହୁଆ, ଆରେ !
ହାଉଁଆ, ଆରେ !
ଗଉଁଆ ବଡ଼, ଗାଆଁର ଅସୁଜନ୍—
ହାଇରେ ମୋର ଧନ ।

ହୁଁ ହାଁ, ହୁଁ ହାଁ,
ରାବିଲା ରାତିଟା,
ଅନ୍ଧାରୀ ଗୁହାରୁ ଫିଟି
ଲୋଟାଇ ଆକୁତିଟାଏ
ଡାଳରୁ ଡାଳକୁ,
ଝରିଲା ବାଉଳି ହୋଇ
ମୁଣ୍ଡଟି ଚୁଙ୍ଗାରି ତାର !
ଏଣୁଅ ନୁହେଁ ତ ?—

—ହାତ୍‌କେ ତାର ତେଣ୍ଟା, ଆରେ !
ହାତ୍‌କେ ତାର ତୀର !
ଲଗାଇ ଦିଏ ଖୁରି ସେ କେତେ
ଲହୁଟା ତାକୁ କ୍ଷୀର !
ଶିଆଳ୍ ତହୁଁ ଛେଉକା ସେ ରେ
ବାରିହାଁ ଘଣ୍ ଘଣ୍ !
ଆହା ରେ ମୋର !
ମନରେ ଯଦି ମନ୍‌ରେ, ସାଥି !
ସେଇ ତ ଆମ ଧନ୍ !

ଦି' ଚୋଟ ଚାହାଣୀ !
ଛିଁଚାଡ଼ିଲା ନାକଟାକୁ
ଆଲୁରି ଚିର୍‌ଗୁଣିଟାଏ—
ଚିର୍‌ଚିରେଇ,
କରୁଣ ଫୁର୍ତ୍ତିରେ !
ପତ୍ରର ଝାଲର୍ ଜାଲି ଆଢ଼େଇ କପାଳୁଁ
—(ନା, ନା ବୁର୍ଖା ନୁହେଁ ଓମର୍ ଖୈୟାମୀ !)
ଚିରିଲା ଖବର-ଧଡ଼ି ଅଜଣା କାଗଜଟିର,
କେଜାଣି କେବର, ଅଚାଆ ନଖରେ
—ନା, ନା, ତୁମେ ନୁହଁ, ହୁଏତ ମୁଁ ବା !—

ଝାକିଝୁକି ପଶିଯାଉଁ ଫୁଲଦାନୀ ଧୂଳିରେ
ଶିରଶିରେଇ ଅଜାଡ଼ିଲା ଗରମ୍ ମହକଗୁଡ଼ା ।
ନାସିକି ଭିଡ଼ିଲା ନାସି !
ପାଦକୁ ଛୁଇଁଲା ପାଦ ! ବାସିଲା ଚୁରୁଟ୍ !

ଶୁଣୁଚ ତୁମେ ତ !
ସେ କି ଗଡ଼ାଗଡ଼ି ସତେ, କାମୁଡ଼ାକାମୁଡ଼ି !
ଛଡ଼ାଛଡ଼ି, ଯୋଡ଼ାଯୋଡ଼ି, ଆଗୁଳାଆଗୁଳି, ଏଃ !

ସେ କି ଝଡ଼ାଝଡ଼ି ପୁଣି,
ଠିଆ ଠିଆ ଝିଙ୍କର କାଠି କି ?
ହୁଉଁ ନାଆଁ, ନାଆଁ ହୁଉଁ,
କଂକ୍ରିଟ୍ ଚଟାଣ ତଳେ ।
ସୁଲୁ ସୁଲୁ ଖୁଲୁ ଖୁଲୁ କୀଟର ମଉଛା
ନାଇଁ, ନାଇଁ, ଜଳିନି ତ ଚୌକିଟା ତୁମର !

—ସଜନି ! ଆମେ ପାହାଡ଼ ହେବା ପାର୍
ଆଲୋ ! ଦରିଆ ହେବା ପାର୍ !
ମନର୍ ସାଥେ ମନର ଯଦି ମେଲ୍ !
ଦେହରେ ଦେହ ଛାର ଲୋ ଧନି !
ବତାସ ବୁକେ ଝଲ୍‌ସୁ ଲହୁଗାର୍ !
ଆଜି ଯେ ଆମ ପ୍ରାଣରେ ପ୍ରାଣ ଖେଲ୍ !

ନିବୁଜ ଦିଗନ୍ତ !
ସେ କିବା ଅର୍କେଷ୍ଟ୍ରା !
ନୀଡ଼ରୁ ନୀଡ଼କୁ କେତେ ଖୋଲରୁ ଖୋଲକୁ
କୋରଡ଼ୁଁ କୋରଡ଼େ !
ବାଷର ପ୍ରପାତ ପରେ ନାଚିଲା ଉଲ୍‌କା ଯେ !

ଆଗୋ ଶୀକାରିଣୀ ମୋର !...ମୁଁ ତୁମ ଶୀକାର୍ ।
(କିଏ କା' ମୁଠାରେ ଆମେ ?)
ଆଉଜି ମୂର୍ଚ୍ଛାରେ ସତେ ପ୍ରସ୍ତର ଛାତିରେ ମୋର
ଝାମ୍ପିଲ ମତେ କି ?
ନ ଠେଲୁଁ ଦୃଷ୍ଟିରେ ମୁଁ ଯେ
ଖୁମ୍ପିଲ ଡୋଳା ମୋ !

ଥରେ କି ଦି'ଥର୍
ଘୁଙ୍ଗୁଡ଼ି ବା ମାରିଥିବ ଅଚଳ ଘଣ୍ଟାଟି
ଅଛାଡୁ ଉତ୍ସାହେ
ଅତନ୍ଦ୍ର ଡ୍ରଅରେ, ଢୁକ୍ ଢୁକ୍ ଢୁଇଟି !
ଥରେ କି ଦି'ଥର୍ !
ଧଡ଼୍‌ଧାଡ଼୍ ଫିଟିଗଲା ଝରକା କବାଟ ଯେତେ,
କେଏଁ କେଏଁ ମନର କବ୍‌ଜା,
ସାଇଁ ସାଇଁ ପବନ ଚାବୁକ୍
ପିଟି ହେଲା ଲାଞ୍ଜଗୁଡ଼ା ହାଡ଼ର ପାହାଚେ ?
ଭିଣିଲେ ଚମର ସ୍କାର୍ଟ, ଚିକ୍‌କଣ ଭୂରୁର ତୁମ,
ଝୁଣିଲେ ଟ୍ରାଉଜର୍ ମୋର, ଜମାଟ ମାଂସର,
ଡାହାଳ କେତୁଟା !
ପଳାସି ଆସିଲେ କେତେ ଦିଗ୍‌ଦନ୍ତୀ କେଉଁଠୁ ?
ହେଣ୍ଡାଳିଲା କିଏ—

—ଟୋକ୍‌ଲିଟାଏ ! ଟୋକ୍‌ଲିଟା ତୁ !
ଏଡ଼ିକି ତୋର ଟାଣ୍ !
କୁଆଁରୀଟା ଲୋ ! ଗୁଆଁରୀଟା ତୁ !
ଏଡ଼ିକି ତୋର ମାନ୍ !
ବହିନା ପାଇ
ଆସ୍‌ଲି ଧାଇଁ
ଚାଲ ଲୋ ଆଗ
ବଂଗ୍‌ଲୋ ଘରେ ଚାଲ୍ !

ଆଲୋ !—
ନରମ୍ ଯେଡ଼େ, ଉଷୁମ୍ ତେଡ଼େ
ବାବୁର ଗାଲେ
ଲାଗୁ ଲୋ ତୋର ଗାଲ!

ଯାଉ ଲୋ ଯାଉ ହାଁଡ଼ିଆପିଆ
ମାଁଡ଼ିଆଖିଆ ତାନ୍;
ଟାଙ୍ଗିଟାରେ ଗଜ୍‌ରା ମାରୁ
ପୁଡ଼ିକି ପୁଡ଼ି ଧାନ୍ !

କଇଁ, କଇଁ !
ଓଃ ସେ କଇଁ କଇଁ, ହସିଲା କାପ୍ତିଟା
ଖଟର ସଂଧିରେ !—
—ଭାଇ ରେ ! ତୁ କି ମନିଷ୍ ନୋହୁଁ?
ଜୁହାର୍ ତତେ,
ଜୁହାର ଅନିବାର ।
ପେଟରେ ମୋର ଶାଲର୍ ଗଜା,
ତମାଲବନେ ମହୁଲ ରଜା !
ଭାଇ ରେ ମୋର !
ଜୁହାର ତତେ
ରଖ୍ ତୋ ଧନୁ ଭାର୍ !

କଡ଼ମଡ଼, କଡ଼ମଡ଼, ପାହାଡ଼-ରଗଡ଼ା, ଘରେ !
ଫଡ଼୍ ଫଡ଼୍ ଡେଣାର ଆବାଜ !
ଗଅଁକିନି ତୁଟିଲା ତବ୍‌ଲା !

—ଏଇରେ ଏଇ ! ଧନ୍ ରେ ମୋର,
ସାଥୀରେ ମୋର !
ପାହାଡ଼ ହେଲି ପାର୍, ମୁଁ ଏବେ,
ଦରିଆ ହେଲି ପାର୍ !

ପୀରତି-ପୋଷେଲହୁର ପାରାବାର ରେ ଧନ
ଲହୁର ହାହାକାର ।
କଟା ହେଲା ମୁରଗୀ ଗୋଟାଏ,
ବ୍ରେକ୍‌ଫାଷ୍ଟଲାଗି ଆମ,
ନ ନିଭୁ ପାହାନ୍ତା ସେଇ;
ସାବାସ୍ ଖାନସାମା !—

ଶୁଣୁଚ ତ ?
ତୁମେ ଥିଲ, ତୁମେ କି ନ ଥିଲ !
ମୁଁ ଥିଲି ନିଶ୍ଚୟ ମୋ ରୁମାଲ ଭିତରେ ।
ଭାଜିନି ବଂଗ୍‌ଲୋ, ନାଃ ! ଧସିନି କାଛଟା !
ଛୁଟିଲ, ଛୁଟିଲ ତୁମେ !
ଛାଟିପିଟି ହୋଇ ଖାଲି ଅସରପା ଗୋଟାଏ !
ଆଗୋ ଶୀକାରିଣୀ ମୋର !...ଆଗୋ ମୋ ଶୀକାର !
କେତେ କେତେ ମନ୍ୱନ୍ତର ଟପିଲ କେମିତି ?
ଛୁଟିଲ ନିଶ୍ଚଳ ତୁମେ,
ଏକରୁଁ ସେକର, କଣରୁ କଣକୁ !
ଟପ୍ ଟପ୍ ଆଙ୍ଗୁଳି ଯେ ଟେବୁଲ ଉପରେ !!

—ହାଆ ଲୋ ହାଆ,
ସଜ୍‌ନି ମୋର ! ସଜ୍‌ନି ଆଲୋ !
ଆକାଶ ହେଲୁ ପାର୍ ଲୋ ସତେ,
ଦରିଆ ନୁହେଁ, ପାହାଡ଼ ନୁହେଁ,
ବତାସ୍ ହେଲୁ ପାର୍ !

ମହୁଲ୍ ସୁରେ ଗରଲ୍ ଧାର ଧାରୁଲୋ ସତ !
ଶୂନ୍‌ରେ ଶୂନ୍ ସାର୍ !
ମନିଷ୍ ବେଇମାନ୍‌ଲୋ ଆଜି
କାହାର ପାଖେ ପୀରତି ଅଭିମାନ୍ !
ମାଦଲ ସୁରେ ମରମ ସରିମାନ୍ ରେ ଧନି !
ମନିଷ ବେଇମାନ୍ !

ଧୂଆଁର ପିଣ୍ଡୁଳାଟାଏ,
ଗଡ଼ିଲା, ଗଡ଼ିଲା ଖାଲି,
ଖୋଜି ହେଲା ଜହ୍ନର ବିନ୍ଦୁଟି !
ଝୁରୁ ଝୁରୁ ଚୂନରେ ଚିତା
ସତ୍ ସତ୍ ଝିଟ୍‌ପିଟି !
କେନ୍ଦରା କନ୍ଦିରୁ କାଇଁ
ବିଟ୍‌ନିକ୍ ଭିଯୋଲା ଯାଏ—

—ଶିମ୍‌ଲି ଫୁଲେ,
ଝଲ୍‌ସେ ଲହୁଗାର୍
ମାଟିର ବୁକେ ଆକାଶ ଅଭିସାର୍ ରେ ଆଜି
ଆକାଶ ବୁକେ
ମାଟିର ହାହାକାର୍ !

ସିନ୍ଦୂର ମଥାଏ—ବଂଗ୍‌ଲୋ ଆଇନାରେ;
ଉଇଁଲା ସୂର୍ଯ୍ୟଟା !
ଖୁଡ୍‌ଖାଡ୍ ନାଇଁ କିଛି
ବନ୍ଦ ହେଲା ଖିଡ଼ିକି କବାଟ !
ଥପ ଥପ୍
ଫୁଲର ପାପୁଲି ପରେ
ତରଲା ମହମ୍
ରାତିରୁ ଟୋପାଏ !

ପଡୁନି ମନେ କି ?
ଆଖିକି ମୁଜିଲା ଆଖି,
ହାତେ ହାତ୍ !
ତା'ପରେ ହଠାତ୍ !
ଲାଲ ଲାଲ ରେଶମୀ ହସରେ
ଘିର୍ ଘିର୍ ଗିଲାସ୍‌ଟାଏ
ଗିଲାସ ପଛରେ
ଡାଲ୍‌ଖାଇ ଖୋସାର !
ବୁଲୁଚି, ବୁଲେ ତ ?
ଡାର୍ଲିଙ୍ଗ୍ !
ଝୁମୁରୁଝୁମ୍ ?

—ଟାଉଏଲ୍ କାଇଁ ମୋ !
ରଃ ଟିକେ !
ଖେଳିଦିଏ
'କଣ୍ଟ୍ରାକ୍ଟ ବ୍ରିଜ୍‌ଟା' !
ପୋଛିଦିଏ
ଅମଳୀ ମୁହଁ ମୋ !



# ସମାଧିଶଯ୍ୟା ପାଶେ

ଆଜି, ଏ ତୁମରି ସମାଧିଶଯ୍ୟା ପାଶେ,
ଅଟଳ ଦମ୍ଭେ, କଂପିତ ଗୁରୁ ଶ୍ୱାସେ,
ବିଷାଦେ ନମ୍ର,
ଶପଥ କରୁଚୁ ସାଥି!
ଲଢ଼ିବୁ ତୁମରି ସ୍ମୃତି-ଇଙ୍ଗିତେ ମାତି—
ବିଶ୍ୱ ଜନର ସୁଖସଂପଦ ପାଇଁ,
ମୁକ୍ତିର ଗୀତ ଗାଇ!
ବଦ୍ଧ ମୁଠାରେ ପୂରାଇ ରକ୍ତ-ତାତି
ଶପଥ କରୁଚ ସାଥି!

ଶପଥ କରୁଚୁ,
ଅନ୍ତିମ ରୋଷେ ଥରି,
ହେ ନବ ଯୁଗର ରକ୍ତ-କରବୀ-କଳି!
ବିଶ୍ୱେ ତୁମର ପ୍ରିୟତମେ ଦେଇ ଦଳି
ମୃତ୍ୟୁ ସମରେ ନୀରବେ ପଡ଼ିଲ ଢଳି!
ଦଳିତ ଜନର ସ୍ୱାର୍ଥ ସାଧନ ଆଶେ,
ସ୍ୱାଧୀନ ଜାତିର ସମ୍ମାନ ଟେକ ଧରି,
ପୋତିଲ ପତାକା ଜନତା ଚିତ୍ତ ପାଶେ,
—ଶପଥ କରୁଚୁ ଥରି,
ତୁମରି ଜନନୀ-ଜାୟା-କ୍ରନ୍ଦନ-ପ୍ରାସେ
ଅନ୍ତର ତଟ ଭରି!

ବିଦାୟ ବନ୍ଧୁ!
ଗୌରବମୟ ପଥ
ବରିନେଲ ତୁମେ
ମୁକ୍ତି-ସ୍ୱପନାହତ!

ଅକାତରେ ଦେଲ,
ଦେଲ ଆପଣାରେ ଦାନ !
ସମୟ ଏହାର କଳନା କରିବ ଜାଣ !
ରଚି ବନ୍ଦନା ଗାନ,
ଜୀବନ ସ୍ତମ୍ଭ
ଉଭୋଳି ମହୀୟାନ୍;
ହେ ବୀର ବିଜୟି !
ନିଃସ୍ୱର ଅଭିମାନ !

ବନ୍ଧୁ !
ସମୟ ହେଲାଣି ନିକଟତର,
ପରାଜୟ ଲଭେ ସ୍ୱେଚ୍ଛାଚାରୀର ଦଳ !
ଟଳେ ତା' ଆସନ,
ଖସୁଚି ହିଂସ୍ରବଳ,
ମହାନ୍ ମୁକ୍ତ ଜନତା କ୍ଷିପ୍ତ, ଜ୍ୱଳି,
ଅତ୍ୟାଚାରର ଭେଦି
ପ୍ରସ୍ତର ତଳ
ଉଠୁଚି ନବୀନ ଶସ୍ୟ ସମାନ ଝଳି !

ବିଦାୟ ବନ୍ଧୁ !
ତୁମରି ଆତ୍ମଦାନ
କୋଟିଏ କଣ୍ଠେ ଭରିଚି ରୁଦ୍ର ଗାନ !—
"ପ୍ରତିଶୋଧ ଘେନ,
ନିର୍ଦ୍ଦୟ କର ପ୍ରାଣ !!
ବ୍ୟର୍ଥ ନୋହୁ ରେ
ଆଦ୍ୟର ଅଭିଯାନ !"

ଶପଥ କରୁଚୁ, ସାଥି !
ତୁମରି ରକ୍ତେ ରଞ୍ଜିତ ଧ୍ୱଜାଟିରେ
ଆନମି ନିମେଷେ
ସମାଧି-ଶଯ୍ୟା-ଶିରେ,
ଶପଥ କରୁଚୁ ସାଥି !

/ ୧୧୪ /

ଉଠାଇ · ଉଚ୍ଚେ
                    ଦେବୁ ରେ ବକ୍ଷ ପାତି,
ଜାଗ୍ରତ କରି
ମୁକ୍ତ କରିବୁ ଧୀରେ,
                    ବିଶ୍ୱର ଯେତେ ଦଳିତ ମଣିଷ ଜାତି ।

ବିଦାୟ ! ବିଦାୟ !—
                    ଶପଥ କରୁଚୁ ସାଥ୍‌ ।
ତୁମରି ରକ୍ତେ ରକ୍ତ ମିଶାଇ ଆମ
ପୋଛିଦେବୁ ଆରେ !
ବନ୍ଧନ ଅମା ରାତି ।।



# ଛେଉଣ୍ଡ ମେଘର ଛୁଆ

ଆଙ୍ଗୁଠି ଚୁଚୁମି ଯେବେ,
ଅକାଳେ ଗୋଧୂଳି-ଗୋଳା ଆଙ୍ଗୁଠି ଚୁଚୁମି
ନକ୍ ନକ୍
ଗଡୁଥାଏ, ଛେଉଣ୍ଡ ମେଘର ଛୁଆ—
ଚୈତ୍ର ଶେଷରେ !

ତୁମେ ସବୁ ଫୁଟି ଉଠ !—
ଗୋଟି ଗୋଟି ଫୁଟି ଉଠ,
ଦୁରେଇ ଦୁରେଇ ଟିକେ !
(ଋତୁର ସଂଗ୍ରାମ ପରେ, ଲୋହିତ ଅଙ୍ଗନେ ସତେ !)
ଗହଳିଆ ଗରିମାର ଆକାଶୀ-ଗଭାରେ ନିଜ !
ହାଲୋଳି ପକାଇ ଦିଅ,
ଅଥୟ ଥୟରେ ଝୁଲି—
ଲହୁଲି-ବୟସୀ ଆଗୋ ! (କେବେ କି ଜରତୀ ତୁମେ ?)
ପୁଣି ନୂଆ କଅଁଳିଲା ଶାଳର ଠୋଲାରେ ?

ଉଷୁମ ଓଠରୁ ତୁମ ନ ଫିଟେ ମରମ କିଛି
ଦୋଦୋ ଛୁଆଁ ଚେତନାରେ ?
ଚକାମେଲି ପାରି ବସ; ଗର୍ବିଣୀଗୁଡ଼ିକ ତୁମେ !
ସେ କିଁ ଗପ ଗୁନ୍ଥି ହୁଅ !
ମହୁଲିଆ, ମହୁଲିଆ ନିଶିର ସଭାରେ ଆଗୋ !
—ମୁହଁ କାଢ଼େ ଫାଲଗୁନଟି
ମୁରଲୀବୀଥିରେ ତେଣେ !

•

ଚୁକ୍ ଚୁକ୍ ଆଙ୍ଗୁଠି ଚୁଚୁମି
ଦର ଦର ବୁଜା ଆଖି
କି ଉଦାସେ ଗଡୁଥାଏ ଛେଉଣ୍ଡ ମେଘର ଛୁଆ
ତୁମକୁ ଚାହେଁ କି ?

ତୁମେ ସବୁ ବୁଲିଯାଅ, ଈର୍ଷାରେ ଅଣେଇ ହୋଇ
ଗେହ୍ଲେଇ ବାସନା ନିଜ,
ଗୁଡ଼େଇ ହୁଅ ଲୋ ଆଗ ଧୂଳିର କପାଳେ—
ବୁଲିଯାଅ ଲୁଚିଛପି, (ଭାବି କେ ନ ଦେଖୁ, ଦେଖୁ !)
କେମିତି ଜୁଟାଅ ସାଥୀ, ଅଭାବୀ ଭାବର କାହୁଁ,
ବୁଲିଯାଅ ହଳ ହଳ ଜହ୍ନର କୂଳକୁ !

ବାଲୁବାଲୁ ଗଡୁଥାଏ ବେଓ୍ୱାରିସ୍ ଛୁଆଟା ସେ !
ନ ନିଏ ଉତାଣ ତାକୁ କାହାରି ହାଇ ବି କାହିଁ।
ନି ଦିଏ ଟୋପିଏ କ୍ଷୀର,
ତୁମରି ଭିତରୁ କେହି ଚାତକୀ, କେକୀ ବା !

କଳ କଳ, ନିଃଶବ୍ଦେ କେମିତି
ହାଉଲେ ହାଉଲେ ଚାଲି ଦେହର ଆହୁଲାମାନ,
ତୁମେ ରସକେଳି ସବୁ, ନକ୍ଷତ୍ରମାଳି ଗୋ !
ନାହା ମେଲ ଅନିସ୍ୱାର ଅପାର କାଳକୁ !
ବିକଳ ଛଇରେ ବାଜି ପଇଁଚ ପାହୁଡ଼େ—
ଚଳ ଚଳ ଲୁହ ଢ଼େଉ ପକାପକି ହୁଅ ରୁଷି,
ବୁଡ଼ି ଉଠି, ଉଠି ବୁଡ଼ି ବାସକସଜ୍ଜାରେ—
ଛକାଛକି ଡିଅଁ ପୁଣି ମନରୁ ମନକୁ;
କଥାର କାଞ୍ଚଲା ଖୋଲି !—
—ଚହଲେ ଗୋ ଶୂନ୍ୟତାର ସାଗର ସନ୍ତାଟି !

ନିଜର ଦାୟିତ୍ୱ ନିଜେ, ଛେଉଣ୍ଡ ମେଘର ଛୁଆ
ନୁହେଁ ବିତଣ୍ଡାର ସେ ତ ।
ଆକାଶୀ ହେଁସରେ ।
କେଉଁ ଛଡ଼ା ସ୍ୱପନର ହଂସର ସ୍ୱନ ଯେ ।
ନାଃ, ସେ ମିଳାଏ ନାହିଁ!
ଛଟ ଛଟ ହୁଏ, ସତ ।
ଆପଣାକୁ ଶୋଷି ଶୋଷି ଶମାଏ ସ୍ନେହର ଶୋଷ ।
ଫାନ୍ଦି ପାରେ ନାଇଁ ତିଳେ
ରଶ୍ମିର ବସନ୍ତୁ ପୋଷେ,
ମଧୁର ଭର୍ତ୍ସନାମେଳେ
ବଉଳ-ପ୍ରୀତିର ।

କାନ୍ଦି ପାରେ ନାଇଁ ସେ ତ,
ଶ୍ରାବଣଧାରାରେ କାହିଁ,
ସ୍ଫଟିକ ଝରାଇ ତା'ର
ଯୌବନ-ଜ୍ୱାଳାରେ !

ବାନ୍ଧି ପାରେ ନାଇଁ ସେ ତ,
ଆଶ୍ୱିନର ଉଡାହସ
ନିରଶ୍ରୁ ପୋଖତ ମୁହେଁ
ଅଗସ୍ତି-ବସ୍ତିରେ !

ବିଷାଦମାଧୁର୍ଯ୍ୟ ସେ କି ଜୀବନର ସୀମାନ୍ତେ ଆଜି,
ଜଡ଼ର ଉପାନ୍ତେ— ।
ହିମନ୍ତେ ଉଷାର କୋଳୁଁ
ଦୁରନ୍ତ ଛାଇଟି ଖାଲି
ଭଂଗା ଲଟେଇର ଆଉ ରଂଗା ଗୁଡ଼ିଟିର !

/ ୧୧୮ /

ତୁମେ ସବୁ ଲୋଟିଯାଅ, ପ୍ରଜ୍ଞାନ-ଆରତି ନୂଆ !
ସାମାନ୍ୟ ରସିକା ଆଗୋ, ଅନନ୍ୟ ସାଧିକା !
କି ମାୟା-ମୃଣାଳ ଚୋଷି କାରୁଣ୍ୟ-କଳରେ,
ଶାଶ୍ୱତୀ ମରାଳୀ ସାଜି, (ଟେରଲିନ୍ ଡେଣାରେ !)—
ପିଅ ଲୋ ମଳୟ ପିଅ !
ପାର୍କ୍‌ର ତୁଠରେ ଅବା ହୋଟେଲ୍ ଚୂଲିରେ କାହିଁ !

ଛୋଟବଡ଼ ଢୁଲୁଢୁଲୁ ପିକ୍‌ନିକ୍‌ଗୁଡ଼ିଏ ଆଗୋ !
ସୌର ପଡ଼ିଆରେ ନିତି—
(ନୁହଁ, ଖେଳଘର ନୁହ, ଛେଉଣ୍ଡଛୁଆର କେଉଁ !)
ଲେଖ, ଆମନ୍ତ୍ରଣ, ଲେଖ ମଙ୍ଗଳାକୃତ୍ୟର ନିଜ
ମସୃଣ ମିଳନ ଆଶେ,
ଅଶ୍ୱତ୍ଥ ପତ୍ରରେ ସବୁ—
ଦେଶୁଁ ଦେଶାନ୍ତରେ ଆଗୋ !

ମୁହଁମାଡ଼ି ଗଡୁଥାଏ ଛେଉଣ୍ଡ ମେଘର ଛୁଆ,
ଆଣ୍ଠୁଆ ଗୋପାଳ କେବେ !
କା' ଦେହ—ଅଇଁଠା ସେ କି ?
(ମୁସାଫିରଖାନା କଣେ ପତ୍ରର ଠୁଙ୍ଗାଟା !!)

ଚୁକ୍ ଚୁକ୍ ଚୁକ୍ ଚୁକ୍ ଆଙ୍ଗୁଠି ଚୁଚୁମେ ଜୀଇଁ,
ନା, ସେ ଧରେ ନା ରାହା !
ନିଜର ଖେଳରେ ନିଜେ
ଆନନ୍ଦ-ଅତିଥ୍ନୀ !
ପ୍ରଭାସତୀଥରେ କାହିଁ ବୁଡ଼ିଯା'ଲୋ ବୁଡ଼ିଯାଅ !
ଆଲୋଳି ପ୍ରଳୟେ କେତେ—
ନିମେଷମଲ୍ଲିକା ମୋର,
ତ୍ରିକାଳନାୟିକା ଆଗୋ !

ଜାଣ କି ଚୁପ୍ ଚାପ୍—
        ମୁଁ ତାକୁ ଗୋଟାଇ ନିଏ
                ସଂଜର ଜଂଜାଳେ ମୋର
ସାଲୁ ସାଲୁ, ସାଣୁ ସାଣୁ;
        କୋଟିଏ ନେଞ୍ଜରା ତଳେ
                ତୁମରି ଉଢ଼ାଳେ ?

ମୋ ଲାଗି ଫୁଟିବନି କି
        ଯୁଗୁଁ ଯୁଗାନ୍ତରେ ପୁଣି ?
ତୁମର ନେତି ସେ ସତ—
        ନୁହେଁ କି ତୁମର ମୋଅର ଯେତେ
        ଅସ୍ତିତ୍ୱ-ବାଜଣା !



# ଏ ମଇ ଦିବସ

ଆଜି ଏ ପ୍ରଭାତେ,
ଉତ୍ତୋଳି ଧ୍ୱଜା ସୁଖେ,
ମୃତ୍ୟୁ-ନୀଳିମ ନୀରବ ଆକାଶମୁଖେ
ଫୁଟାଇ ରକ୍ତ-ହାସ,
ଦଗ୍ଧ ଧରାରୁ ତୁଟାଇ ଦୁଃଖ-ପ୍ରାସ,

ଉତ୍ସବ କରୁଁ
ସମରେ ଯୋଦ୍ଧାଦଳ,
ଶତ୍ରୁର ବୁକେ ସରଜି ଗଭୀର ତ୍ରାସ !

ଉତ୍ସବ କରୁଁ
ସୁମରଣ କରି ବାରେ,
ଭରିଲା ଆଜି ଯେ ବିଶ୍ୱ ରୁଧିରଧାରେ,
ମାତୃ-ଆନନ ଚାପିଲା କେତେ ଯେ
ଶିଶୁର ଅସ୍ଥି-ଭାରେ;
ପେଷିଲା ନାରକୀ, ମୃତ୍ୟୁର ଉପଚାରେ;
ବାଢ଼ିଲା ଅସ୍ତ୍ର, ଲେପିଲା ଚିତ୍ତସାରା;
ଗଢ଼ିଲା ଲୌହ-କାରା,
ଅର୍ପିଲା ଅବିଚାରେ,
ପ୍ରଣୟୀ କରରେ ପ୍ରୀତିର ଭସ୍ମଥାଳା ।

—ଉତ୍ସବ କରୁଁ,
ସୁମରଣ କରି ତା'ରେ,
ଅନାଇ ଖଞ୍ଜ, ଅନ୍ଧ ଦୁନିଆଟାରେ
କଙ୍କାଳ ପଟୁଆରେ ।

ଉତ୍ସବ କରୁଁ
ସମରେ ଯୋଦ୍ଧାଦଳ !
ପ୍ରହାରେ ଆମର ଖସିଚି, ଖସୁଚି ଦ୍ୱରା
ଶତ ଜଂଜୀର-ବଳ !

ଉତ୍ସବ କରୁଁ
ସ୍ୱପ୍ନେ ନୟନ ମାଜି,
ଅଗ୍ରଣୀ ଆମେ ରକ୍ତବାହିନୀ, ସାଜି !
ଦୁର୍ବାର ଆମ ବଜ୍ର ପ୍ରହାର ବାଜି,
ବର୍ବର କେତେ ଦୈତ୍ୟ ପଡୁଚି ଭାଜି !
ଘାତକଦଳର ମଦ-ଗମ୍ବୁଜରାଜି
ଧୂଳିରେ ଧୂଳିରେ ଲୁଣ୍ଠିତ ହୁଏ ଆଜି !

ପଲକେ ପଲକେ ଶମୁଚି ଅଶ୍ରୁ-କୋହ,
ତୀକ୍ଷ୍ଣ ଆଲୋକେ କଟୁଚି ପଙ୍ଗୁ ମୋହ,
ଦସ୍ୟୁଦଳର ଟଳୁଚି ସିଂହାସନ
ମୁକ୍ତି-ପରଶ ଲଭୁଚି ଦୁଃଖୀଜନ ।

ସଙ୍ଗୀତ ଯେତେ ନିଭିଲା ଅଶ୍ରୁ-କୂଳେ
କମ୍ପିତ କ୍ରୋଧେ, ମଚ୍ଛିତ ଘୃଣା ତୁଲେ
ଅନ୍ତରେ ଆମ ଫୁଲେ !
ନବ ପ୍ରତିଶୋଧ ସୁରେ,
ଅନ୍ତକ ପାଶେ ପେଶି ଆତତାୟୀକୁଳେ
ହତ୍ୟାର ବିଭୀଷିକା
ଦିଏ, ପୋଛିଦିଏ, ରକ୍ତ ଆଲୋକ-ଶିଖା !

ପୃଥ୍ୱୀର ବୁକେ ସ୍ନିଗ୍ଧ ସ୍ୱରଗ ପାତି
ହସିବ ପୁଲକେ ନବୀନ ମୁକ୍ତ ଜାତି !
ଶମଶାନେ ଶୋହି ସବୁଜ ଶସ୍ୟ ଶୀଷା
ଶିଶୁ କଳରବେ ଆଣିବ ସୃଷ୍ଟି ନିଶା !

ଉତ୍ସବ କରୁଁ
ପ୍ରଭାତ ପୁଣ୍ୟ ରବି
ଚୁମୁଚି ପୁଲକେ ରକ୍ତ କେତନ ଶିର—
ନୟନୁ ଗଳଇ ଜମାଟ ଅଶ୍ରୁ ନୀର।
ଲୌହ ଆସିଚି ଦ୍ରବି !
ଉତ୍ସବ କରୁଁ ମୁକ୍ତ ଚେତନା ଲଭି
ଆମେ ନବଯୁଗ କବି !

ଉତ୍ସବ କରୁଁ ରହି,
ଶତେକ ସାଥୀର ରକ୍ତ ପରଶ ବହି;
ପ୍ରିୟତମ ଆମ ପତାକା ହସୁଚି କହି—
"ଐକ୍ୟର କରବାଳେ,
ଛିନ୍ନ କର ରେ, ଭିନ୍ନ କର ରେ ତ୍ୱରା
ବନ୍ଧନ ହାହାକାରେ।"

"ହୃଦୟ ଜବାର ରକ୍ତ ପାଖୁଡ଼ାଦଳେ
ସୀଇଁ ଦେ ପତାକା,
ସୀଇଁ ଦେ ଆବେଗଭରେ !
ନିଃସ୍ୱ ନୟନୁ କ୍ଷୁଧିତ ତାରକା ଆଣି
ନବଜୀବନର ଲେଖି ଯା' ଦୀପ୍ତ ବାଣୀ !
ଧରଣୀ ଉପରୁ କଙ୍କାଳ କର ନାଶ !
ନିଭାଅ ଘୃଣ୍ୟ ଧନିକ-ଦସ୍ୟୁ-ହାସ !

ଜନତା-ଶିବିରେ ଗୁପ୍ତ ଅରାତି-ଚର,
ରକ୍ତପିପାସୁ ହିଟ୍‌ଲର ଥରହର !
ଜୀବନ ଏଣିକି ହେବ ସୁନ୍ଦରତର—
ଉତ୍ସବ କରୁଁ ଥରେ—
ଧ୍ୱନିଉଠେ ଆମ ଉତ୍ସବ ଗୀତି
ଦଳିତ ଭଗ୍ନ ଘରେ !

ଉତ୍ସବ କରୁଁ
ଆଜି ରେ ମତ୍ତ ପ୍ରାଣେ
ଶତ-ବର୍ବର-ବିଜୟୀ ଯୋଦ୍ଧା ଆମେ !
ବଜାଇ ମୁକ୍ତି ବୀଣା
ମୃତ୍ୟୁ ମଡ଼କ ଜିଣା !!

ସ୍କନ୍ଧେ ଆମର ଜନନୀ, ଜାୟାର ଶବ,
କର୍ଣ୍ଣେ କୁହରେ ଶିଶୁର ଆର୍ତ୍ତରବ,
ବଦ୍ଧ ମୁଠାରେ ନ୍ୟାୟ-ବଂଧୁକ ଥରେ,
ବଜ୍ର ଶପଥ ଭରେ ।

ବନ୍ଦୀ ଜନତା ଭାଙ୍ଗି କାରାର ଜାଲେ
ବରିନିଏ ଆମ ରକ୍ତ ତାରକା ଭାଲେ ।
ମୁକ୍ତି ଆମୋଦେ ଚାଲଇ ବିଳସି, ହସି
ବିଶ୍ୱର ଦରବାରେ ।

ଉତ୍ସବ କରୁଁ
ପତାକା ଉର୍ଦ୍ଧ୍ୱେ ଟେକି,
ଧରଣୀ ଆକାଶେ,
ରକ୍ତ ଶପଥ ଲେଖି,—

''ପଲ୍ଲୀନଗରେ,
ଉଠା ରେ ପଲକେ ଉଠା !
ସୁଦୃଢ଼ ତୋର ବଜ୍ର-ଶପଥ ମୁଠା ୧
ଶତ୍ରୁର ପଛେ ଛୁଟା ରେ ଅଶ୍ୱ ଛୁଟା !
ଘେନି କଙ୍କାଳ ଦାବୀ,
ଯାଅ, ରଚି ଯାଅ
ରଚି ଯାଅ ଖରେ
ମୃତ୍ୟୁର ପରେ—
ମୁକ୍ତିର ମେହେରାବି !!''



/ ୧୨୪ /

## ଆମେ ଗୀତ ଗାଉ

ଆମେ ଗୀତ ଗାଉ, ତୁମେ ଚାଲିଗଲ କାହିଁ ?
ଆମେ ହସୁ ଥାଉ ତୁମେ ଖସିଗଲ ଛାଏଁ !
ତୁମ ପିରିଅଡ଼ ଘଣ୍ଟା ବାଜିଲା କେବେ
ଏ ମନ ସେ ମନ, ନ ଜାଣିଲା ପରି ଚାହେଁ !

ତୁମେ ଥିଲ, ଥିଲା ଆକାଶ ଗରୁଆ କେଡ଼େ,
ଚୁପ୍‌ଚାପ୍ କଥା, ଅନାଅନି ଥିରିଥିରି !
ତୁମେ ଚାଲିଗଲ ସମୟ ହାଲୁକା, ଏଡ଼େ !
କାଲୁଆ ଛାତିରେ ନିଃଶ୍ୱାସ କିରିକିରି !

ଆମେ ଗୀତ ଗାଉ, ଆଢ଼େଇ ଗଲ କି ତେଣୁ ?
ଉଗ୍ର ସକାଳ ଧାଏଁ, ଅମହତେ ଧାଏଁ...
ସତ୍-ସ୍ୱରାଜର ଆଶ୍ରମେ ଭେଦାଖାତା,
ସମାଜ କଣରେ ଉଡ଼ି ଉଡ଼ି ଯାଏ ବାଏଁ !

ଲଢ଼ିଥିଲ କାଲି ବେଡ଼ିକୋରଡ଼ାରେ ବରି
ଆଜି ପିଠିରୁ କି ଉତୁରି ଯାଉନି ଛାଲ ?
କାଲି ଅପାଠ ଯା', ଆଜି କି ହୋଇନି ପାଠ ?
କଟୁଆଳୀ ଆଖି ମେଲିନି ଶାଠର ଜାଲ !

ତୁମେ ଚାଲିଗଲ, ଉପରେ ରଙ୍ଗ ଢ଼େଉ,
କୁଟା ଦେବତୀ, ଯେ ପୁରୁଣା ମନ୍ତ୍ରେ ଜପା !
ତୁମ ସୁଲଳିତ ଶ୍ଳୋକର ମର୍ମବାଣୀ
ସଂପାଦନାର ଅଙ୍କରେ ହେଲା ମପା !

ବାଲୁ ବାଲୁ ଆଜି ଖଦ୍ଦଡ଼ୀ ମୁହେଁ ଲୋଭ
ଜାଠ ପୀରତିରେ ସମାଜ ଶୀର୍ଷେ ରାଧା !
ତୁମ ରସିକତା ସରଳେ ତୀବ୍ର ସତେ,
କୁଟିଳ କର୍ମେ ସର୍‌ଜିଲା ନିକି ବାଧା !

ନ୍ୟାୟର ନୀତି କି ଅନ୍ୟାୟେ ଗଲା ହଜି !
ପୁଂଜିର କୀଟ ସମତାରେ ଖାଏ ଟାଣି ।
'ସମିତି ସମାନୀ' ବେଦିକ ରତ, ତୁମେ
ଅଗ୍ରେସର ହେ ଗଲ କି ଉର୍ଦ୍ଧ୍ଵ ଆଣି !

ଆମେ ଗୀତ ଗାଉ, କୋଠାର ଉପରେ କୋଠା !
କୁଡ଼ିଆ ଭୁଷୁଡ଼େ, ଗଙ୍ଗାର ତଳେ ପୋଲ,
ସୁରସିକ ଆହେ, ଶୁଭେ ଦର୍ଦ୍ଦୁର ରବ !
ରସ-ଚର୍ଚ୍ଚାରେ କବି-ବଡ଼ିମାର ଢୋଲ !

ପିତାତରଡ଼ାର ଫୁଲରେ ଧୋବଲି ଠାଣି,
ମୁହଁଭିଡ଼ା ହସ, ହୃଦୟବଣାରେ ବାଲି !
ଡେରି ହୋଇ ବସୁଁ ସଭା-ପଙ୍ଗତେ; ଗୁରୁ !
ଚିରା ପତ୍ର ଯେ ଓଲଟି ପଡୁଚି ଖାଲି !

ରିଲିଫି ମାଗେ ତ ସ୍ନେହ-ଆତୁରିଆ ଦିନ,
ପ୍ରୀତି-କାଙ୍ଗାଳ ପଟୁଆର ଚାଲେ ବାଟେ ।
ପୋଷାକୀ କୃପାରେ ଅଫିସି ବଜାର ଭରା !
ଗୁରୁ ! ଜନସେବା ମନ୍ତ୍ରୀର ମୋହ ଚାଟେ !

ଆମେ ଗୀତ ଗାଉ, ନୂଆ ମେଲଡ଼ିର ମେରୁ !
ଅସଂସ୍କୃତେ କି ସଂସ୍କୃତ ହେଲ ଗଣା !
ପାଠ-ପାଚନର ବିରେଚକ ଥିଲ ପରା !
ବିଜ୍ଞାନ-ସୁରା ତୁମକୁ କି ଥିଲା ଜଣା !

ତୁମ କଂଗ୍ରେସୀ ନୋଟିସ ହୋଇନି ପୋଡ଼ା
ଗୁପ୍ତ ପୁଲିସ୍ ଆସିଲା କି କାହୁଁ ମାଡ଼ି
ଅଦେଖାଁ ପିଚୁଣି ନଚାଇ ଆଖିର ପାଖେ
ତଲାସି ନେଲା କି ତୁମ ବିଦ୍ୟାରେ ଝାଡ଼ି !

ଆମ ଗୀତେ ତେଣୁ ପ୍ରୀତି-ବିକ୍ଷୋଭ-ନିଆଁ !
ସମତାର ପଥେ ଢାଳି ତଣ୍ଡୁଳ ଯବ,
ଗୋଲଗାଲ ଭାଷା ସେମ୍‌ଟା ପଡୁ ହେ ପଛେ
ସତ୍ୟ ନ ହେଉ ତୁମ ସାଧନାର ଶବ !

ତୁମ ପିରିଅଡ୍ ଓଭର୍ ହୋଇଚି, ହେଉ !
ଆସି ବା ନ ଯିବ କାହା ପିରିଅଡ୍ ଚାଲି !
ଜାଗୁଥିବ କେତେ ସମାସେ ସନ୍ଧି ନୂଆ !
ଆଜିର ଗର୍ଭେ ତୁମେ ରହିବଟି କାଲି ?



# ତୁମେ ମନେ ପଡ଼

ତୁମେ ମନେପଡ଼, ତୁମେ ମନେପଡ଼
ଆମରି ସାଥୀ ହେ, ଜୀବନ-ସାଥି!
ଆଜି ଯେବେ ପ୍ରିୟ ଘନ ଅନ୍ଧାରେ
ଥରି ଥରି ନାଚେ, ଯୁଗ ବିନ୍ଧାଣି!
ଆମରି ଛାତି!

ଆଜି ଯେବେ ପ୍ରିୟ କେତେ ହିରୋସୀମା
ବିକିନୀ ପଥେ ହେ ବିକିନୀ ପଥେ,
ବିଜ୍ଞାନୀ ଚଳେ ଧୂମ୍ରଳ ସୁରେ ମରଣ ରଥେ ହେ ମରଣ ରଥେ,
ଧରାର ଜରାୟୁ ମଛି ହେ ତୁମେ,
ଫୁଟାଅ ନୀରବେ ଅଶ୍ରୁଭାତି!
ମନେପଡ଼ ତୁମେ, ଜୀବନ-ସାଥୀ!

ତୁମେ ମନେ ପଡ଼, ତୁମେ ମନେ ପଡ଼ ବନ୍ଧୁ ଆମ!
ପଞ୍ଜାବେ କାହିଁ ସିନ୍ଧୁରେ ଯେବେ
ରକ୍ତ-ବଢ଼ି;
ବ୍ରାହ୍ମଣୀ ତୁଲେ ଝୁଲି ଝୁଲି ଫୁଲେ
ମହାନଦୀ ଯେବେ ବକ୍ଷେ ଚଢ଼ି;
କେତେ ଶ୍ରମିକର ରୁଧିରେ ରୁଧିରେ
ଲେଖା ହୁଏ ନିତି ରାମର ନାମ
ତୁମେ ମନେ ପଡ଼; ବନ୍ଧୁ ଆମ!

ତୁମେ ମନେ ପଡ଼,
ତୁମେ ମନେ ପଡ଼, ମରଣ-ସାଥୀ!
ବତାସୀ ରାତିରେ,
ବେକାରୀ ଛାତିରେ
ଭୋକର କତରା-କାଖରେ ଜାକି
ଘୁରି ବୁଲେ ଯେବେ ପାଗଳିନୀ ମାଆ
ମରଣେ ଡାକି ରେ ମରଣେ ଡାକି!

ସଭା ଚତ୍ୱରେ
ମନ୍ତ୍ରଣା ପରେ-
ଆତସବାଜୀର ମଧୁର ଫାଁକି—
ପ୍ରିୟାର ପାଉଁଜ ପୋତି ଦିଏ ଯେବେ
ଶରଧା-ବାଲିର ହତାଶା ତାତି,
ତୁମେ ମନେପଡ଼, ମରମୀ ସାଥୀ !

ତୁମେ ମନେପଡ଼,
ତୁମେ ମନେ ପଡ଼, ଅଦେହୀ ଦେହୀ।
ଆଜି ଯେବେ ପ୍ରିୟ ! ଜୀର୍ଣ୍ଣ ସମାଜ ଛାଡୁନି କାତି;
କିରାନୀକୀର୍ଣ୍ଣ ରାସ୍ତାରେ ଖାଲି
ବିବୃତିମାନ ଉଠିଚି ମାତି—
କେତେ ସମାଚାରେ ମିଥ୍ୟା ବାଗୁରା—
ଅର୍ଥ ଲୋଲୁପୀ ଦେଉଛି ପାତି;
ଚଢ଼ା ଖଜଣାରେ ମନ ମାଜଣା,
ମଡ଼ାରେ ମଡ଼ାରେ ପୁଂଜି ବାଜଣା,
କାଲି ସଂଗ୍ରାମୀ ଆଜି ଯେବେ ସାଜେ ଆତ୍ମଘାତୀ
ବାର ବିଳାସିନୀ ଲାସ୍ୟ ଲେହି !
ତୁମେ ମନେ ପଡ଼
ନିର୍ଭୟ ଆହେ ସତ୍ୟ-ସ୍ନେହୀ !
ତୁମେ ମନେପଡ଼, ଅଦେହୀ ଦେହୀ !

ତୁମେ ମନେ ପଡ଼, ତୁମେ ମନେ ପଡ଼,
ଅପରାଜେୟ !
ନବଜୀବନର ଆଧେୟ ! ଧେୟ,
ଈର୍ଷା, ବିଷାଦେ କ୍ଲାନ୍ତିରେ ଯେବେ ହୃଦୟ ଥରେ;
ସଂଶୟେ ଯେବେ କର୍ମ ହୁଏରେ ଦୋଳାୟମାନ
ନିର୍ଦ୍ଦୟ ତୁମ ସ୍ନେହ-ଆଶ୍ଳେଷେ ଆଣିଦିଏ ବଳ, ଅପ୍ରମେୟ
ଆହେ ଜୀବନର ପ୍ରଳୟଗାନ !
ତୁମ ପାଶେ କହ କି' ଅଛି ଆମର
ଅଦେୟ ଦେୟ ?
ତୁମେ ମନେପଡ଼, ଅପରାଜେୟ !

ତୁମେ ମନେପଡ଼, ତୁମେ ମନେପଡ଼,
ଅଗ୍ରଯାୟୀ !
ଆଜି ଯେବେ କେତେ ପଲ୍ଲୀକୂଳେ
ହିମାଚଳ ଚୂଳେ ଊର୍ମିଶିରେ,
ଶହୀଦ ହୃଦୟ ଦୋଳୁଚି ଧୀରେ ରେ
ଦୋଳୁଚି ଧୀରେ—
ଦେହ-ଗହ୍ୱରେ ଯୀଶୁ ଉନ୍ମାଦ,
ରକ୍ତପାୟୀ !
ତୁମେ ମନେ ପଡ଼ ପ୍ରେତର କୁହାଟେ ଶକ୍ତିଦାୟୀ;
ତୁମେ ମନେପଡ଼ ଅଗ୍ରଯାୟୀ !

ତୁମେ ମନେ ପଡ଼
ତୁମରି ପତାକା-ଲହରୀ ତଳେ—
ଆଜି ଯେବେ ପ୍ରିୟ ସାମ୍ୟ ଯୁଗର ସୈନ୍ୟ ଚଳେ,
ନଈ ଶୁଖିଯାଏ,
ପାହାଡ଼ ମିଳାଏ,
ଉଇଁ ଉଇଁ ଥରେ ରକ୍ତତାରା,
ନଇଁ ନଇଁ ପଡ଼େ ଲୌହଭାରା,
ନୂଆ ସୃଜନର ଆକାଶେ ଆକାଶେ
କେତେ ନିର୍ଜିତ-ଶପଥ ବଳେ
ସଂଗ୍ରାମେ ଆମ, ଶାଶ୍ୱତ ତୁମ ବାର୍ତ୍ତା ଝଲେ !

ତୁମେ ମନେ ପଡ଼,
ତୁମରି ପତାକା-ଲହରୀ ତଳେ
ଚାଲିଚୁ ରେ ଆମେ, ଚାଲିଚୁ ଆଜି ?
ଶତେକ ଯୁଗର ଘନ ସଂକଟ,
ଯେତେ ହଳାହଳ ଜ୍ୱାଳା ଉତ୍କଟ,

ଆହ୍ୱାନେ ତୁମ ଜୀବନାଘାତେ ରେ
ପଡୁଚି ଭାଜି ରେ, ପଡୁଚି ଭାଜି,
ଚାଲିଚୁ ରେ ଆମେ ସୃଷ୍ଟି ତୁମର
ସୈନ୍ୟରାଜି,
ଚିରି ଅନ୍ଧାରେ,
ହୃଦ-ମନ୍ଦାରେ,
ସଜାଇ ତୁମର ସ୍ୱପ୍ନ-ଜାତୀ !
ମନେ ପଡ଼ ତୁମେ,
ଜୀବନ ସାଥୀ ହେ ଜୀବନ ସାଥୀ !



# ସରିନି ସମର

ସରିନି ସମର, ସରିନି ସମର, ଆରେ !
ମତ୍ତ ହୁଅ ନା ଉତ୍ସବେ ଭୁଲି ମନ !
ଆଜି ବି ଧରଣୀ ଧୋଉଚି ରକ୍ତଧାରେ
ଗୁପ୍ତ ମଡ଼କେ, ମାରୀର ସ୍ରଷ୍ଟା ଜନ !

ସରିନି ସମର, ସରିନି ସମର, ଆରେ !
ଶାନ୍ତ ହୁଅ ନା କ୍ଷୁବ୍ଧ ହୃଦୟ, ସୁଖେ !
ଆଜି ବି ଧରଣୀ ନଉଁଚି ଅଶ୍ରୁଭାରେ,
ଜୁଟିନି ଅନ୍ନ କୋଟି ନିରନ୍ନ ମୁଖେ !

ସରିନି ସମର, (ମୁକ୍ତି କା କାହିଁ ?)—ମୁକ୍ତି ଆସିଚି, ସତ !
ଲୁପ୍ତ କି କହ ଦାରୁଣ ଦୁଃଖରାଶି ?
ଆଜି ବି ସ୍ୱପ୍ନ, ମଳୟ ମୂର୍ଚ୍ଛାହତ ।
ସ୍ୱର୍ଣ୍ଣ ସଉଧୁଁ ମୃତ୍ୟୁ ଉଠୁଚି କାଶି !

ସରିନି ସମର, ବର୍ଲିନ୍ -ପୁର-ଦେଶେ
ଥରିଚି ବୋଲି ରେ ସାମ୍ୟେ ହାତୁଡ଼ିଦାଆ !
ଆଜି ବି ଜନତା ଶୃଙ୍ଖଳ-ଘେରା ବେଶେ
ବଂଧନମେଳେ ରକ୍ତେ ଲୋଡ଼ୁଚି ରାହା !

ସରିନି ସମର ପୁଂଜିର ମୋହ ଡାକେ ।
'କିଏ ଅଛ କାହିଁ ରଖ ଚର୍ଚ୍ଚିଲ କୁଳ !
ମଣିଷକୁ ହସି ମୁକ୍ତି-ଖଡ଼ଗ ପାଖେ
ଦେବାକୁ ହେବ ରେ ଆହୁରି ମୁକ୍ତିମୂଲ !

ସରିନି ସମର, ସରିନି ସମର ଆରେ !
ଭସ୍ମ-ଗହ୍ୱରୁଁ ନିଭିନି ହିଂସ୍ର-ନିଆଁ !
ସମାଜ-ଗର୍ଭେ ଦୈତ୍ୟ କୁହାଟ ମାରେ !
ଶୋଷଣଲିପ୍‌ସୁ ନୟନ ହୋଇନି ସୀଆଁ !

ଭାଙ୍ଗିଚି ବୋଲି ପହିଲି ଦୁର୍ଗମାଳା !
ଶମିନି ଜୀବନୁ ବଂଧନ-ବିଷ-ଜ୍ୱାଳା
ଦଗ୍‌ଧ କ୍ଷତର ଦାହନ ହୋଇନି ଊଣା
ସରିନି ସମର, ଶାନ୍ତ ହୁଅ ନା, ମନ !
କୃଚ୍ଛ୍ର ସାଧନା, କର ନା ଉଦ୍‌ଯାପନ !
ଜ୍ୱଳାଅ ! ଜଳାଅ !
ନ୍ୟାୟରେ ଦୀପ୍ତ ଘୃଣା !

ଚାଲରେ ! ଯେସନେ ଚାଲିଲୁ ବଜ୍ର ହାଣି
ହତ୍ୟାକାରୀର କଠିନ ମର୍ମପରେ,
ସରିନି ସମର ତୋଳରେ ରୁଦ୍ରବାଣୀ
ଆଜିର ସୁପ୍ତ ଦଳିତ, ବନ୍ଦୀ ଘରେ !



# ଗୁପ୍ତ ଗୁପ୍ତ ଟିକିଏ

ମତେ ମୁଁ ମାରିଦେଲି କିକ୍‌ଟାଏ !
ସେ କି ମିଠାଲିଆ ଔଦ୍ଧତ୍ୟରେ,
ସୁଢ଼ଳ ତୁମର ଗ୍ରୀବାଟିକୁ ଅଣେଇ ଦେଇ, ଟିକିଏ
କଣେଇ କରି ଚାହିଁଲ ବା !
ଚହ୍ନିଲନି ଆଦୌ !

ଘୋର୍ ତେଇ କହି ହେଲେ,
ହାତର ଅଙ୍ଗୁଳିଗୁଡ଼ିକ ତୁମର—
''ଜର୍ସି ବୁଣୁଚୁ ଆମେ !
ରୂପର ସୀମାନ୍ତ ରକ୍ଷା କରନ୍ତି ଯିଏ, ତାଙ୍କରି''
(ହାୟରେ ହତଭାଗା ଯୋଦ୍ଧା ସବୁ, କେବର କେଉଁଠି !)

ମୁଠୁଣିଏ ଉପରକୁ ଉଠି
ଛୁଇଁଥିବି କି ନାଇଁ ଛାତିକି ତୁମର,
ଓଲଟି ପଡ଼ିଲି (ଲାଜର କାତରତାରେ ନୁହେଁ;)
ନିଜର ଭିତରକୁ।
ଆକୁଳ ନିର୍ବିକାରତାର, ନୈବେଦ୍ୟଟିକ ତୁମର
ବୁଝିଥାନ୍ତି କେମିତି ଯେ !
(ମୁଁ ତ ଅମରତ୍ୱ ଲୋଡୁ ନ ଥିଲି, ମୋର !)

ମତେ ମୁଁ ଗଡ଼େଇ ଗଡ଼େଇ ଖେଳୁଥିଲି
ଏକା ଏକା !
ସେମିତି କିଛି ଉତ୍ତେଜନାରେ ତ ନୁହେଁ,
ନିଜର ମୋର ପାପୁଲିର ପଡ଼ିଆରେ !
(ନା, ନା, ଦେଶୀ ବିଦେଶୀ ଜ୍ୟୋତିଷୀ ନୁହେଁ ମୁଁ !)

/ ୧୩୪ /

ଗୁପ୍‌ଚୁପିଆ ନିଃଶ୍ୱାସ କେତେ ବହି ଆସୁଥିଲା
ଶୀତୁଳିଆ ଉଷୁମରେ,
(ବଉଳେଇ ଦେଇ ଆକାଶକୁ ?)
ମାଳକୁ ମାଳ ଏକଦମଛୋଟ ମୁହଁର କୋଠାରୁ !

ଲମ୍ଭି ଆସିଲ,
କେତେ କେତେ ପାହିର ଗାରକୁ ପୋଛିପାଛି ଦେଇ !
ନିଜର ମୋର ସମ୍ଭିତ୍‌ର ଛାୟା କ'ଣ ତୁମେ ?

ଓଠଟି ତୁମର ଚିରନ୍ତନ ଖୁବ୍; ନାଇଁ ?
ମୁରୁକେଇ ମୁରୁକେଇ ବସଉଥାଏ ଖସଉଥାଏ ଯେ
କେତେ କେତେ ବାଦ୍‌ଶା ଆଉ ମନ୍ତ୍ରୀଙ୍କୁ
ମନରେ ମସ୍‌ନଦ୍‌ରେ ? ସତ ନା ?
ଆଡ଼େଇ ହୋଇ ମାଡ଼ି ଯାଇଥିବି ବା କରକୁ ?
'ଇନ୍' ହେବାର ସାଧ ଥିଲା ବା କେଉଁଠି ?

ନାକର ହୁଙ୍କା ଉପରେ ତୁମର
ଥିରକିନି ନଇଁଥାଏ,
କଣ୍ଠାଳିଆ ଗିଲ ବା ! ତୋଳା ଯୋଡ଼ିକ କେମିତି !
ଭୋଗର ଅତିଶୟତାରେ ଉପାସର ବିଳାସରେ ନୁହେଁ ତ ?
ଲଜ୍ଜା ଦେଇ ପ୍ରାଣାୟାମପର ଯୋଗୀଙ୍କୁ
ନୂଆ ନୂଆ ମିଶନ୍ କି ମଠର !
ଆଉଁସୁ ନଥାଏ ତ ସ୍ୱାନିଏଲ୍-ବାସନାକୁ ସବୁ
ମାଉଁସ-କିଣା ପଇସାତକ ହିସାବ କରୁ କରୁ, ରାତିର !
ଶୁଆଉ ନ ଥାଏ ତ ନିଷ୍ପାପ ଜୀବାତ୍ମାଗୁଡ଼ିକୁ ତାଙ୍କରି—
ଫାଇଲ୍ ଉପରେ ଢୁଳେଇ ପଡ଼ି,
ଶ୍ରମିକ ଛଟେଇ କରି,
ମୋଟଉଥାନ୍ତି ଯେଉଁ ବାବୁ ତୁମର
ସୁନାର ବ୍ରୁଚ୍ ଗଢ଼େଇ ତୁମରି ପାଇଁ ?

ନିପଟ ଦୁଷ୍ଟାମିରେ ନୁହେଁ,
ଫୁଟାଣିରେ ଦକ୍ଷତାର ହୁଏତ,
ଉଡ଼ାଣିଆ ବିକ୍‌ଟାଏ ମାରିଦେଲି ଜୋର୍‌ରେ, ପୁଣି !
ବେପରୁଆ ତାଚ୍ଛିଲ୍ୟରେ ନିଶ୍ଚୟ,
ହାତ ପତେଇଲ ନାଇଁ,
ରୋକିଲ ନାଇଁ ଜମାରୁ !

ବ୍ୟାଲାନ୍‌ସ୍ ରଖୁଁ ଟଳ ଟଳ ମୁଁ
ଏଃ, ଏତିକି ତମର ମୁହଁ !

—ରେଖାନୁରେଖା କୋଣାନୁକୋଣର ଗୋଦାମ୍,
ୟୁକ୍ଲିଡ୍ କି ଆଇନଷ୍ଟାଇନ୍ କୁ ଠେଲି ଦିଏ
ପିଲାର ବସ୍ତାନିକୁ;
ଗୋଛାକୁ ଗୋଛା ତାର-ଜାଲିର ସୃଷ୍ଟି କେତେ ରଣକ୍ଷେତ୍ରର,
ଦରପୋଡ଼ା ମାଢ଼ିଟାଏ କି ଦାନ୍ତଟାଏ
ଓହଳେଇ ରଖି ନିଜଠି;
ରଂଗର ସଂଗତିକୁ ସବୁ ନେସିଦିଏ ଏମିତି
ତୂଳୀର କୋରସ୍‌ରେ ପିକାସୋର !—
ପାଲଟିଗଲା ମହୂର୍ତ୍ତକରେ
ଅଛପା କେଉଁ ଆର୍ଟ କାଗଜରୁ ଫର୍ଦ୍ଦେ !
ଅକୁହା କେଉଁ ଟେପ୍ ରେକଡ଼ିଙ୍ଗ୍‌ରୁ ଗଜେ !

ଗତିର ବୈପରୀତ୍ୟରେ ଫେରିବି ମୁଁ
ବାହାବାର ବୁମେରାଙ୍ଗ୍ ହୋଇ ତୁମର,
ଛବିର ବିଲିବିଲା ହୋଇ କପାଳରେ ?
ଭାବିଲି ତୁମେ, ଭାବିଲ ନି ବା !
ମଧୁର ଉଦ୍ମାଦନାରେ ବୁଣି ଚାଲିଲା ଜର୍ସିଟି
ତୁନୀ ତୁନୀ ଅଙ୍ଗୁଳିଗୁଡ଼ିକ, ନାଇଁ ?

ଆହା ଆହା ହା ! ଜାଣିଥିଲ କ'ଣ ତୁମେ
ଡାହାଣିଆ ଡାହାଣିଆ ଆଖିର ତାଳିରେ
କିକ୍ ପରେ କିକ୍ ମାରି ଉଡ଼ିବି ମୁଁ !

—"ଇଲେ ମାଆ ଲୋ !"—
ଅଜାଡ଼ି ହୋଇ ପଡ଼ିବ ଏକୁଟିଆ ତାଳିଟି ତୁମେ ଶେଷରେ
ଅଣଆୟତ୍ତ ହୋଇ ଭାଜିପଡ଼ିବ ଗୋଲ୍‌ପୋଷ୍ଟ୍‌ଟି
ଦଳକୁ ଦଳ, ଗୋଟିକି ଗୋଟି, ଖେଳୁଆଡ଼୍‌ର !

ଆଉ ମୁଁ ଯାଇ ଗଡୁଥିବି
ମହାକର୍ଷର ବଳୟରେ କେଉଁଠି,
ବର୍ଣ୍ଣାଳିର ବଲ୍ ମୁଁ, ନୂଆ ନୂଆ "ସୋକର୍‌ର !"

ସତ୍ୟାମ୍ମା ଖାଉଁ ଖାଉଁ ବାଲୁରିଟାଏ କିଏ
ଆଲକାତରାର ଗାଡ଼ି ପାଖରେ
ଗୋଟେଇ ନେଇଥିବ ବୁକୁରେ ତା'ର ମତେ !

ସତ କହ !
କୃତିର ଧୂର୍ତ୍ତତାରେ ତୁମର
ଏବେ ବି କ'ଣ ବାଜୁ ନ ଥିବି ମୁଁ
କେତେବେଳେ କେମିତି,
ରୁଗୁରୁଗୁ ଟିକିଏ,
ପିଞ୍ଜରାରେ ତୁମର—



# ଲେଉଟାଣି

ସଭାରେ ଥିଲା କାହାଣୀଟିଏ,
ଗଭାରେ ଥିଲା ଡାଳି !
କାହିଁକି ତମେ, ଉଜ୍ଜୟିନି !
ନିଜକୁ ଦେଲ ଢାଳି !

ଆଖିରେ ଥିଲା ଜହ୍ନ-ନିଶା,
ଶାଖିରେ ଥିଲା ଛାଇ !
କାହିଁକି ତମେ ଅଳକା ତଳୁ
ଜୀଆଇଁ ଦେଲ ଜାଇ !

ଓଠରେ ଥିଲା ଭଙ୍ଗା ଢେଉ,
ତୋଠରେ ଥିଲା ବାଲି !
କାହିଁକି ତମେ ଲେଖିଲ ବସି
ଆକାଶୀ ରୂପ ନାଲି !

ଛାତିରେ ଥିଲା ଲୁହର ଶିଖା,
ରାତିରେ ଥିଲା ସୁରା !
କାହିଁକି ତମେ ଲାଜର ସଜେ
ସାଜିଲ ଗୀତି-ଝୁରା !

ହାତରେ ଥିଲା ମଲ୍ଲୀ କଢ଼ି
ବାଟରେ ଥିଲା ଗାର !
କାହିଁକି ତମେ ବାଢ଼ିଲ, ଆଗୋ,
ବାଉଳା ବ୍ୟଥା-ଠାର !

/ ୧୩୮ /

ପାଦରେ ଥିଲା ନୂପୁର ତୂନୀ
ନାଦରେ ଥିଲା ଭାରୀ !
କାହିଁକି ତମେ କୁହେଳି ଶେଯ
କୁହୁକେ ଦେଲ ପାରି !

ଦେହରେ ପରା ଚଇତ ବନ !
ସ୍ନେହରେ ପରା ମରୁ !
କାହିଁକି ମାଗ ନିମେଷ ଆଗେ
ସରୁ ଏ ଯୁଗ, ସରୁ !
ରେ ସଖି !
ଝରୁ ଏ ଯୁଗ ଝରୁ !



# ଅଶ୍ରୁ –ଉଦ୍‌ବୋଧନ

ଶତାବ୍ଦୀର ଗାଥା, ଅତୀତର ଅନ୍ତିମ ଆଲୋକ !
ମହିମ୍ନଗୀତିର ରୋଳେ ନିରୁଦ୍ଧ କି ପ୍ରୀତିର ସ୍ୱର୍ଲୋକ !
ଘୂର୍ଣ୍ଣୀ ମେଳେ ଜୀବନର
ଜୀର୍ଣ୍ଣ ତୁମ ଜରାର ନିର୍ମୋକ,
ଖସିଲା କି, ଖସିଲା କି ?
ଖସି ଯାଉ ଖରେ !
ନବ ସ୍ୱପ୍ନ ପରେ !

ହେ ବୃଦ୍ଧ ବାଲୁତ କବି !
ଧୀରେ ଜନ୍ମ ଲଭି,
ଦରସ୍ଫୁଟ ଭାଷେ ମେଲ
ମନ୍ଥିତ କୋରକ-ବ୍ୟଥା,
ଭେଦି ତୁଚ୍ଛ ବାତୁଳତା;
ପ୍ରାଣ ଉତ୍ତରଳେ
ଦିଗ୍-ଦିଗନ୍ତରେ !

ଧରଣୀର ମର୍ମ ପରେ, ହେଇ ଦେଖ !
ବର୍ଷିଯାଏ ତୁହିନ, କରକା !
ଏ ଯୁଗର ଚକ୍ରବାଳୁଁ ନିଭି ନିଭି ଯାଏ ଯେତେ
ସୃଜନୀ ତାରକା !
ଲଲାଟୁଁ ଲଲାଟ-ପଟେ ଜ୍ୱଳି ଉଠ !
ଜ୍ୱଳ ଅବିରଳ !

ମନୀଷାର ଜ୍ୟୋତି ତୁମେ
ଅଗ୍ନିଷାର ତୀବ୍ର ହୋମାନଳ ।
ନିରନ୍ନ ନୟନ ତଳେ କାଳାଗ୍ନିର ଶିଖା
ବିଷର୍ଣ୍ଣ ଅଧର କଣେ ମୁକ୍ତି-ଆଲେଖିକା !
ଅଧିରୁ ଅଧୀରେ,
ଲୁପ୍ତ କରି ଭିକ୍ଷାଶୀରେ କୁଟୀରୁଁ କୁଟୀରେ;
ବଣିକ-ନିବାସେ,
ବିଳାସୀର ମତ୍ତ ଗିରେ
ଦୃପ୍ତ ପରିହାସେ,
ଧୂଳିରେ ଲୁଣ୍ଠିତ ଯେତେ, ରଜତେ ବିକ୍ରୀତ
ମୂର୍ଚ୍ଛିତ ମଳୟେ,
ମୁକ୍ତ କରି ପ୍ରାଣର ପ୍ରଳୟେ !

ଜ୍ୱଳିଉଠ, ଜ୍ୱଳିଉଠ ! ବିକ୍ଷାକ୍ତ ନିମେଷପାରେ
ଉନ୍ମେଷି ଏ ବସୁଧାରେ,
ହିରଣ୍ମୟ ଚେତନାର ଆରକ୍ତ ବଳୟେ !

ଭସ୍ମ ହେଉ ସକଳ ସଂଶୟ !
ମରିନି କବିତା କେବେ, ମରେ ନା ସେ, ମରେ ନା ସେ,
ସେ ଚିର, ଅକ୍ଷୟ ।
ଦୈନ୍ୟର ଆଘାତେ ଯେବେ
ବିଦଳିତ ପୁରେ ପୁରେ
ସ୍ୱପ୍ନର ପାଳିକା !
ଭ୍ରାନ୍ତିର ପ୍ରୟାସେ ଖସେ
ପ୍ରିୟଗଳୁଁ
ପ୍ରିୟାଭୁଜ ପଲ୍ଲବ-ମାଳିକା !

ଶାସକର ଖଡ଼ଗ ରୋଧେ ସତ୍ୟର ବିକାଶ ।
ଧନିକର ବାରବଧୂ କବିତା ଅକୃତି
ଦାସତ୍ୱର ଶ୍ରୁତି !
ବର୍ବରର ବୁକୁ ପରେ
ପ୍ରମାଦୁ ପ୍ରମାଦପଥେ
ପ୍ରୀତିର ବିନ୍ୟାସ ;

କ୍ଷୁଧାରେ ଜର୍ଜର କବି
ଦୁଃସ୍ଥତାରେ ବରିନିଏ ସୁଖେ
ଆପଣାରେ ବିଦ୍ରୂପି କୌତୁକେ ;
ପ୍ରାଣର ବିବକ୍ଷା ଚାପି,
ବିଳାପେ ଆଳାପି,
କପଟ ହାସ୍ୟରେ ଲୁଚି
ଗାରିମା ସମ୍ମୁଖେ ।

ଆଣ ହେ ଆଶ୍ୱାସ କବି ! ଜାଗି ଉଠ !
ଜାଗି ଉଠ ବାରେ !
ବଜ୍ରରୁ କଠିନ ରବେ ରଖ ଦାବୀ, ମୁକ୍ତ କବିତାର,
ବିନିଦ୍ର ନିଶାରେ ରଚି ସୃଷ୍ଟି-ଅଭିସାର
ନିପୀଡ଼ିତ ଚିତ୍ତ ପଥ ଧାରେ !

ଶ୍ୱାନର ଚିତ୍କାରେ ଯେବେ ଭାଜିପଡ଼େ,
ଶୈଶବଦରୋଟି !
ସବୁଜ ଶସ୍ୟର କ୍ଷେତେ, ପ୍ରଦର୍ଶନୀ ;
ତାରୁଣ୍ୟ-କରୋଟି
ଖୋଲିଦିଏ କି କୁତ୍ସିତ
ବିଜୟ ଗୌରବ !

ଚଳେ ସ୍ରୋତ, ଅବାରିତ; ମୃତ୍ୟୁ ଅଭିମୁଖେ
ହତ୍ୟାହିଁ ଉତ୍ସୁକେ !

ପୁରାଙ୍ଗନେ ଗୃଧ୍ରୀ ରଚେ ପ୍ରଣୟରୌରବ !
ପ୍ରସ୍ଫୁଟ ଗୋଲାପ ବିକେ ରୂପର ସୁରଭି;
ନିଷ୍ଠୁର ପାଷାଣେ ଝଡ଼େ ପ୍ରୀତିର ପୂରବୀ
ରକ୍ତପଡ଼େ ସ୍ରବି
ଏ ଜୀବନ ଲାଗେ ଛାୟାବାଜି !
ଯୁଗେ ଯୁଗେ ସତ୍ୟ ହୁଏ
କଙ୍କାଳର ପଟୁଆରରାଜି !

ଶୁଣ, କବି, ଆସ, ପାଶେ
ତିକ୍ତତା-ଫେନିଳ ହାସେ
ଶୁଣ, କବି, ଶୁଣ !
ଜୀବନର ଯୂପକାଠେ
ପ୍ରତ୍ୟହର ମୃତ୍ୟୁ ହାଟେ
କର ପରିଶୋଧ, କର !
ଆଗାମୀର ଲାଗି ତ୍ୱରା
ରିକ୍ତତାର ଗଣ; କବି !
ଏ ଜାତି ଋଣ !
କୁସୁମ-କୋମଳ କରେ ଆଣିଥିଲ ବହି ତୁମେ
ସୁବର୍ଣ୍ଣ, ମାଣିକ !
ଚତୁର ଲାବଣ୍ୟେ ଗୋଳି
ସୁରସେ ଉଲ୍ଲୋଳି, କବି !
ରୂପ-ରସାଣିତ !

ତାହା ସାଥେ
ଆଣି କି ନ ଥିଲ; କହ
କେତେ କେତେ ଉତ୍‌ପୀଡ଼ିତ ପ୍ରଭାତୁଁ ପ୍ରଭାତେ
ଦୁଃଖ ଶୋକ ଅଭିଘାତେ—
ହେ ଐନ୍ଦ୍ରଜାଲିକ !
କ୍ଷୁଦ୍ରତାର ମାୟା ଯେତେ, ଅନୀତି ଅନ୍ୟାୟ !
କବିତା ମୃଣାଳ-ଘାତେ ଶମିଚି କି ତାହା ଲବେ,
ପିତୃକୁଳ କରୁନି କି ଆଜି ହାୟ ହାୟ ! କବି !
ଅତି ନିଃସହାୟ !

ଉଠ କବି, ଆଣ ବେଗେ
କାବ୍ୟର ପାଥେୟ ନୂଆ ;
ଅମୃତ ପିପାସୁ ପାଶେ,
ଦଳି ପ୍ରତ୍ୟବାୟ !

ଉଦ୍ଧାର ଜୀବନ; କବି !
ଝଲିଉଠୁ କବିତାର ଦୀପ୍ତ କରବାଳ
ଛେଦି ଆତ୍ମଛଳନାର
ଅଳଂକୃତିମୟୀ ରୀତି,
ବିଘ୍ନ ମାଳ ମାଳ !

ଦୁଃଖର ହିମ୍ାଦ୍ରି-ଚୂଡ଼ା
ପ୍ରାଣର ଉତ୍ତାପେ
ପ୍ରୀତିର ଜାହ୍ନବୀ ରୂପେ
ବହିଯାଉ ଆପେ
ବହି ଯାଉ ଥରେ
ଆବେଗ ଝର୍ ଝରେ
ବକ୍ଷେ ବସୁଧାର

କେତେ କେତେ ଦୁଃସ୍ୱପ୍ନର ଜୟଗୀତି ଗାଇ
ଲୀୟମାନ କ୍ଷମତାର ସିଂହାସନେ ଚାହିଁ !
ଅରଣ୍ୟ ଅରଣ୍ୟେ ବୁଲି ତ୍ରସ୍ତ, ପଳାତକ
କେଉଁ ଦୂର ଅଧିକାର କେଳି ଗୃହ ପାଇଁ
ସ୍ନିଗ୍ଧ ପ୍ରଳାପକ ।

ଚାଲିଥିଲ ନିରୁଦ୍ଦେଶେ
କି ଆତ୍ମଗୋପନ ବେଶେ
ପୁଲକେ ବିହ୍ୱଳ ତୁମେ !
ଫେର ସେହି ପଥୁଁ, ପ୍ରିୟ !
ପାସୋର, ପାସୋର ତାହା !
—ବାସ୍ତବ ଯେ କମନୀୟ ।
କବିତାରେ କବିତାରେ ଜଳାଅ ଅନଳ ।

ଆପାତସଂଯମେ ଭୁଲି ମାୟାବୀ ନିଭୃତେ
ସାଜ ନା ବିକୃତେ !
ଦହିଦିଅ ଜୀବନର ସକଳ ବଞ୍ଚନା,
ଭରିଦିଅ ପ୍ରତିରେଣୁ ସୁନିର୍ମଳ ରତେ ।

ସେନାନୀର ସାଜ୍ରୁ ଦେହେ, ଧର ନବ ରୂପ, ଧର !
ମୃତ୍ୟୁର ଆହବେ କବି,
ଚିର ଉର୍ଦ୍ଧ୍ୱସ୍ୱଳ !

ପ୍ରତିଭାର ବିନିମୟେ ହସାଇଲ, ଭସାଇଲ,
ନିତି ନବ ନବ ସ୍ୱରେ ଯେ ରାଜ-ଅଟ୍ଟାଳି !
ପ୍ରତିରନ୍ଧ୍ରେ ବାଜେ ତାର,
ଆର୍ତ୍ତ କରତାଳି !
ମୃତବତ୍ସା ଜନନୀର,
ଧ୍ୱସ୍ତା ରମଣୀର
ଅଜାତ ଭ୍ରୁଣର କେତେ
ରତ୍ନମୟ ଆଭରଣେ ଶ୍ମଶାନ ତୀରେ,
ଅୟୁତ କବିର ଆତ୍ମା ଢଳି ପଡ଼େ, ଟଳିପଡ଼େ, ଅମୁକ୍ତ ରେଳିରେ,
ବିମର୍ଦ୍ଦିତ ଶିରେ ।

ଆତ୍ମଲୋପୀ କବିତାକୁ
ଶୋଷଣର, ଶାସନର ଏ ଯେ ପ୍ରତିଦାନ !
—ବସନ୍ତର ସ୍ୱାଗତିକା, ମୃତ୍ୟୁର ପ୍ରମାଣ,
ମୁକ୍ତି ପରିମାଣ ?

ଶୁଭେ ନା କି ଚିତ୍ତେ ତୁମ—
କହ କବି ବାରେ !
ତୁମରି ଗର୍ଭର ଶିଶୁ
ଶୋଣିତ-ବିଲିପ୍ତ ଦେହେ
ଡାକୁଚି ଯେ ଦଶଦିଶୁଁ
କ୍ଷୁବ୍ଧ ହାହାକାରେ !
ସେ କି ଆଜି ଧ୍ୱଂସ ହେବ ରାଜନ୍ୟର, ପୁଂଜିର ପ୍ରହାରେ ?
ତୁମେ କି ରହିବ ଦ୍ରଷ୍ଟା କବିତା-ସଂହାରେ ?
ରୋଷରେ ପିନଦ୍ଧ ବୁକେ,
ସ୍ନେହୋଚ୍ଛଳ ମୁଖେ,
ଆସ କବି, କାବ୍ୟେ ସେନାପତି !
ଉର୍ଦ୍ଧ୍ୱେ ଟେକି ବେଦନାର ବହ୍ନିମାନ ଛତି !
ପୂର୍ଣ୍ଣ ହେଉ ଶୂନ୍ୟତାର,
ପୂର୍ଣ୍ଣ ହେଉ ନିଃସ୍ୱତାର,
ବ୍ୟାକୁଳିତ ଭାଷା !

ପୂର୍ଣ୍ଣ ହେଉ ଜୀବନର ଶତ କ୍ଷୟକ୍ଷତି,
ପ୍ରବଞ୍ଚିତ ଆଶା !
ତୁମରି ଆହ୍ୱାନେ,
ମୁକ୍ତି-ଅଭିଯାନେ
କାବ୍ୟର କାନନୁ ଲୁଚି ହିଂସ୍ର ଆତତାୟୀ ଯେତେ
ଦୁଷ୍ଟ ଖଳମତି ।

ଜୀବନ-ଜଳଧିଜଳୁଁ ଆହରିଲ ଦିନୁଁ ଦିନ
ଯେଉଁ ଗ୍ରନ୍ଥରାଶି,
ଦେଖି କି ଦେଖିନ ତୁମେ—
ଆବୋଧ ତାହାର ସିନା
ତଣ୍ଡୁଳ ଯେ ଅଣ୍ଡାଳିଲା ଆସି
ନର୍ଦ୍ଦମାର କୀଟ ସହ ଭାସି
ଅଜ୍ଞତାରେ ମଥା ପିଟି ପଥର ପ୍ରସ୍ତରେ !
ବିଜ୍ଞାନର ବାଣୀ ତୁମ ପ୍ରାଣ-ଆହ୍ଲାଦିନୀ
ସେ ବ୍ରହ୍ମବାଦିନୀ,
ଥରେ, ଆଜି ଥରେ !
ଲୋଟିଯାଏ, ଲୋଟିଯାଏ କଲୁଷାକ୍ତ ସ୍ୱରେ ।

କାହିଁ ସଖି, କାହିଁ ସେ ପ୍ରେୟସୀ ?
ରୂପେ ଅନିନ୍ଦିତା ଯିଏ, ନିଖିଳ ବନ୍ଦିତା;
କାହିଁ ସେଇ, କାହିଁ ସେ ଶ୍ରେୟସୀ ?
ଦିଗେ ଦିଗେ ଭଗ୍ନ ସିନା ଭାବର କଳସୀ !
ସୃଜନର ମୁକ୍ତ ରାଗେ
ନାହିଁ ସେ ତ ନାହିଁ ।
ସ୍ତୁପୀକୃତ ବାଲୁକାର କାବ୍ୟର ସରାଗେ
ମୃଗ ମରୀଚିକା ଘୂରେ
ଦୂରୁଁ ଦୂରେ—
ଝାଉଁବନ ଯୌବନର
କରେ ସାଇଁ ସାଇଁ ! ଖାଲି—

ନିଷ୍ଫଳ ପୁଲକେ,
ବଂଧୁର ପାହାଡ଼ୀ ପଥେ
କପୋତୀର କାରୁଣ୍ୟ ଝଲକେ ।
ହେ କବି, ହେ ! ଦୁଃଖ ନାଇଁ,
ଦୁଃଖ ନାଇଁ ତିଳେ,
ସଚକିତେ ସମାଗତ ଏ ଯୁଗର ତୀରେ
ଆଜି ଅଶ୍ରୁ-ନୀରେ
ତୁମ ନବତାରୁଣ୍ୟର ସଂକେତ କି ମିଳେ !
ଖସିଚି ନିର୍ମୋକ ତୁମ, ଝଟିକା-ନୃତ୍ୟରେ ସତ,
ନବ ନବ ରୂପ ରୀତି ହସି ଉଠେ ଧୀରେ ?

ଜାଗିଚ କି ତାପଦଗ୍ଧ ?—ଜାଗୁଚ ସନ୍ନ୍ୟାସୀ ?
ଛିନ୍ନ ହେଉ ଯୌବନର ଯାତନା ବଂଧନ !
ଅକାଳ-ମୁମୁର୍ଷୂ ଜନ ଆକୁଳ କ୍ରନ୍ଦନ
ମୁକ୍ତିର ବିପ୍ଳବସୁରେ
ଶାନ୍ତିରେ ବିନ୍ୟାସି
ଜାଗିଚ ତ,
ଜାଗୁଚ ତ
ତତ୍ତ୍ୱ, ଅବିନାଶୀ ?



# ଅନିସା

ତୁମେ ଯେ ଆସିବ ତୂନି ତୂନି ଥିରେ
ଲୁହର ଶିଶିରେ
ଗହନ ନିଶିରେ
ଜାଣିଥିଲି ମୁଁ କି ?—ଜାଣିଥିଲି ଗୋ !

ନିଜକୁ ନଚାଇ ଛନଛନ ମନେ
ବସି ଘରକଣେ
ଦିଗହଜା ମୋର ଗୀତି-ଆଳାପନେ
କେତେ କ୍ଷଣୁ କ୍ଷଣେ
ଭାସି, ବୁଡ଼ି, ଉଠି,—
ମୋ ସବୁ ସପନ ପାଲ ସୂତାଗୁଡ଼ି
ପୁଳିନୁପୁଳିନେ,
ଟାଣୁଥିଲି କିଆଁ ?—ଟାଣୁଥିଲି ଗୋ !

—ତୁମେ ଆସିଲନି, ହଜିଗଲେ ତାରା,
ଦେଉଳ ଖୋଲରେ ଘୁମୁରିଲେ ପାରା
ସରଗେ ବିରାଗେ
ଫୁଟି ଉଠିଲି ମୁଁ
ମୋ ଦୁଃଖସୁଖରେ ଛାଏଁ ଗୋ ।

ଟେବୁଲ୍‌ର ଆରପାରିରୁ ଡାକପକାଅ ତମେ ;
'ପ୍ଲେଟ'ରେ ଠୁନ୍ କିନି ହୁଏ ଫର୍କ୍,
'ବୌଲ୍'ରେ ଛଲ୍‌କି ପଡ଼େ 'ସୁପ୍',
ପାଖଆଖରୁ କଳରୋଳର ଧୂମାଳରେ, ଦେହର;
ଧୂଳିରେ ଧୂଳିରେ ଭରି ହୋଇଯାଇଥାଏ କେତେ କାହାର ଖଳି !

ଚମକହୀନ ମନୁଷ୍ୟତାର କପାଳରେ ବାଜି ତୁମର
ହାଉଲି ହୁଏ ମୁଁ ଚୁପ୍‌ଚାପ୍ ଚୋପକାଠିଟି ବା !
କାଉଁଦିଆ ଦାକ୍ଷିଣ୍ୟର ଭ୍ରମ୍‌ରେ ।
ନିଜ ନିଜର ପରିଧିରେ ପ୍ରାଜ୍ଞ ଯେତେ, ନିରଙ୍ଗୀ
ସୁରାରେ ଢୁଲୁଢୁଲୁ ଝୁଲ୍‌ଝୁଲ୍ ସବୁ !

ଆଙ୍ଗୁଳିର ଟ୍ୟାଙ୍କ୍ ତଳେ ଦୂର୍ବାର,
ଥିରି ଥିରି ଦଳି ହୁଏ
ମୁହୁର୍ମୁହୁ ବିଦ୍ୟୁତ ସୃଜୁଁ ହୃଦୟର ଟର୍‌ବାଇନ୍,
ସ୍ତରକୁ ସ୍ତର ପୁଷର କି ଆବର୍ତ୍ତକର
ମର୍ମଖୋଳେଇ ସ୍ୱପ୍ନର ଡ୍ରେଜର !

ଆରେ ! ମୁଁ ଯେ ଜୋର୍‌ରେ ମକ୍‌ଚୁଥାଏ ସଭିଏତ୍ !

ବ୍ୟାଗ୍‌ପାଇପ୍‌ରେ ଥରିଉଠେ ରସକୁଲ୍ୟାର
ସେ କି କରୁଣ ରହଣିଆ ବାସନା,
ଯୁଗଯୁଗର ଚିନ୍ତାର ମଳ ବହି ବହି ଗାଇଦିଏ
ଐକାନ୍ତିକୀ, ଯନ୍ତ୍ରଟି ଏବେ ବି
ହରିଜନ କି ନିଗ୍ରୋର ବଧୂଟି କେଉଁଠି !

କୁହୁକିନୀର ଖଣ୍ଡୁଆଟି ଖୋଲି
ତୁମେଇ କଣ ଝୁଣ୍‌କିନି ହୁଏ ଫୁଲ୍‌ଗୁଣା ?
ପାପୁଲିରେ ମୁହଁ ପୋଛେ ମୁଁ !
ଇଃ ! ରକ୍ତ ଯେ—ଅଶବ୍ଦ ହସରେ ମୋର !

ଛାତିର କଂକ୍ରିଟ୍ ଉପରେ ଟପ୍‌ଟପ୍ କାହାଣୀଗୁଡ଼ା,
ଦୂର୍ବାଟିଏ କଅଁଳେ ନାହିଁ ଯେଉଁଠି !
ଫ୍ଲକ୍‌ସର କିଆରୀରେ ରୂପର ବିସ୍ଫୋରଣ ଏଣେ,
ସରୁ ସରୁ ସ୍ନାୟୁର ବିହରିଣୀରେ ବା !
ନା ଗୋ ନା ! ଆଖି ମୋର ବୁଲି ଯାଏ ନା, ଭୁଲି ଯାଏ ନା !

ଭୀରୁ ଭୀରୁ ସାହସରେ ପାଦ ପକାଉଁ
ଶୂନ୍ୟରେ ଟେକି ହୋଇଯାଏ ସୌରଲୋକର ପରପାରକୁ
ଧ୍ୱାନମୟୀ ବଁଶୀରେ ତୁମର ;
ଅନାଇଦିଏ, ହୃଦର ଅତଳରେ କେତେବେଳେ
ଆଲୋକର ପ୍ରତିସରଣ, ପ୍ରିଜମ୍‌ଟିଏ ତୁମେ ?

ରଙ୍ଗିନ୍ କେତେ ରାତିକୁ ଧରୁ ଧରୁ ଆମରି
ତୁମେଇ କଣ ତରଳି ଥାଅ–
ଟେଲାଏନାକୁ ବରଫ ମୋର ଗ୍ଲାସ୍‌ରେ ?
ପୃଥ୍ୱୀକି ଫୁଟେଇ ବାହାରିଥାଅ
ଆଉ ଏକ ମେରୁରେ ?



# ସହଜିୟା

ଶିଉଳିଲଗା ମୁହଁରୁ ତୁମର
ଆଖି ମୋର ଖସି ଖସିଯାଏ ଯେତେବେଳେ
ଅଥୟରେ, ଟଳ ଟଳ,
ଲାଜେଇ ହୁଏ
ଲୋକହସାର ଖାତିରରେ !

ସୁଲୁସୁଲିଆ ନିଃଶ୍ୱାସ ।
ଖୁସିବାସିଆ ଢ଼େଉଟିମାନ ଖେଳେ ଗାଲରେ ତୁମର !
ସମୟ ତ ସାମିଲ ହୋଇଥାଏ ଅଦେହୀ ଅସ୍ତିତ୍ୱରେ ;
ନାଇଁ ?

ଜହ୍ନର ମାଠେଣିରେ ଏକ ହ୍ରଦର ଚାଦର ତଳେ, କାଚର;
କଳାଘୁମର ପାଣି ।
ଛାଟିପିଟି ହୁଏ କେଇଟି ଚିତ୍‌କଣା,
କିଏ କାହାର ଭକ୍ଷ୍ୟ,
ମଗର ଆଉ ମୀନ କି ଆଲ୍‌ଜି,
ଆମରି ନା ?

ଝାଁକି ହୋଇ ଓଲଟେ ମୁଁ ପଛକୁ ;
ଆତ୍ମରକ୍ଷାର ଇଣ୍ଟୁଇଶନ୍‌ରେ ନିଶ୍ଚୟ ।
କିଏ କେବେ ଚାହିଁଚି ବା ଅକାରଣର କାରଣ ହେବ ?
କେତେ ଆତପାତୀ ନୟନ ଠେଲି ମୁଁ,
ଆପଣାକୁ ଆପେ ନିରୋଳେ ମେଲି ମୁଁ,
ଖେଳାଇ ଦେଲି ମୋ ଅରୂପ-ରସରେ
ମଳୟୁ ମଳୟେ
ତୁମରି ମରମ ଯାଏଁ ଗୋ ।

ସଜ ନଉଛାଳି ମୋର ଗୋ ?
ଲେଉଟିଲା ସେ କି ସରମେ ଉଛୁଳି
ସେ ତ କରୁଣ ଆମୋଦେ ଛୁଟିଲା
କେତେ ମନର ମାଣିକ ଲୁଟିଲା
କୁହୁକଳରବ-ବେଢ଼ିରୁ ମୁକୁଳି
ଛିଡ଼ାରେ ଅଛିଡ଼ା ଲୋର ଗୋ ।
ରାଗିରୁଷି ମୁଁ ଯେ ଉଷାର ଆକାଶେ;
ଶୋଣିମାର ଝାସେ,
ତୁମ ଲାଗି ତେଣୁ ଓଲଟ-ଆୟାସେ
ଲୁହାର ଆଖି ମୋ
ଶାଣିଥିଲି ମୁଁ କି ?– ଶାଣିଥିଲି ଗୋ !

ଝାଉଁଳାଇ ଯେବେ ଜୀବନତରୁ ମୋ
ମଉଳାଇ ଫୁଲଦଳ ଗୋ,
ବାଉଳାଇ ମତେ, ବିଳାସ-ମରୁରେ
ବଉଳାଇ ମାୟାଜଳ ଗୋ—
ଖରୁ ଖରେ ଯେବେ ଜଳିଲା ଅଲାଜେ
ତୁମରି ତୃଷାର ତପନ,
ଜାଳିପୋଡ଼ି ଯେତେ ସମାଜେ ସୁନେଲି ଲପନ,
ନିଅଣୀ ମୁଁ ଦେଲ ଚାହିଁ ଯେ,
କିଏ ଥିଲା ପାଶେ କାହିଁ ଯେ !
ଚମକି ପଡ଼ିଲି ପାଦମୂଳେ ଦେଖି
ଝାଳ ଟୋପିକରେ
ତୁମ କମନୀୟ ଛାଇ ଯେ,
ତୁମେ ନଇଁଥିଲ ମୋ ଓଠପୁଟରୁ ?
ମାଟିରେ ମିଶୁ ମୁଁ
ଉଲୁସି ଉଠି କି ତୁମକୁ ମୁଁ ଗୁଣି
ଛାଣିଲି କି ହସି ?—ଛାଣିଥିଲି ଗୋ !

/ ୧୫୨ /

ତୁମେ ଯେ ଆସନା, ଆସି ଆସି ନିତି,
ଭୁଲାରେ ଅଭୁଲା ଢଳାପୋଡ଼ା ରୀତି
          ତୂନି ତୂନି ଥିରେ
                    ଲୁହର ଶିଶିରେ

ଝାଳ ଟୋପିକରେ
—ପାଲଟାଣି ପ୍ରୀତି
                    ଆଣୁନି କି ଆଜି ?
                    —ଆଣିଥିଲି ଦିନେ—ଆଣିଥିଲି ଗୋ !
ତୁମେ ଯେ ଆସନା ଆସି ଆସି ନିତି,
          ଜାଣିଚି ମୁଁ ଆଗୋ ! ଜାଣିଥିଲି ଗୋ !



# ସେଇ ଠିକ୍...ଠିକ୍...

ପାଟିଟା ଯେ ଅଠାଅଠା,
ହେଇ, ସେ ବସିଲା ଆସି,
ସେଇ ଠିକ୍...ଠିକ୍...

ସେ କିରେ ଛଇଳି ଛଟା
ନୁହେଁ ତ ନାୟିକା ନୂଆ
ତାପସୀ ଜୁଡ଼ାରେ ଜଟା ?
ହେଇ, ସେ ବସିଲା ଆସି,
ସେଇ ଠିକ୍...ଠିକ୍...

ଆମେ ଥିଲୁ ଆମ ଛାଏଁ
ମୁହୂର୍ତ୍ତ ସନ୍ଦନା କରୁଁ
ଅବୁଝା ଠାରରେ, ହାଏ !
ଅସାର ସାରରେ ଯେବେ
କି ରସେ ଜକେଇ ଟିକେ ।

ଶୁଖିଲା ପାଟିଲା ତାଙ୍କୁ
ନିଜକୁ ରେକେଟି ଧରେ, ନିଜକୁ ନଖେଇ,
ଆରେ ।
କି ଝକ୍ ଝକେଇ ।
ହେଇ, ସେ ବସିଲା ଆସି,
ଚଗଲି ମେଳରେ !

ନୂଆ ନୂଆ ଚୁଗୁଲିରେ
ଟିପାଟିପି, ଚୁପ୍‌ଟାପ୍,
ହସାହସି ଚୁପ୍‌ଚାପ୍,
ପିତୁଳିଆ ଶୀତୁଳିଆ ଚୁମୁଟା ଖେଳରେ !
ହେଇ, ସେ ବସିଲା ଆସି...
...କୌତୁକେ ଉଦାସ ?

ନାଃ, ସେ କହୁନି କିଛି !
ମୋ ଆଖିର ଓଳି ତଳେ, ଓଠର ହିଡ଼ରେ,
ଖଣାମୟ ଖପୁରିରେ, ଗଳିଆ ଛାତିରେ କା'ର ?
ଦେହର ଭିଡ଼ରେ ତୁମ,
ଅମୁହାଁ ନୀଡ଼ରେ !
ନ ହଲି ନ ଝୁଲି ତିଳେ
ହେଇ, ସେ ଘାଉଁରି ହେଲା।

ସେ କିରେ ଆଜିର ଭୂତ
କାଲିର ପ୍ରେତ ବା !
କାଉଁରି କାହାଣୀ ନୁହେଁ,
ହେତୁରେ ଅହେତୁ ରେଳି ?
—ଆକାଶଟା କୁକୁ କୁକୁ
...ଅମନା ମୁହାଁସ !

ନିହାତି ସଜୀବ ସେ କି ? ସବୁଜ ଆଜୁରାଟାଏ ?
ସେଇ ଠିକ୍...ଠିକ୍... !

ଆସିନି ତ ଅକରୁଣେ ଜାଣିଶୁଣି ଅଜାଡ଼ିବ କରୁଣା ବାରିଧି,
ସଜାଡ଼ିବ ନିବୃତ୍ତିର ଅଘୋଟା ଘୋଟଣାଟିରେ
କେତେ ଝରା ରଜନୀର କି ବଜ୍ରମଲ୍ଲିକା ଗିରେ
କେତେ ଝୁରା ତାରା ଅବା,
ଉଷାର ଯୋଷାରେ କରି ଶୋଷରେ ପାରିଧି !
ନାଆଁ ଗାଆଁ ନାହିଁ ତା'ର !

ତଳାତଳ-ଚେତନାର
ଛୁଆଁରେ ଅଛୁଆଁ ଶିଖେ
ଅଣାକ୍ଷର ଅକ୍ଷରେ କି ଅଜପା ଅକ୍ଷୟ ଧାର ?
ଠିକାଇ କେବେ ନ ଠିକେ
ବିକାରୀର ଅବିକାର,
ସେ କି ଆମ ପ୍ରଳାପନୀ ଅମର୍ତ୍ତ୍ୟ ଆତୁରତାର...।

ତୁମେ କହ—'ନାଇଁ, ନାଇଁ',
ଅମାନିଆ ଅଝଟିଆ ଆମରି ଅନାତ୍ମ ଛାଇ।
ଇଲେକ୍‌ଟ୍ରିକ କାମନାର ଅନ୍ଧାର ଲୋଚାଏ,
ମୁଁ କହେ, ସେ ନୁହେଁ କି ହେ—
ଆପଣାର ଆପଣାକୁ 'ହରିଲୁଟ୍‌' କରାଇ ଯେ
ଏ ବିଶ୍ୱ ଥରାଇଦିଏ,
ଅଲେଖ ଲେଖରେ ଲିହେ,
ଆଲୁଅର ହାଲୋଳିରେ
କୀଟତ୍ୱର କୀଲାଳରେ
ତନ୍ଦ୍ରାରୁ ଗୋଛାଏ।

ଯେତେ ପୋଛ, ଯେତେ ଘଷ,
ନାଃ, ସେ ଘୁଞ୍ଚେନା କାହିଁ।
ଯେତେ ହାଣ, ଯେତେ ଚଷ,
ନାଃ, ସେ ମୁଞ୍ଚେନା ମାଟି।
କି ଶୂନ୍ୟ ହାଡ଼ର ତାଟି।
ଡୋଳାରେ ବାଟୁଳି ବାଜି
ଠକ୍ ଠକ୍ ଟାଇଁ ଟାଇଁ।
ସେ କିରେ ସଂଚିଲା କୋହ,
ରାଜକୀୟ ବିଷାଦର ସୁଚତୁର ସମାରୋହ,
ଆଗାମୀ ବିଦ୍ରୋହ ପୁଣି,
ଯିବ କି କୁହୁରେ ଝୁଣି?
ଜିଭଟାଏ ଲହ ଲହ
ସୃଜିବ ଅନର୍ଥ ସେ କି?
ହେଇ, ଲିକ୍...ଲିକ୍...

କେତେ ଝୁଣା ଗୁଗ୍‌ଗୁଳର କୁହେଳି ଭିତରେ
ଦିନ-ଉଲୁସାଣି, କେତେ ହୃଦୟ-ଭସାଣି,
ଗୋଳିଗାଳି ସ୍ୱପନର ଲୁଣିଆ ଗୀତରେ
ଜୟଜୟ ପଟୁଆରେ ଅଯଶେ ରସାଣି
ତାକୁ ଆମେ ପୋତିଥିଲୁ

ମାୟାର ପରାଗ ଶେଯେ, ନୁଖୁରା ସୋହାଗ;
କି ସୁନା ଫରୁଆ ପ୍ରାୟ !
ଖୋଲି ଯେ ନ ଖୋଲେ ତିଳେ
ମିଳି ଯେ ନ ମିଳେ, ହାୟ !
ଯୋଗରେ ବିଯୋଗ ରାୟ ।

ହିମନ୍ତ ହତାଶୁଁ ଝଗୁଁ ସାରସ ନିଃସ୍ୱନେ
ବସନ୍ତେ ବାଉଳି ହୁଏ
ତୁମ ମୋଓ ପ୍ରତୀତିର,
କେଉଁ ପାପ ପ୍ରମିତିର—
କି ବ୍ୟଥାର ବିସନାଳେ ଅଥିର ଶ୍ୱସନେ
ନିଦାଘ ଧୂମାଳେ ସେ କି ବିହୁଡ଼ା ବେହାଗ ?

ହେଇ, ଆମ ପୃଷ୍ଠଭାଗେ ।
ବିରାଗୀର ଅନୁରାଗେ—
ଯୁଗର ଓହଳେ ଲାଖି ସଂସ୍କୃତି-ଶ୍ରୁତିରେ କେତେ,
ସନ୍ୟାସ ପ୍ରଚାରେ ସେ କି ଘରୁଆ, ସଜାଗ ?

ତାକୁ ତ ଖୋଜିନୁ ଆମେ ବିଭଗ୍ନ ବେହେଲା ବୁକେ—
ଚମ୍ପୂର ଖପରା ସେ କି....ତାନ୍ତ୍ରିକ ମୁଦ୍ରା ବା
ନିର୍ବେଦ ହସରେ ଆମ ପାଂଶୁଳ ପାଠରୁ ପୋଷେ
ବିମୂର୍ତ୍ତ କଳାର ଛାଇ
ଭୁମ ଟାଙ୍କୁରାଇ ଆମ
ଦିଶେ ଢିକ୍...ଢିକ୍...

ହେଇ, ତାଳ-ବଣିଆରେ...ପୋଲାଙ୍ଗ ତୋଟାରେ
ସେ କିରେ ଖତେଇ ହୁଏ ?
ହେଇ ସେ ଖଜୁରୀ ଗଛେ, ମଶାଣି ବରରେ...
ଶିଶିର ଟୋପାରେ ତାର
ଅବାଟ ବାଟର କଢ଼େ...

କି ଭାବ-ହୋଟେଲ ଧୁଏଁ,
ହେଇ ସେ ଝାଙ୍କିବ ନିକି
ଆକାଶୀ କୋଠାରେ ପୁଣି
ସେଇ ଠିକ୍...ଠିକ୍...

ଖଡୁରେ ବାଜିଲା ଖଡୁ !
କେତେ ଥାନୀ ଦେବତାର
ସାଜିଲା ଭାଜିଲା ପୁଣି କି ମାନୀ ଗରିମା-ଗଡୁ !
ଚଟିରେ ଭିଡ଼ିଲା ଚଟି ।
ହେଇ ଦୂରେ...ହେଇ ପାଖେ...
ଝଲମଲ, ଖଲଖଲ, ସିଆଣ ପ୍ରେମର ଖଟି ।

ନାଃ, ସେ ନିଭୁନି କାଇଁ !
ବେହେଲିଆ ବାସନାର
ଶୂନ୍ୟଛାତେ ବସିଛି ଚାହିଁ ।
ବେଦରଦୀ ବିଳାସର ନୂପୁର ଲୁଚା ରେ ଲୁଚା ।
କେଜାଣି ସେ ହୁଏ ଯଦି ବେଜାର୍‌ରେ ରାଇଝାଇଁ ?
ପାଦ ତାର ଖସ୍‌ଖସ୍ ।
ସେ କିରେ ଶ୍ୱାପଦ-ସାଥୀ ?
ଘସରା କଳରେ ଖାଲି କଥା ଭସ୍‌ଭସ୍ !
ଦବି ଯେ ଦବେ ନା ଛାତି,
ଅକାଳେ କାମାଗ୍ନି ତାତି,
ପତାର ବଣରେ,
ସୁନେଲି ସାପର କାତି !
ଭୀରୁ ଭୀରୁ ତାରୁଣ୍ୟର ବିଷୟୀ କଣରେ ?
ସେ ନୁହେଁ, ନେହୁରା ନୁହେ,
ମରିଚିଆ ରୁଚିର କି ସାଆନ୍ତି ଶୁଚିର
ତାକୁଡ଼ି ଛୁଂଚୀର ଯେତେ ?
ସବାକ୍ ବୈଠିକ୍‌ଟାଏ ?
ଖାଲି ଧିକ୍...ଧିକ୍...

ଶାସନର ଶୋଷଣର, ନୂଆ ପ୍ରାଣ ତୋଷଣର
ଏ କି ଏ କାହାଳ !
ଖେଣକର ନାହାଟିଏ
ଲୁହର ମୁହାଁଣେ ଆଜି, ହସର ମୁହାଁଣେ,
ଅବିଧାନୀ ବିଧାନର ମଟର କି ଧକ୍‌ଧକ୍ ?
ଉଠାଣି ଗଡ଼ାଣି ଧାର ?
ସାବଧାନୀ ନିମେଷରେ ଅସାମ୍ୟେ ସୁଧାର ?
କଟୀ ଆମ ରକ୍‌ରକ୍—
ଲୋକାଲୋକ ଗିରିଚୂଳେ
ତୁମେ ମୁଉଁ ଠେଲାଠେଲି
କି ରୁଷା ଖୁମାଣେ !

କିଏ କା ସାହାଳ ?
ନିଆଁର ଲହଡ଼ି ଉଠେ
ବତାସୁଁ ବତାସେ !
ସେ କିରେ କବନ୍ଧଟାଏ !
ହେଇଯାଏ, ହେଇଆସେ ।
ଗୁଳିର ନିବନ୍ଧେ ଛୁଟେ ।
ସେ କି ରେ ମାଗିବ କିଛି ? ଜହ୍ନ-କଣିକାଏ ଆମ ?
କ୍ଷେତ, ଖଳା, କାରଖାନାର ଶିରାରୁ ବେଜାଏ ?
ବୀମାର ଏଜେଣ୍ଟ ଭଳି (ଆଃ, ତା ମରଣ ନାଇଁ !!)
ହେବ ଝିକ୍...ଝିକ୍...

ପଛିମାର ସୁରେ ସୁରେ ଗହମଛିଗୁଲା ଯେତେ
ଅଭାବୀର ଉଠିଆରି ?
ହାତ ପାତେ "ହୀରା" "ମୋତି" ଦୁଆରୁ ଦୁଆରେ—
ମସୁଧା ମସୁଧା ଖାଲି !
ଥରିଲା ବସୁଧା ଯେବେ
ଥପ୍ ଥପ୍ ଜୀବନଟା ଗୃପେଲି ଲୁହାରେ ।
ନିଜଳ ଧରାରେ ସେ କି ଅଚଳ ଜଳଦଟାଏ !
ତୁମ ମୋଓ ଭାବନାର ବିଧୁର ମୃଦଙ୍ଗ ବାଏ ?
ମହାକାଳ ଘଣ୍ଟାଟିର
ଜଣ୍ଟା ଟିକ୍...ଟିକ୍... !

ପାଟିଟା ଯେ ଅଠା-ଅଠା !
କାହିଁ, ରସନଈ କାହିଁ, କାହିଁ ରେ ପୀରତି ପଠା ?
ତାକୁ ତ ତୋଳିଲୁ ଆମେ ରୁଧିର ହ୍ରଦରୁ !
ସେ କିଆଁ ବସିଛି ଆସି
ହେଇ, ସେ ବୁଲିଲା କାଶି ।
ସେ କିରେ ବେସୁରା କାହା ସଂବେଦ ପଦରୁ,
ଗାଏ କି ଆମକୁ ଗାଏ,
ହେଇ ରେ ଚମକି ଚାହେଁ

ଧାଆଁରେ ସବେଗେ ଧାଆଁ !
ତା ତୋଟି ଚିପିବ, ଧାଆଁ !
ସେ କିରେ
ମେଲିଲା ଆଁ ଆଁ ।

ଇଃ, କି କରୁଣ ଆରେ !
ଚିପିଲୁ ଯେ ତୋଟି ଆମ—
ଆଃ, କି ଆରାମ ପୁଣି !
ସେ କିରେ 'ହା—ରାମ, ରାମ'
ସେଇ ଠିକ୍...ଠିକ୍... ?



| ୧୬୨ |

# ବେତାରୀ ସେତାର

ଆଉ କଣ ଡାକିବେନି,
କୁଆଁ କୁଆଁ ଡାକିବେନି—
ଆତୁରା କଢ଼ିଏ ?

ଆଉ କଣ ଗାଇବେନି,
ତୁନି ତୁନି ଗାଇବେନି
ଚଢ଼େଇର ଛାଇସବୁ,—
ଚଗଲା ଚଗଲି ଯେତେ ବଗୁଲା ବଗୁଲି,
ମଗ୍ନ ଚେତନାର ?

ଆଉ କଣ ଡେଇଁ ଡେଇଁ
ଆଲୁଅର ଶାଖାରୁ ଶାଖାରେ—
ଖେଳିବେନି
ଗୁଳ୍ଗୁଳିଆ ଗୁମାନୀ ଗୁଣ୍ଡୁଚି ଯେତେ
ଦିନାନ୍ତ-କପୋଳେ ?
ତିମିରେ ପ୍ରଗଳ୍ଭ କରି—

(୨)

ଏ ଧରାରୁ ମାଆ ଯେତେ ଲୋପ ହେଲେ ସତେ ?
ହେ ସୀତା, ଯଶୋଦା, ଉମା, ହେ ମେରି, ଗ୍ରାହିକା ।
ମର୍ତ୍ତ୍ୟର ଅପ୍ସରା ହେଲେ, ମେନକା, ଉର୍ବଶୀ ଖାଲି—
ଚତ୍ୱର କାରଣ ହେଲେ ଯନ୍ତ୍ରର ସୋଫାରୁଁ ଆସି
ପ୍ରମତ୍ତ ପ୍ରୀତିର ?
ଯାନ୍ତ୍ରିକା ଯାତନା ହେଲେ—
ଅମୃତ ମମତ୍ୱ-ପୁରେ ଅରତି ଆଭୋଗ ।

ହେ ଯୁଗଜଞ୍ଜାଳ, ବାପା !
ହେ ଯୀଶୁ, ଗୌତମ, ଜୀନ,
କି କ୍ୱଦ୍ୱ୍ୱ କାହାଳ ହେଲ ନିଷ୍କାମ କାମର ?
କି ମହାମୁଦ୍ରାରେ ଅବା;
ସାଂଖ୍ୟର ଅକୃତି ହେଲ—
ଉଚ୍ଛୃଙ୍ଖଳ ବେଦନାର ନିଶ୍ଚଳ ବିକ୍ଷେପ ?
ସକ୍ରିୟ ଧ୍ୟାନର ବୁକେ ପ୍ରଲୁବ୍ଧ କୌତୁକ ?

ଯାଏ ରେ ବଦଳିଯାଏ—
ହୃଦ୍‌ତନ୍ତ୍ରୀ ବଦଳିଯାଏ ; କାବ୍ୟରେ ବିଷାଦ କାହିଁ ?
ଝୁପ୍ ଝୁପ୍ ଲୁହରେ ?

(୩)

ଅରତି-ପିଙ୍ଗୁଳା ହସେ
ବୟସ ବେଙ୍ଗୁଳି ଦେଇ
ମୃତ୍ୟୁର ଖଳାରେ,
ତୁମେ କି ବୁଲୁଚ ଏବେ, ଅନନ୍ୟ-ସୌଜନ୍ୟେ—
କାଚର ନଳୀରେ ସ୍ୱଚ୍ଛ, ସୂକ୍ଷ୍ମରେ ଅସୂକ୍ଷ୍ମ,
ପ୍ରୋଟନ୍ କି ପଜିଟ୍ରନ୍, ଆମିନୋ ଆସିଡ୍ ?

ସଙ୍କର ବସନ୍ତ ଉଡ଼େ ରଙ୍ଗର ଶ୍ରାବଣେ !!
ପଣ୍ୟର ବେଲାରେ ବିକା ପ୍ରାଣର ପୁଡ଼ିଆ ?
ସୁରମ୍ୟ ଟ୍ୟୁବ୍‌ରେ ଆମେ,
ଆବଦ୍ଧ ଆଗାମୀ ସବୁ,
ବିସ୍ଫୋଟ ତୁମରି ?

(୪)

ଅଶ୍ରୁତି ଶ୍ରୁତିରେ ହେଇ,
ବାଢ଼ିଲି ଚାନ୍ଦକୁ ମୋର,
ଚାନ୍ଦି-ମାଛ ଚମତ୍କାର !
ବାସନା କେମିତି ?

କାହିଁ ସେ ସୂର୍ଯ୍ୟଟା କାହିଁ—
ଆପଲ୍ ସୂର୍ଯ୍ୟଟା ?
କାଲି ଥିଲା ଅଞ୍ଜନାର ସୁତର ଆହାର,
ଆଜି ସେ ଫ୍ରିଜ୍‌ରେ !
ହିମାଳ ପୁଡ଼ିଙ୍ଗ୍ କିଛି, ଅସ୍ୱପ୍ନ ବେଳାଏ ?

ଏ କି ଏ ମେଲୋଡ଼ି, ଆଃ !
"ଆସ ଲୋ, ଗଢ଼ିବା ଆସ !
ଦେହରେ ହଜାଇ ଦେହ" !
ଶୂନ୍ୟର ଶେଯରେ ଏ ଯେ—
ପ୍ରଦୀପ୍ତ ବିରାଗ !

କିଏ ସେ ହାଣୁଚି, ହାଣୁ—
ବିକ୍ଷଣ୍ଣ ଚାହାଣି ପଛେ,
ଆମେ କି ନୋହୁଁ ଲୋ, ନୋହୁଁ ?
ନିଜର ଅନ୍ତରେ ଖୋଜୁଁ
ନିଜର ସନ୍ତୃଷ୍ଟ ଲୀଳା—
ଓଠୁଁ ଓଠେ କୁଆଁ କୁଆଁ
କଢ଼ିର କାକୁତିମାନ—
ଇମନ୍ କଲ୍ୟାଣ୍ !!

ବନ୍ଦ କର ପ୍ରଳାପରେ !
ଅଣାକ୍ଷର ସାଧନାର ଅଘୋରୀ ବିଳାସ-ବେଣୁ
ସରବ, ସରବ ଆଜି !!
ଖେଳିବେନି, ଖେଳିବେନି ଗୁମାନୀ ଗୁଣ୍ଡ୍‌ଚି ଆଉ,
ରେ ମାଆ, ଅପରାପରା ।
ହେ ବାପା ଅସ୍ଥାୟୀ ।
ହାୟ ହାୟ—
ଆମେ ଯେ ରକ୍ତଜ ତୁମ
ବେତାରୀ ସେତାର ।



/ ୧୬୬ /

# ସେ ପିଢ଼ାକୁ ଯାଏ ଉଡ଼ି–

''ଏ ପିଢ଼ା କାଉ ମୋ ସେ ପିଢ଼ାକୁ ଯାଏ ଉଡ଼ି,
ତା' ପଛେ କିଆଁଲୋ ଏ ମନ ଗୋଡ଼େଇଯାଏ ?
ମନ ନିଆଁଲଗା ଆଖି ଖୁଜୁବୁଜୁ କିଆଁ,
ଗଲା କାହାଣୀ କି ଆଇଲା କଥାକୁ ପାଏ ?

''ଆଇଲା କଥାରେ କି ରସ-ଲହଡ଼ି, ମହୁ ।
ଅତୁଠଡୁଠରେ ହୃଦୟପଖଲା ଖେଳ;
ଆକାଶବୁକୁରେ ବିମାନ-ଭିତରେ ଲୀଳା,
ଦରିଆବାଲିରେ କି ମନ-ଉଝୁଲା ମେଳ ।

''ଚୂନି ଚୂନି କିଆଁ ବନାଇ ବସିଲୁ ଦିନ ?
ଗହନ ରାତିରେ ସକାଳ-ଲୁହର ତରା ।
ତାହୁଟି ବୋହୁଟି ଆପଣା ରୂପର ଚୂଲି,
ଲୁହରେ ହସରେ ଫୁଲି–
–ପୋଡ଼ାମୁହିଁ, ତୁ କି ହେବୁ ଲୋ ମହତ ହରା ।

''ମହତ କି ନୁହେଁ 'ହାଟରେ ବାଟରେ ଆଖିରେ ଆଉଟା
ହସ',
ଥୋଇଲୁ ଗୋଳି ତ ଦେହର ଲହୁଣିଟିକି ।
ଯୂଇ ପାଖୁଡ଼ାରେ ନିକୁନା ନଖର ମଳି,
ସାଉଁଳା କେଶେ ଯେ ମାଖୁନା ମନର ନିଖ ।

''କେତେ କାମନାର କଣ୍ଟାଫିରିକି, ଆଗୋ ।
ତାହା ଲାଗି କିଆଁ ଝୁରି ହେଉଥିବୁ କହ ?
ଅକୁହା କଥାରେ କେବେ କି ଫୁଟିଚି ଗୀତ ,
କୋହଲା କାକରେ ଶୁଖିଚି ଦୁଖର ଦହ ?

''ଦେଏ ଲୋ ଉଜେଇଁ,
ଓଷା ବରତ ତୋ' ଦେଏ ଲୋ ଉଜେଇଁ ଦେଏ,
ସପନ-ଖଳିରେ ଅଦେହୀ ପୀରତି ପିଠା;
ଚୋବେଇ ମରୁଚି ବାଉଁଶ କରଡ଼ି କାଳ,
କଇଁର ନାଡ଼େ ଯେ ଜଡ଼ ସୋହାଗର ଛିଟା ।

''ଏ ପିଢ଼ା କାଉ ତ ସେ ପିଢ଼ାକୁ ଗଲା ଉଡ଼ି,
ସେ ପିଢ଼ାରେ ପରା ନାଉଫୁଲ ଦାଉ ଦାଉ;
ଆଉ କାହିଁପାଇଁ ସରମ-ଫରୁଆ, ମାଆ ?
ନେଇଗଲା ଯେବେ ନେଇ ନିଉଛୁଣା କାଉ ।

''ଡରିଥରି ସତ, ସାଇତିଥିଲି ମୁଁ ତାକୁ,
ପଣତ ଉହାଡ଼େ ଜଳିଲା ସଳିତା ଖିଏ;
ନେଇଗଲା ଯେବେ ଏଡ଼ିକି ବାଦୋଇ କାହୁଁ,
ଆଉ କା ଜୀବନ ଜାଳିଦେବ ସିନା ସିଏ ।''

ଭୁଟୁଭୁଟୁ ବୋହୁ, ମଟର ଛୁଟିଚି କାହିଁ
ଘାଟିରୁ ଘାଟିକୁ, ଝାଟିରେ ଲାଗିଛି ନିଆଁ,
କି ଭୋକ-ଧାସରେ କଳା ପଡ଼ିଆସେ ଓଠ,
ସାଇପଡ଼ିଶାର ଟାପରା ଶୁଭୁଚି ଦୂରୁଁ,
ଉଠୁଚି ବସୁଚି ଝୁଲି ଝୁଲି ବୋହୂ ଝିଆ,
ଓହ୍ଲାଇ ପକା, ଗିଲଟି ପାହୁଡ଼, ଗୋଠ ।

''କିଣିଲା ଧନ ମୋ, କଳରେ କବ୍‌ଜା କାହିଁ ।
ଆଉ କା କୋଳରେ ନୁଆଁଏ ଉଷୁମ ମଥା;
ଓଠରେ ମୋର ଲୋ ଝଟକାଇ ଦେଇ ନାଳି—
ମୁଁ କିଆଁ ହେବିନି କେତେ କା ମରମ ବ୍ୟଥା ?''

ମଟର ଗଡ଼ୁଚି, ମଲା କି ଗାଡ଼ରେ ପଶେ—
ଏ ପିଢ଼ା କାଉ ତ ସେ ପିଢ଼ାକୁ ଯାଏ ଉଡ଼ି,
ନାହିଁ ତ 'ବୋହୂର' ଦେହର ଚିହ୍ନ ନାହିଁ ।

ସେ ଘର କଣେ କି ରୁଣୁଝୁଣୁ ହୁଏ ଚୁଡ଼ି !!!



# ଆକାଶୀ ତୋଟାରେ

କେଜାଣି କେତେ ଯେ ବାର୍ଣ୍ଣିସ୍-ବୋଳା,
ମୁହଁର ମଲାଟ ତଳେ—
ଆଜି କି ତୁମର କଳା-ଘୁମୁରିଆ
ସ୍ନେହ-ଗୁମୁରିଆ
ଖଳରେ ଅଖଳା;
ଚଳରେ ଅଚଳା
ହସରୁ ଟୋପାଏ ଝଳେ ?

—ଝଳେ ଛପି ଛପି,
ନୂଆ ନୂଆ କେତେ ନର-ଶ୍ୱାପଦର
ଘନ ବଚନିକା ଚିରି
କଳ୍ପନା ରସେ
ଜଲପି ଜଲପି
ଚମରେ ହାଡ଼ରେ ବହି ଝିରି ଝିରି,
ସରଜାଇ କେତେ, ଅରଜାଇ କେତେ
ନୂଆ ସାଧନାର ନୂଆ ସ୍ୱପନର ଶୀରି ।

—ବଡ଼ିମାର ସହ ବଡ଼ିମା ବଢ଼ାଇ
ଆଗାମୀର କେତେ ମୂରତି ଗଢ଼ାଇ
କେତେ ଇତିହାସ-ମୁଗୁନି ମରମ କାଟି
ଝଳେ, ଅବିରଳ ପ୍ରୀତିର ଶୀକର
କେତେ ବ୍ୟଥିତର, କେତେ ମଥିତର
ଉଷ୍ଣ ପତ୍ତାରେ ଛାଟି ।—
ପାରିହୋଇ ଯେତେ ଦଶମ ଦଶାର ଘାଟି !

ସହକାର-ହୀନ ଆକାଶୀ ତୋଟାରେ
ତୁମେ କି ରହିଚ ଠିଆ ?
ଅଚେତ ମନରେ ଦେଉନ ଚମକ-ଚିଆଁ ?
କଳରତ ,ଯେତେ ଶାସନୀ-କୋଠାରେ ।
ନୁହେଁ ବାଗ୍‌ଦେବୀ ପ୍ରଜ୍ଞାଜନନୀ— !
ଖାଲି କୁରତିରେ ଅକବି କବିର ପ୍ରିୟା !

ତୁମେ କି ଦେଖୁନ
କଳା-ପାଇକାରି
ଅରସ ରେଶନେ ଫୁଲା ଫେଶନିଆ ଛଇ ।
କାହା ଦିନ ମରେ ଖଟି ଅସୁମାରି,
କାହା ଶିରେ ଉଡ଼େ ଖୁସିର ପାଖୁଡ଼ା,
କାହା ହାତୁଁ ଖସେ ନିମେଷ-ଜୀଆଁର ଖଇ !

ଚକ ଚକ କେତେ କୋହଳା ଆଖିର
ଦୋହଲା କାହାଣୀ ଟଳେ !
ଠେକ ଦେଇ ଟିକେ
ଅଛି କି ତୁମରି ମୁଠା ?
ଅନୀତିର ସହ ଆପୋଷୀ ରୀତିରେ
ପୋଷାକୀ ପ୍ରୀତିରେ
ସତକୁ ନକରି ଝୁଟା ?

ଜପି ଅଜପାରେ—
ଛପି ଅଛପାରେ
ଆପଣାକୁ ଥାପି ସ୍ମୃତିର ସେପାରେ—
ତୁମେ କି କହୁନ ଧୀରେ
''ବିପ୍ଳବ ଚଳେ ପ୍ରାଣରୁ ପ୍ରାଣରେ,
ପ୍ରୀତି ଭାବନାରେ—
ମୁଖରାଇ ନିଶି
'ମୂକ' ସାଧାନାରେ—
ଅଦେଖା ନୟନ ନୀରେ ।



# ଯୁଗର ପ୍ରୟାସ ହେ !

ଗୋଟିଏ ଧାରା ତୁମେ
ଦୁଇଟି ଧାରା ମିଶି—
ଗାନ୍ଧୀ-ଲେନିନ୍‌ର
ପ୍ରାଚୀର ସୁରେ ସୁରେ,—
ପ୍ରତୀଚୀ-ପ୍ରତୀତିରେ ।

ଶୁଭ୍ର ସାଧନାରେ,
ଲୋହିତ ଆବେଶ କି ?
ଯୁଗର ପ୍ରୟାସ ହେ !
ଆଗାମୀ ସୃଜନର
ଆୟାସ-ପ୍ରମିତିରେ ?

ଅଙ୍ଗୀ ବହି ତୁମ
ତୁମରି ନାମ ଧରି,
ସାଜିଲେ କିଏ କେତେ
ଯାତ୍ରାଦଳ-ରାଜା,

ସଙ୍ଗୀ ଶୋଷକର,
ମୃତ୍ୟୁ-ପୋଷକର,
ରାଜିଲେ ବଜାଇ ଯେ
ପୁଂଜି-ତୋଷୀ ବାଜା ।

ଭାଜି କି ଭାଜିଲେଣି... ?
ଆଜି କି ତୁମେ ହସି
ନୂତନ ବିପ୍ଳବେ
ଚାଲିବ ନାହିଁ ସାଥେ—
ଜନତା-ହୃଦ ମାଗି
ଦୀପ୍ତ ଚେତନାରେ,
ଶାନ୍ତି-କପୋତରେ
ଉଡ଼ାଇ ହାତୁଁ ହାତେ ।

ଗୋଲାମୀ ଆଭା ତୁମ
ଶିଶୁଟି କପୋଳରେ—
ଫୁଟିନି ଫୁଟିନି ହେ !
ଫିଟିନି ପ୍ରୀତି-ଝରି ।

ହେ ମହା ସଂଗ୍ରାମୀ !
ଜାଣ କି ଜାଣ ନାହିଁ ?
ଜୀବନ ଅନୁରାଗେ—
ସାମ୍ୟ ଲାଗି ଏବେ
ସମର ଖରତର— !!



## ଛାଇ ଡାକ ଦିଏ—

''ଆଆ ଭାଇ ମୋର ! ଭାଇ ମୋ ଗଲୁ ରେ କାହିଁ?
ଦିନ ଯାଉ ନାହିଁ, ଯୁଗ ଯାଉଚିରେ, କେଉଁଠି ପାଇବି ତତେ ?
ଇଲୋ, ମାଆ, ଏତେ ହାଉଁଆ ମଣିଷ-ଆଖି !
ଘେରି ଘେରି ଆସେ ଏତେ ଶବଦରେ ଏଡ଼େ ନିଶବଦ !
ଏଇ ରାଜଧାନୀ ପଥେ ।''—

—ଛାଇ ଡାକିଦିଏ,
ଆକାଶ ଭିଣି ସେ ମୁହଁରୁ ଉଡ଼ାଏ ମେଘ ।
'ଏଇ ରାଜଧାନୀ ସୁନା ଦୀପଦାନୀ ତଳେ—
—ସୋରିଷ ଫୁଟିଲେ ଗୋଟିକେ କୋଟିଏ ଫାଳ
ଭାଇ ରେ ଛାଇ ତୋ ଆଉ କି ରହିଚି ବାକୀ
ପୋଡ଼ା ବଳିତାର ଅଝୁଲା ଝୁଲର ମାଳ !''

ନାଲି ପତରଟା, ବାଦାମ ଗଛର, ଡୋରା ।
କାଇଁ ଗଲୁ ଭାଇ ?—ରାସ୍ତାକଡ଼ରୁ ଖସେ,
ସୁର୍ କି-ଗୋଳା ତୋ କରଣୀ ଲୋ ସତେ ଏଇ ?
ଛାତିରେ ଜାକି ତୋ ଛାଇ କିରି କିରି ହସେ ।
—କେବେ କି ଡାକ ତା ସିମେଣ୍ଟ ଇଟାରେ ପଶେ ?

''କେତେ ସରାଗରେ କି ଭୋକ-ଉପାସେ କିଣା,
ହେଇ ଯେ ଭାଇ ତୋ, ମାଣିକୀ ଗାମୁଛା ଗୋଟି !
ଛାଇ-ଚିରା-ଖରା ଅମରୀ ବାଡ଼ରେ ଉଡ଼େ ।
ନାଲି ଡୋରା ଡୋରା, ଦେହେ ତୋ ପଡ଼ିଚି ଲୋଟି ?''

ଛାଇ ବାଇଆଣୀ ପତାରୁ କେତେ ଯେ
ସପନ ଉଙ୍କୁଣୀ ଝଡ଼େ
ଶୂନ୍ୟେ ପବନ ଚାଟେ ।
କୋଠା ଖୋଲେ ଖୋଲେ ଘୁମୁରେ ତିମିରି-ପାରା ।
ଦି'ଟୋପା କାହାଣୀ ଗଡ଼ିକି ଗଡ଼େନା
ଏଇ ଚିକ୍‌କଣିଆ ବାଟେ ।

''ବାପା ହଜିଗଲା କଳର ବଣରେ ରାଉରକେଲାରେ ଯେବେ—
ପୋଡ଼ି ଜଳିଗଲା ଆଶାରେ ଉଗୁଳା ଦିନ ।
ଝୁରୁ ଝୁରୁ ମାଆ, କାଠ କାଟୁ ଗଲା ପାହାଡ଼ ତଳିରେ ଜଳି
ନିରିମାଖୀ ଆମେ ତାତିଲା ବାଲିରେ ମୀନ ।
ଆଲୋ ନିଆଁଲାଗି କୁଣ୍ଡି—ଶୁଣୁଚୁଟିକି—?''
—ଛାଇ ଗେଲ କରେ—
କୁଣ୍ଡିର କୁଡ଼ଁ,
ହୁଙ୍କଁ ମାରେ ଛିକି ଛିକି ।

ଛାଇ ଚେକା ମାରେ
ଜୀବନ-ମରଣ ଗୋ...ଇ ଛକରେ ଏକା— ।
ଝରା ପାଉଁଶର ଲେଖା - - !
''ଭାଇ ରେ ! ସେଦି... ବୁକୁରେ ସାହସ ଧରି
ଆଇଲୁ ଛୁଟି''ତ ଏ... ରାଜଧାନୀ କୋଳେ—
ଝାଲୁଆ ହସରେ କି...ାଳ ସଉଦା କରି
ରହିଲୁ କାହିଁରେ ...ନେଇଁ ଡାକବାଜି-ରୋଳେ ।

ଆଇଲୁ ଛୁଟି ତୁ କିଣିଛୁ ମୋ ଲାଗି ...ଗ ।
ଗଢ଼ାଇବୁ ବଳା, ନେପୁର, ବସଣି, ...ାଚ,
——କହି ନଥିଲୁ କି—'ଖେଳି ବୁଲୁଥା ଲୋ ଛାଇ ।''
ମେଳଣ ଯାତରେ, ଫେରେଁ, ଦେଖିଯିବା ନାଚ ।''

ଛାଇ ଓହଳିଲା !!
ନେତା ପଣ ପଣ, ହାକିମ କିରାନୀ ପଛେ ।
——ନାଆଁ ସେ ନୁହେଁ ଲୋ କାହାରି ବିବେକ-ଠାର ।
ନଥି-କାଗଜର ଢେଉ ତଳେ ତଳେ ଛାଇ
—''କୁଣ୍ଡି ଲୋ ଏଠି, କଳା କାରବାରେ
ଇହି । କି ରକତଗାର !!''

ଛାଇ ଲୁଚି ପଡ଼େ, ରୂପସୀ କାନିର କଣ୍ଣୁଁ।
—''କିମିଆଁ କରି କି ଭାଇକି ରଖିଚ ଧରି ?''
ଗରବିଣୀ ବେଣୀ ସୁନାରୀ ପିଠିରେ ଦୋଳେ।
''ଗୋରୀ ବୋହୂଟିଏ ଆଣିଚୁ ଭାଇ କି, ସାତ ସରଗର ପରୀ ?''

''ଏଇ ରାଜଧାନୀ ରାତିରେ ଉଜ୍ଜଳ, ଦିନରେ କଜଳ କଳା।
ଏତେ ଫୁଲେଇ ଲୋ ଗଳାରେ ଆଲୁଅ ହାର।
ଠିଆ ଜୁଡ଼ା ପରି ଦେବଦାରୁ ଚୂଡ଼ା ଶିରେ।
ଇଏ କି ବୁଝେ ଲୋ କା' ପୋଡ଼ା ଆଖିର ଧାର।

ଏଠି କି ଶୁଣେ କେ କାହାର କୁହୁଳା କଥା,
କୋଠା କି ବୁଝେରେ କୁଡ଼ିଆ ମନର କୋହ,
ମୁରୁକି ହସାରେ ଚିତା-କଟାକଟି ଖେଳ।
'ମୁଉଁ' ରଣ ଝଣ; ତୁଚ୍ଛା ବଡ଼ ପଣ ମୋହ।''

''ଇଲୋ ମୋ ମାଆ ଲୋ !—
ମଟର ସୁଅର କି ତୋଡ଼ ବଢୁଚି ଅନା !
କାହିଁ, ଗୀତ କାହିଁ ? କେଉଁଠି ପଶିବି ଯାଇଁ ?''

—ଛାଇ ଛାନିଆରେ ସଡ଼କ ମଝିରେ ଧାଏଁ
''ମଲା, ଏ ଯୁଗର ମୁହେଁ କି ସରମ ନାହିଁ !
କଟମଟ କରି ମତେଇ ଗାଡ଼େଇ ଚାହେଁ ?''

ଛାଇ ବୁଲିପଡ଼େ ବାହୁନି ବାହୁନି—
''ତତେ କି ଭାଇ ରେ କଳରେ ପେଷିଲା କିଏ ?
ମେଘୁଆ ଦେହୁଁ ତୋ ଉଲୁରି ପଡୁଚି ଚମ।
ମଟର ତଳେ କି ଚକଟି ଦେଲେ ରେ, ସିଏ ?''

''କାହିଁ ଗଲୁ ଭାଇ ?'' - ଦିନ କି ଲେଉଟି ପଡ଼େ—
ଭାଇ ଡାକଦିଏ, ଧୂଳିରେ ଘାସରେ ସତେ—
''ସଡ଼କ ଭିତରେ ସଡ଼କ ପରା ମୁଁ ଆଲୋ ।
ଯାଇକି ପାଉନୁ ଛାଇ ଲୋ ଆଲୁଏ ମୋତେ ?

''କୋଠା ଗହଳିରେ କୋଠା ମୁଁ ଗୋଟିଏ !
କୋଠା ଲୋ କୋଟିଏ ଛିଡ଼ା ।
କ୍ଷମତା ବଢ଼ିମା ମଦର ବୋତଲୁ ଇଡ଼ା
ନଥିବିଡ଼ା ମେଳେ ମୁଇଁ ଲୋ ଗୋଟିଏ ବିଡ଼ା
ଡାକନା ଲୋ ମୋତେ, ତୁନି ହୁଅ ତୁନି ଛାଇ ।
ଯେତେ ଯାହା ଆସୁ—
ରାଜଧାନୀ ପଥେ ଆଲୁଅ ସୋରିଏ ମୁଁ ଯେ ।
ମୋ ପାଶୁ ଛାଇ ଲୋ ତୋର ଛାଡ଼ବାଡ଼ କାହିଁ ?''
''ଛାଇ ଡାକ ଦିଏ...ଭାଇ ।''



# ଘାଟରେ

ଆକାଶ ଝାଡ଼ିଛି କାତି,
ତାରାସବୁ ଘାସୁଁ ଘାସେ ଝାଲରି କାକର।

ସେମାନେ ବୁହାନ୍ତି ପାଣି–
ସିହାଣୀ ସେଣାଟା ଝୁଲେ ଉଡ଼ାଇ ଫୁଲୁରି ହସ
କଥାର ଲଙ୍ଗଳ କାହିଁ, ଚିରି କି ପାରିବ ଚିରି କପାଳ ଶିଳାରେ ?
ସେମାନେ ବୁହାନ୍ତି ପାଣି–
ସୁନାର ମରାଳୀ ଖେଳେ ଅଦେଖା ହ୍ରଦରେ, ମୃଦୁ।
ଯାଅ ଲୋ ପହଁରି ଯାଅ, ଅମରୀ ବାରତା ନେଇ–
ହାୟ ଦମୟନ୍ତୀ ମୋର, ହାୟ ମୋ ନଳ ରେ !

ଜଳୁନି ଯୁଗର ଚୁଲି, କି ଓଦା ଜାଳେଣି ଆମେ।
ଗୀତର କାଇଁଚ ଫୁଟେ ଅକଥା କଣ୍ଠାର ବଣେ
ସେମାନେ ବୁହାନ୍ତି ପାଣି–
ଝରଣା ଉଛାଳ।

''କୁହୁଡ଼ି ପାହାଡ଼ ଘାଟି !
ଦିଅ ବ୍ରେକ ଦିଅ କଷି–''
ଝାଟି କାଟି ଯାଏ କିଏ
–ଶଂଖଳ ବାଟଟା କାହୁଁ ?

ଧକ୍ ଧକ୍ ମଟର ବାଜେ ଅବାଧ୍ୟ ଗତିରେ, ହାୟ।
ଆଃ, କି ବରଡିଗଲା,
ସଭ୍ୟତାର ବୋଡ଼ିବୁହା ଗଭାର ଗଭୀରେ !

ସେମାନେ ବୁହାନ୍ତି ପାଣି–
ସଜ ଘାସ ଜିକିଜିକି ଓଲଟ କୁଡ଼ାରେ ।
ନା ମୁଁ ଚୁମିଲି କାହିଁ ?
ମୁଁ ଭଦ୍ର ଭୟାଳୁ !

କମକୁଟ ଚିତା ଏ ଯେ,
ଉଡୁ ଉଡୁ ନିପାଣିଆ ମେଘର ମହୁଡ଼େ ।
ନିଶୁନ ଉଖୁଡ଼ା ହାଣ୍ଡି ଉଗୁଡ଼ା ଦିଗନ୍ତ କଡ଼େ,
କେଉଁ ତାରା-ପୁଆଣିର ?
ଜାଆଁ-ନାଳି ଧାରଟିଏ
ସିନ୍ଦୂର ଠାରର ଲେଖା, ଉଜୁଡ଼ା ସୁଲ୍ଲାରେ ପୁଣି ।

ଯାଅ ଉଡ଼ି ମରମୀ ତୁ,
ମାଖୁନା ନିମରେ ପଛେ :
ମୋହିଲା ମହୁଲ ବାସେ ମନର ବଣରେ କିଏ ?

ଖଟିଖିଆ ଜୀବନ ତ ନୁହେଁ ସେ ଖପରା ଧନ,
ଜୀବନ-ମରଣ ସେ ଯେ ଅଫିଟା ବୁଜୁଲି ଫାଶ–
ଅଥାନେ ବିଥାନେ ଆଗୋ !

ସେମାନେ ବୁହାନ୍ତି ପାଣି,
ଜଳନ୍ତା କୁହୁରେ !
ହୁଳହୁଳି ନାଚୁଥାଉ ବନ୍ଦିନୀ ବେଢ଼ାରେ କାହିଁ !....



# ସେ ମେରୁପ୍ରଭାରେ...

ମରମୁଁ ମରମେ–
ସହସା କଠିନ, ସହସା ନରମେ
ଭାଇର ଭୁଜରେ–ସିନେହ ସରମେ,
ଧରଣୀର ଶିରେ ରଶ୍ମି-ଗଭାର
ସେ ମେରୁ ପ୍ରଭାର–
ଆଜି କଲରୋଳେ
ବିପ୍ଳବୀ ଯୁଗ ବାରତା ଚଳେ
ସାମ୍ୟବାଦର ବାରତା ଚଳେ।

ଚଳେ ଦେଶେ ଦେଶେ–
ଶ୍ରମ ସାଧନାର, ପ୍ରୀତି ବୋଧନାର–
ନବ ଚେତନାର ହେଇ ଦପ୍ ଦପ୍ ଦିହୁଡ଼ି ଜଳେ।
ଯୁଗ ଯୁଗ ଲାଗି ତୁଟାଇ ତିମିର ତମରେ ଦଳେ।
ସତେ ସ୍ୱାର୍ଥୀର ଶିଖର ଟଳିଲା,
ଅଚେତନ ମନ ହିମାନୀ ଗଳେ।

ଏକଜୁଟ କରି କୋଟି ହାହାକାର–
ଇତିହାସ ପଥୁଁ ଖସାଇ ପାଷାଣ,
ଉଡ଼ାଇଲା ଯିଏ ପ୍ରାଣର ନିଶାଣ,
ଫିଟାଇଲା ଯିଏ କୋଟି ହୃଦୟର ରୁଦ୍ଧ ଦ୍ୱାର।
ସୁରେ ସୁରେ ଯାର ସ୍ପୁଟନିକ୍ ଛୁଟି
ମହାକାଶୁଁ ଆଣେ ରଶ୍ମିରେ ଲୁଟି
ନବ ସନ୍ଧାନୀ ଜୀବନ କଳେ।
ମଣିଷ ମନରୁ ନିର୍ମମତାର ମୈତ୍ରୀ ଆଘାତେ
ପୃଥ୍ୱୀ ବୁକୁରୁ ଜାନୋୟାର କୂଳ ଦଳେ ରେ ଦଳେ
ସେ କି ସୃଜନୀର ଆର୍ତ୍ତିବଳେ।

ହୁସିଆର, ସେ ତ ଶତ ଶହୀଦର ରକ୍ତଦାନ ।
ଶତ ପ୍ରତିଭାର ସ୍ୱପ୍ନ-ରାଣ
ସେ ତ ସମତାର, ସେ ତ ମମତାର,
ନମ୍ର, କୋମଳ, ତୀବ୍ର ଜ୍ଞାନ;
ତାହାରି ରେ ମହାଦୀପ୍ତି ଲହରେ
ପହରୁଁ, ପହରେଁ,
ରଣ-ହୁଙ୍କାର ଲୋଟିଚି ତଳେ !
ଆଗାମୀ ଶିଶୁର ଖେଳରେ ମେଳରେ
ଗୀତି ଝଙ୍କାରେ
ଝୁମୁ ଝୁମୁ ତା'ର ମୂରତି ଝଲେ ।

ମହା-ଯଉବନ ସରଜି ସରଜି
ଝରେ ଝରଝର, ରସ ନିର୍ଝର—
ନୋହୁ କିଏ କେବେ ଜରା-ଜର୍ଜର—
ନୋହୁ କିଏ କ୍ଷୀଣ, ନୋହୁ ରେ ଦୀନ୍,
ବାସ୍ତବ ହେଉ ସ୍ୱପ୍ନଲୀନ ।
ନୁହେଁ ତ ମରଣ ନୁହେଁ ଦୁର୍ମର—
ସବୁ ଶୋଷଣର ସବୁ କଷଣର
ଲୁପ୍ତ-ପ୍ରାଣ !

ସବୁ ସାଧକର ଭ୍ରାନ୍ତି ଗହଳେ ମୋକ୍ଷ-ଗାନ !
କିଏ ତା' ଆଗରେ ଛଳଛଦ୍ମ କପଟ ବଳେ ?

ତଫାତ୍ ହୁଅ ରେ ହତ୍ୟାକାରୀ ।
ତଫାତ୍ ହୁଅ ରେ ଅତ୍ୟାଚାରୀ ।
ତଫାତ୍ ହୁଅରେ ଚୋରା-ଶୋଷକର ବାର୍ତ୍ତାଧାରୀ ।
ସେଇ ତ ଆମର
ଶାନ୍ତି ସମର
ଅକ୍ଟୋବରର ସାମ୍ୟ ଅମର ।
ତୁମର ମୋହର ରକ୍ତ ଟୋପାଏ ମାଂସ ପଳେ ?

/ ୧୮୦ /

ହୃଦୟର ପରେ ହୃଦୟ ଲୋଟାଇ,
ଅନଳୁ ଶୀତଳ ହସର କୁସୁମ ନିଅ ତୋ ଗୋଟାଇ
ତାହାରି ଲାଗି ଯେ
କୋଟି ଜନତାର ପ୍ରଣତି ଢଳୁରେ,
ପ୍ରଣତି ଢଳେ ।



## ଛବି

ବଂଧାକୋବି ଗାଲୁଁ ଗାଲେ ଲାଉଆ ଉରୋଜ !
ସେକ୍ରେଟେରୀ ଭଣେ ଭଣ, ଭର୍ସିତ ଫାଇଲ୍;
ଚାଇଁଆ ଚପରାସୀ ମାରେ ଫାଉରେ ପ୍ରୀତିକି!
ଶ୍ରୀମତୀ ଯେ ଷ୍ଟ୍ରିପ୍‌ଟିଜ୍ କ୍ଲବର ଓଠରେ !
—ମୁଁ କିରେ ଢୋକୁନି ବସି ସୁରୁପି କାଞ୍ଜି ମୋ ?

କାନ୍ତରାଟି ଭାରିଜାଟା ଓଲେଇ ଫାଳିଲ୍ !
ଦସ୍ତଖତ ମାରି ଆଣେ ହୀରାର ପରମିଟ୍ ।
ବିଦ୍ୟାଘର ନିଲାମରେ ଆଇ.ଏ.ଏସ୍. ଅମୂଲ୍
ପକେଟ୍ ଯେ ରଣଝଣ, ବାରିକି ଯୋଗରେ !
—ଶୂନରେ ଶୂନରେ ମୁଁ କି ଗୁଣୁନି ହରିକି ।

ଲଂଗୁଳୀ ଲୀଳାଂକେ ଫିଟେ ଗଣିତ ସୋପାନ !
ଭଗତିରେ ବୈିଷ୍ଣବୀୟ, ଆତୁରା କଲେଜ୍ !
ପାସ୍ ଲୋଡ଼େ ମାଳଂଚରେ ତରୁଣୀ ଛାତ୍ରୀ ଯେ !
ପ୍ରଫେସର ଟୀକା ଲେଖେ ପ୍ରାକୃତ ପ୍ରୀତିର !
—ଚରିତ୍ର-ମୂରଲୀ ମୁଁ କି ବାଜୁନି ସଭାରେ ।

ଆସେମ୍ବ୍ଲି ଭବନେ ବିକି ବକ୍ତୃତା ଝୁଡ଼ିଏ ।
ହେଇ, ଏ ଫେରିଲେ କିଏ ? ....ଆହା, ମହର୍ଷି...ଏ !
ଗୋଦାମ୍ ଗୋହିରେ ଝଡ଼େ ସୁନାର ବ୍ରଚ୍‌କି !
ସଚେତ ବିଜ୍ଞାନୀ ଗଢେ ମୁଦ୍ରାର ମୋହର !!
—ମୁଁ କିରେ ଦଳୁନି ବସି ଦେଶର କପାଳ !—

ମନ୍ତ୍ରିତ୍ୱର ଗୀତୁଁ ଗୀତେ ମାର୍କିନ୍ ଭଣିତା !
ଗୁଳିର ରାଗିଣୀ ଛୁଟେ ହୃଦଯନ୍ତ୍ର ଭୋଦି ଯେ !
ପେଟ୍ରୋମାକ୍ସ୍ ବହି ଶିରେ ବିଦ୍ୟୁତ ଆଲୋକେ,
ପଟୁଆରେ ମତୁଆଲୀ ଦଳିତା ଦାୟିତା ଚାଲେ,
—ମୋ ଜିପ୍ ଛୁଟିନି କିରେ ଜହ୍ନକୁ ଟପି ରେ !

ମୁଁ ଆଜି ଦେଖୁଛି ସବୁ, ଦେଖୁନି କିଛି ଯେ,
ହଳଦୀ, ପାଟଳ, ନାଲି ଆଖିର ବୋତଲ—
ହରିଜନ ବଧୂ ଶିରେ ମଳର ଟୋକେଇ
ପ୍ରୀତିର ତଟିନୀ କୂଳେ ଜଳୁଛି ଚିତାଗ୍ନି କା'ର,
ଗଭୀର ସ୍ନେହର କ୍ରୋଧେ ଥରୁଚି ମୁଠା ମୋ
ମୁଁ ଯଦି ମରିବି ତେବେ ଜୀଇଁବ ତୁମେ କି ?



# ଯାତ୍ରା ଆସି ଯାତ୍ରା ଯାଏ

ଯାତ୍ରା ଆସି ଯାତ୍ରା ଯାଏ ଝୁର୍‌ଝୁରି ବାଣରେ,
ତମେ ଝର, ଝର ନାହିଁ, ନିଷ୍ପ୍ରାଣ ପ୍ରୟାସେ ତୁମେ ?
ଏ ଜୀବନ ବହିଯାଏ, ସମୂହେ ଏକାକୀ ନିତି,
ଏକାକୀ ସମୂହେ, ପୁଣି–
ବହିଯାଏ, ବହେ ନାହିଁ।
ହେ ମାଟି ପ୍ରତିମା ମୋର, ସୁନାର ପ୍ରତିମା !

ତୁମେ କି ବୁଝୁଛ ଭଲା,
ମନର ମଣ୍ଡପେ ମୋର ସୁନ୍ଦର ମେଢ଼ରେ,
କି ମଣିମାଣିକ୍ୟେ କେତେ ରୂପାର ଜରିରେ;
ସଜାଇ ଚାଲିଛି ମୁଁ ଯେ, ଶିରାଳ କାନ୍ଧରେ ମୋର
ବହି ବହି ତୁମକୁ ଯେ ବରଷୁଁ ବରଷ।
ରୁଧିର ନଈରେ ରଚି ଭସାଣି ଉତ୍ସବ ତୁମ–

ଧୂଳିରୁ ଗୋଟାଇ ପୁଣି ଗଢ଼ିବି କଙ୍କାଳମାନ,
କୁଟା ଓ କାଠିରେ କାଲି,
ଆଲୋକ ଯାତ୍ରାର ପାଇଁ,
ସୃଜନ-ବିଷାଦେ ମୋର,
ତୁମେ କି ଜାଣୁଚ ଭଲା,
ଦୃଢ଼ ମୁଁ ବିଶ୍ୱାସେ–
ତୁମକୁ ଭାଙ୍ଗେ ମୁଁ କେଡ଼େ ଉଦାସ ଉତ୍ସାହେ–
ତୁମକୁ ଗଢ଼ିବା ଲାଗି।

ହେଇ, ସେଇ ହସପିଟାଲ ଖଟିଆ ପାଖରେ,
ତୁମେ ତ ଚାହିଁନ ସେଠି ?
ପ୍ରସୂତୀ ରାତିର ଯହିଁ ଖସୁନି ଫୁଲଟା,
ନ ଜନ୍ମୁ ମରିଲା ଉଷା; ନୁହେଁ କା ଝିଅ ବା।

କି ସୂର୍ଯ୍ୟ ଶିଶୁରେ କେଡ଼େ ।
                    ହେଇ ଟାଣିନେଲା ଶ୍ୱାନ,
                    ଚୋବାଏ ଶୃଗାଳ—
ତୁମେ କି ଚାହିଁନ ସେଠି— ?

ତୁମେ ତ ଚାଲିନ ଆଉ ଦେଉଳ ଦୁଆରେ
ମସ୍‌ଜିଦ୍ ଗୀର୍ଜାର କରେ,
କୃଷ୍ଣଦିନ ପଟୁଆରେ—
ଚରଖା ଘୂରାଇ ତୁମ ଖଳବୀ ବ୍ୟଥାର !

ତୁମେ କି ହସୁଚ ତେବେ,
ପୁଲିଶି ପିଟୁଣି ବହି କିଶୋର ପିଠିରେ ତୁମ,
ଗୁଳିଲଛା ଛାତି ମେଳେ ବୃଦ୍ଧର ଆକାଶେ,—
ଯାତ୍ରା ଆସି ଯାତ୍ରା ଯାଏ—
ଟେରେଲିନ୍ ପୋଷାକ ହସେ ବଜାଇ ବିଗୁଲ ।

ହେ ମାଟି ପ୍ରତିମା ମୋର, ସୁନାର ପ୍ରତିମା !
ଏ ହୃଦୟେ ଜ୍ୱାଳା ନାହିଁ—
ଅଛି ତ ବକ୍ତୃତାମୟ କାତର ଭୀରୁତା—
ନୀରବ ଆପୋଷ ଯେତେ ଅନ୍ୟାୟ ଅନୀତି ସହ ।
ଏଇ ତ ସାଧନା ମୋର !

ଛଟା ଗାଳି ସମୟ କି ଢୁଲୁ ଢୁଲୁ ଢୁଲୁ ଢୁଲୁ
ତାରାରେ ତାରାରେ ।
ହେ ମାଟି ପ୍ରତିମା ମୋର, ସୁନାର ପ୍ରତିମା—
ଯାତ୍ରା ଆସି ଯାତ୍ରା ଯାଏ—
ଆଃ କେତେ କଟା ହାତ !!
କେତେ କେତେ ପୋଡ଼ା ମୁହଁ—
ତୁମ ମୋ ରାସ୍ତାରେ !!!



# ମନକୁ ମନ

''–ଉଇଲୋ' ବନରେ କି କଥା ଲୋ ସାଇଁ ସାଇଁ,
ବିଦେଶିନୀ ଆଗୋ ।

ନୟନେ ତୁମର ଏଡ଼େ ଶୀତୁଳିଆ ଖରା ?
ମରମେ କି ତୁମ ଫାଲ୍‌ଗୁନ ମାୟା ନାଇଁ ?
କାଉଳା ବ୍ୟଥାରେ, ଭୁଲା ଅଭୁଲାରେ ଝରା ?''

''—ନାରିକେଳ-ବନେ କାମନା କି ସିରି ସିରି–
ବିଦେଶୀ ସାଥୀ ହେ ।
ନିଃଶ୍ୱାସେ କିଆଁ ବିଷୁବଚକ୍ରୀ ଝଡ଼ ?
ମରୁ ଅଶ୍ରୁରେ ଜହ୍ନ କି କିରି କିରି
ସଜୀବ ସ୍ୱପନ ଭସ୍ମରେ ନୁହେଁ ଜଡ଼ ?''

'–ଆହା ଉଦାସିନ,
ଆହା ମୋ ଆକାଶ କଇଁ,
କହି କି ପାରିବ
ହେଇ, ଉଡ଼ିଗଲା ଚଢ଼େଇ ଯୋଡ଼ିକ ନାଆଁ ?

ମାଟିର ନୀଡ଼ରେ ଆକାଶୀ ଶୋଭାର ଛଇ,
ବୁକୁରେ ତୁମର
ନାଇଁ କି ନିମିଷେ
ମୋର ଦୁକୁ ଦୁକୁ ଗାଆଁ ?''–

/ ୧୮୬ /

—''ଫୁଲର ପାଉଁଶେ, ପାଉଁଶ-ଫୁଲରେ ନିତି
ସମୟ ମରି ତ ଜୀଏଁ, ଅସମୟେ ଜୀଏଁ !
ଅମୃତରସ କେବେ ଝଲମଲ, କେବେ ମାରିଯାଏ ଚିତି,
ଜୀବନ ଯେ ଆମ, ବିଦେଶିନି ଆଗୋ !
ଅଧରୁଁ ଅଧରେ କେଡ଼େ ଅଧରା ସେ
ପିଏନି କି ତାକୁ ?
ଲୁଚି ଉଲ୍ଲାସେ ପିଏ !!



# ଜୀବନ

ରକ୍ତ କ'ଣ ଦେଖିନ ତମେ ?
ତୁମ ବେଳେ ରକ୍ତର ରଙ୍ଗ ଥିଲା ପାଣିର—
ଗନ୍ଧ ଥିଲା ଝାଳର !

ତମ ପରେ—
ବିପୁଳା ଏ ପୃଥ୍ୱୀର
ଲୋମର ନୃତ୍ୟରେ
ସେ କି ପ୍ରଳୟର ନିଆଁରେ ସତେ—
ଉଡ଼ିଛି କି ଭ୍ରାନ୍ତିର କୁହେଳି—
ଭାବବାଦୀ ବାସ୍ତବର !

ଧୋଇ ହୋଇଚି ମୁଁ
କଥା ନୁହେଁ, ବାର୍ତ୍ତା ନୁହେଁ
ଲାଲ୍ ଲାଲ୍, ଟକ୍‌ମକ୍ ରକ୍ତରେ—
ଢାଳିଚ ତମେ କଣ ଢାଳିଚ, ରକ୍ତ ? ନା ପାଣି !

ଛୋଟ ବଡ଼ ଜାତି, ବିଜାତିର
ଭାଷା, ବିଭାଷାର
ନିର୍ବାକ୍ ଆବେଦନ— !
ଜାଣିଚ ଭଲା, ଅନୁଭବ କରିଚ—
କେମିତ ଏକ ହୋଇଚି, ଏକ
ଗୋଟିଏ ବୋଲି ଧ୍ୱନିରେ —?'

/ ୧୮୮ /

"ଜୀବନ, ଜୀବନ ଚାହୁଁ ଆମେ–
କଠିନ ଆଉ କୋମଳ,
କୋମଳ ଆଉ କଠିନ,
କେଜାଣି କେତେ ଫୁଲହାଗ୍ନିର ପଲ୍ଲବରେ–
ଚଗଲାମିର ଚୁମ୍ମା ଭଳି କିଶୋରୀର
କିଶୋରର ଓଠରେ–
ଜୀବନ।"



# ଆମେ କ'ଣ
# ସ୍ଲୋଗାନ୍, ଖାଲି ସ୍ଲୋଗାନ୍...

ଆମେ କଣ ସ୍ଲୋଗାନ୍, ଖାଲି, ସ୍ଲୋଗାନ୍–
ଆଖିର ଆଉ ଓଠର ?

ଆସ ଟିକେ ବସିବା ।
ନିଃଶ୍ୱାସରେ ନିଃଶ୍ୱାସ ମିଶାଇ,
ଝଡ଼ଟା ସୃଜନ କରି–
ଅତୃପ୍ତ ସଂଜରେ ଏଇ
ସଚେତ ବିସ୍ମୃତିରେ, ବିଲୋଳ !
ଆସ ଟିକେ ବସିବା ।

ସ୍ଲୋଗାନରେ ମୁଖରିତ ସଞ୍ଜରେ ଏଇ,
ଆସ ଟିକେ ବସିବା ।
ଅକୃତିରେ କବିତାର
ନିରାମ୍ବ ବିଭ୍ରମରେ ଇତିହାସର
ଜନ୍ମ ଆମର !

କ୍ରୀଡ଼ା ଆମର, ବନ୍ଧୁ !
ନିଦାରୁଣ ବିଜ୍ଞାନର ଅଦର୍ଶନରେ, ଦର୍ଶନର;
ନୃତ୍ୟ ଆମର,
ଉତ୍ସବ ଆମରି, ବନ୍ଧୁ ।—
କେବେ କେବେ ସଂଘର୍ଷରେ
ଭିଏତ୍‌ନାମୀ–
କେବେ କେବେ ସଂବେଗରେ
ବାଙ୍ଗଲାର କି ଆଫ୍ରିକାର– !

ଆସ ଟିକେ ବସିବା ।
ବିଷାକ୍ତ କ'ଣ ଆକାଶ ଆମର–
ପ୍ରୀତିର ବୈରାଗ୍ୟରେ ବିଭୂତି ବୋଳି
ବଂଚିତର, ଲାଞ୍ଛିତର ?–

ଥରେ ଏଇ ବଲ୍ଲକୀରେ ମୋର–
ଥରେ, ତୁମର ବ୍ୟଥାର ଶିଞ୍ଜିନୀ–
କେତେ କେତେ ଅଜନ୍ତାର, ଅଜନ୍ମା–
ଅତର୍କିତ କାମନାର, ମୃଦୁଳ ଆବର୍ତ୍ତରେ–
ମଧୁରତମ କ୍ଲାନ୍ତିରେ–
ଆକର୍ଡ଼ିଅନ୍ କି ବାଲେଲାଇକାରେ ତୁମର– !
ଥରୁନି କ'ଣ ସ୍ୱପ୍ନ ମୋର ଯୁଗାନ୍ତର ?
ବଜ୍ରମଲ୍ଲୀର ଶୁଭ୍ରତମ ଗଳାରେ ମୋର ଦୋଳେ– ।
ରକ୍ତ କରବୀର ଉତପ୍ତ ଭୁଜବଲ୍ଲରୀ ତୁମର–

ଈର୍ଷାରେ ଜଳେ ଯିଏ, ଜଳୁ ।
ହିଂସାରେ ସଢ଼େ ଯିଏ, ସଢ଼ୁ ।
କୋଟି କୋଟି ବିଦଗ୍ଧ ମରୁରେ
ଜ୍ୱଳଦଶ୍ରୁର ଦୁଇଟି ବିନ୍ଦୁ ଆମେ, ଏକ !

ମର୍ମକୋଷରୁ ବସୁଧାର
ହାହାକାରର ଉଦ୍ଧରଣ ଆମେ,
ଦେହର ଶୃଙ୍ଗାରରେ ନାଦବ୍ରହ୍ମର ଧ୍ୱନି !
କେତେବେଳେ କେତକୀର କୁନ୍ତ ପୁଣି
କେତେବେଳେ ଦିଗ୍‌ବଧୂର ତୃଷ୍ଣା !

ହୈମନ୍ତୀର କପାଳରୁ ତୁମର
ଘର୍ମାକ୍ତ ଦିବସକୁ ଏଣୁ ଚୁମ୍ବନରେ ପୋଛେ ମୁଁ–
ଫାଲଗୁନର ନିଃଶ୍ୱାସରୁ ମୋର
ସଂଶୟର ଜୀବାଣୁକୁ ନିର୍ଜୀବ କର ତୁମେ ।–
ଶୋଷଣ କର ତୁମେ
ସୌର-ଲୋକର ସ୍ପର୍ଦ୍ଧାରେ
ଶାନ୍ତ !

ଆଉ ମୁଁ
—ଜୀବାଶ୍ମରେ କେଜାଣି କେଉଁ ଯୁଗର–
ମୁଁ କ'ଣ ଶହୀଦ ନୁହେଁ, ବନ୍ଧୁ,
ଆତ୍ମାର ସଂଭୂତିରେ–
ଅନାତ୍ମାର ବୋଧନ ଦେଇ ଇତିହାସର ?–

ବନ୍ଦ କର ରେଡ଼ିଓ ତୁମର ।
ଦ୍ରାକ୍ଷାର କୁଞ୍ଜରେ–
ମତେଇ କ'ଣ ଦେଖୁନ ତୁମେ, ଦେଖିବ ନାହିଁ ?
ଅଶ୍ୱତ୍ଥର ପ୍ରଚ୍ଛାୟାରେ
ତୁମକୁ କ'ଣ ଭେଟୁନି ମୁଁ ? ଭେଟିବି ନି ?

ସ୍ଲୋଗାନରେ ମୁଖରିତ ସଞ୍ଜରେ ଏଇ
ଆସ ଟିକେ ବସିବା ।
ହସପିଟାଲ୍‌ରେ ଯେଉଁଠି ପ୍ରେମ କରେ ମୃତ୍ୟୁ ।–
ଶିବିରର ଉପକଣ୍ଠରେ ଯେଉଁଠି–
ବର୍ତ୍ତମାନର,
ଶୂନୀର ସ୍ତନ ଚୁଷି
ଚୁପ୍ ହୁଏ ଶିଶୁ ।

କିଏ ଜାଣେ–
ନ ବାଜୁ ଭରତିଆର ନିଃସ୍ୱନ ଟିକ
ତାର ଖୁଣ୍ଟିରେ କେଉଁଠି, ବେତାରୀର
ଆମେ ପୁଣି ଛୁଟିବାନି–
ଛୁଟିବା ଯେ !–



# ସାବାସ୍

ସାବାସ୍, ସାବାସ୍ ।
ଦର ଚଢ଼େ, ଦର ବଢ଼େ,
ଖୁଲ୍ ଖୁଲ୍ ହସରେ ।

ଟି.ଭି.ରେ ତୁମର ଓଠ
ମୋ ଓଠୁଁ ଦୂରରେ କେତେ ।
ବେତାରରେ ତୁମ ସ୍ୱର—
ମୋ ସ୍ୱର ପାଖରେ ପୁଣି ।

କିଏ ତୁମେ କିଏ ମୁଁ ବା ?
ବାର୍ତ୍ତା ବୁଲେ ଅତୀତର
ପ୍ରାଚୁର୍ଯ୍ୟେ ଅଭାବେ ନିତି—
କୋଟି କୋଟି ନିଆଶ୍ରୀର ବିଶ୍ୱାସ ଉପାନ୍ତେ !
ଆଧ୍ୟାତ୍ମିକ ଗୋଧୂଳିରେ ଭୌତିକ ରାତ୍ରିରେ !
ବାର୍ତ୍ତା ବୁଲେ, ମୁହୁର୍ମୁହୁ ନୈଷ୍ଠିକ ହିପ୍‌ପିର ?

—ସୁଗୌର ସୁଢ଼ଳ ସେ କି ?
ଚିକ୍‌କଣ କୃଷ୍ଣ ବା— ?
ନିଜକୁ ଚର୍ବଣ କରି ଗୀର୍ବାଣ ମୂଲକେ କେଉଁ— ?
ନୀରବେ ବାଙ୍ମୟ ବେଳା ।
ସାବାସ୍ ସାବାସ୍— ।

ପ୍ରତ୍ୟାବୃତ୍ତ କାମନାର ଛିଦ୍ରରେ ଛିଦ୍ରରେ,
ତୁମର ଜିହ୍ୱାଟିମାନ ପତୁରି ପତୁରି ।
ତୁମେ କି ଖେଳିବ ସତେ,
ଦୁର୍ବାର ରୋଷରେ ତୁମ—
ଯାଯାବରୀ ଚେତନାର, ସୁତୀବ୍ର ବେଦନା ମୋର—
ରକ୍ତିମ ତୋଫାନ୍—

ସାବାସ୍, ସାବାସ୍ ।
ଦର ଚଢ଼େ, ଦର ବଢ଼େ—
ଚୌର୍ଯ୍ୟେ ଓ ଚାତୁର୍ଯ୍ୟେ କେତେ ।

ଏ ମୋର ବିପଞ୍ଚୀ ଝୁରୁ
ମୋତେ କି ତୁମକୁ ଥରେ—
କରୁଣୁ କରୁଣ ରାଗେ—
ନରମି ନିର୍ଦ୍ଦୟ !!

ସାବାସ୍, ସାବାସ୍ ।
ଦର ଚଢ଼େ, ଦର ବଢ଼େ
ଖୁଲ୍ ଖୁଲ୍ ହସରେ !

ଟିଭିରେ ତୁମର ଓଠ;
ମୋ ଓଠୁଁ ଦୂରରେ କେତେ !
ବେତାରେ ତୁମର ସ୍ୱର;
ମୋ ସ୍ୱର ପାଖରେ ପୁଣି ?
ସାବାସ୍, ସାବାସ୍ !



# ଶୂନ କଣ ମୁଁ, ଶୂନ ?

ବେଳେ ବେଳେ ଅଣ୍ଡାଳି ହୁଏ ନିଜକୁ !
ତାରାଏ ଛୁଟୁଲେଇ ହୋଇ ଗପନ୍ତି କଣ ଚୁପ୍ ଚାପ୍—
ଚିର୍ ଚିରାନ୍ତି ପୁଣି, ଆକାଶର ପର୍ଦ୍ଦାରେ ।
ହାୟରେ ମୁଁ—

ଗାଆଁଟିମାନ, କାଲିର
ହଜି ହଜିଯାଏ ନୂଆ ନୂଆ ସହଜିୟା ଧୂଳିରେ, ସମୟର ।
ଛୋବ ଯାଏ ଚଇତନିଆ କେଉଁଠି—
କରୁଣାର ଝାଂଝରେ—
ସହରସବୁ ସାଲୁବାଲୁ ହୁଏ, ନାଚି ନାଚିକା,
ଟେରିଲିନ୍ ସନ୍ତୋଷରେ ନିଶ୍ଚୟ
ହାଉଳି ଖାଇ ବ୍ୟସ୍ତତାରେ, ତୁଚ୍ଛାକୁ !—

ଦରିଆପାରି ପ୍ରେତଗୁଡ଼ିକ ପଶ୍ଚିମା !
ଧରିବା ପାଇଁ ଆମକୁ
ପାଉଁଶର ଆଙ୍ଗୁଳା ଟେକି ନିଜର—
ରହି ରହି ଡାକି ହୁଅନ୍ତି, ଚୁପ୍ ଚୁପ୍,
ଚକମକିଆ ମରଣର ରାଜଧାନୀରୁ !

ମୁହଁର ମଣ୍ଡାଜ୍‌ରେ ଯୁଗ ପରେ ଯୁଗର,
ଥାକକୁ ଥାକ,
ମଲା ମଲା ମମତାର ସଇମୋହର ନକଲ ଆଣ୍ଠୁ
ଉଇଖିଆ ହସର ଉପୁରାଣ ଖସେଇ
ଅନୀତିର ନୀତିରେ, ଖାମ୍ ଖିଆଲି ରାୟରେ—
ପିତୃ-ପୁରୁଷିଆ ପୁଲିସ୍‌ର ପିଟୁଣି ବହି ପିଠିରେ—
ଗୁଳିଲଛା ଛାତି ମେଲେଇ ଆଜିର
ନିଜକୁ ବେଳେବେଳେ ଅଣ୍ଡାଳି ହୁଏ—

କଥାର ଲଟେଇରୁ
ଓଟାରି ଓଟାରି ଫିଟେଇ ଫିଟେଇ ନିଜକୁ–
ଗଣ୍ଠିକି ଗଣ୍ଠି ଦେହ ମନ ଭୋକରେ–
ଗଅଁଠେଇ ନେଇ ତୁମକୁ ନିଜଠି,
ଅଣ୍ଡାଳି ହୁଏ–
ମୁଁ କଣ ଶୂନ୍ ଖାଲି, ଶୂନ ?

ନା, ନା–
ମୋର ଶୂନ୍‌ରେ, କଣ ମୁଁ
ପାଏ ମୁଁ, ପାଏ କଣ ନିଜକୁ–
ସିମେଣ୍ଟ ଗଢ଼ା ସିନିକ୍ ଦିନ୍ନୁଟାରେ ମୋର ?

ହଁ, ନିବୁଜ ମୁଁ, ନିଦା ମୁଁ,
ପୋଲା ପୁଣି ଖୋଲା ମୁଁ !
ଡାକ୍ତରର ପ୍ରେସକ୍ରିପ୍‌ସନ୍, ମାଳକୁ ମାଳ ଯେଉଁଠି–
ତେଲ-ଟିକିଟା ଚାହାଣୀରେ, ଅମଲାର–
କୁଳୁବୁଲିଆ ସକାଳ ସବୁ
କଲବଲ ଯେଉଁଠି–

ମଣିମା ମଣିମା ଡାକରେ, ଛତିଆମରା କବିତାର
'ଚଉପଦୀ ଯେଉଁଠି–
ବିକଳିଆ

କୁହୁଳେ ଯେଉଁଠି ଶାନ୍ତି, କହୁଳେ–
ନା, ଜଳେ ନା ଆଦୌ ?
ଜଳେ ନା
ମରଣନାଶୀ ଲୟରେ !

/ ୧୯୬ /

ଇସ୍–
ମୁଁ କଣ ପାଏ ମୋତେ, ଶୂନ୍‌ରେ ?
ହଁ, ହଁ, ପାଏ ମୁଁ ପାଏ !
ପାଆନ୍ତିନି କେମିତି ?
ଲୀନହୁଏ
ଅଙ୍କ ଯେଉଁଠି,
ଜନ୍ମ ହୁଏ ସେଇଠି ମୁଁ,
ଲୀଳାରେ ମୋର
ମଗ୍ନ ମୁଁ– ।

ପୁଳାକୁ ପୁଳା,
ତେଣୁ, ଗୋଟାକୁ ଗୋଟା ଶୂନ ଯେ ଭଲ ପାଏ–
ଭଲ ପାଏ ପ୍ରାଣ ଦେଇ
ପ୍ରାଣଟା ଦିଏନି ବୋଲି, ନିଶ୍ଚୟ ?
ଜପି ହୁଏ, ଗପି ହୁଏ ନିଜକୁ !
ଜୁକୁଜୁକେଇ ବିଲିବିଲାନ୍ତି ତାରାଏ ।
ଶବ୍ଦର ପର୍ଦ୍ଦାରେ ପୁଣି ଚିତ୍ରର ଫର୍ଦ୍ଦର–
ହାୟରେ–

ବେଳେବେଳେ କାହିଁକି, ସବୁବେଳେ
ଅଣ୍ଡାଳି ହୁଏ ନିଜକୁ
ତାରାଏ ଯେତେବେଳେ
ଡୁଲାନ୍ତି ଚେଇଁ ଚେଇଁ– ।
ଆଉ ତୁମେ
ଚେଇଁ ଚେଇଁ ଶୋଇଥାଅ ସବୁ–
ହାୟରେ– !



# ଭୁଲ୍ ଠିକଣା

ଏ ହାତୁଁ ସେ ହାତେ ବୁଲୁଚ ଆଜି କି
ହେ ମନୋରମା ।
ଭୂଲ୍ ଠିକଣାର ଡାକ ଲଫାପା ଗୋ,
ହେ ମନୋରମା !

ଉଷ୍ଣ ପାଷାଣେ ତୁଷାରବାଳା ଗୋ,
ମରମୁଁ ମରମେ ଜୀବନ-ଜାଳା !
କେତେ ହୃଦୟର ମରୁରେ ମରୁରେ
ବେଦୁଇନ୍ ବ୍ୟଥା କରୁଚ ଜମା କି,
ହେ ମନୋରମା !

ରଙ୍ଗ ଯେ ଥିଲା ରକ୍ତ, ଗୋଲାପୀ ନୀଳିମ [illegible],
କେତେ ମିଳନର ବାଷ୍ପେ ଧୂମଳ, ଧୂସର ଫିକା ।
ତୁମ ଲାଗି ପୁଣି ମନର ଗଳିରେ ଏତିକି ସଭା ।
ଉଦାସ ଆଖିର ଚୋରା ଉତ୍ସବ, ଘେନୁଚ ଠିକା !

ଗୋଟି ଗୋଟି ସତେ ଅବୋଲା ରାଗିଣୀ ,
ଅବେଳେ ବୋଲି
ଠିକ୍ ବେଠିକ୍‌ର ମଝିରେ କେଉଁଠି
ମୁଜି ହୋଇ ଥରେ
ଅଲାଜେଖୋଲି,
ଆପଣାକୁ ଆପେ କି ରସେ ଫୁଲେଇ,
କି ସୁରେ ମୂଳେଇ,
ମାନୁନ ଆଜିକି ଆକାଶ, ପାତାଳ,
ପାହାଡ଼ ଖମା ?
ହେ ମନୋରମା ।

ଅୟୁତ ଦିନର ଦୃଷ୍ଟି-ମୋହର ତୁମରି ଦେହେ !
ଅଣୁ-ପରମାଣୁ-ଧୀର ନର୍ତ୍ତନ ଚାଲିଛି କି ତୁମ ଆତ୍ମାପଥେ ?
ନିଜକୁ ଲଢେଇ
ଅସତେ ସତେଇ ?

ମକଚି ହୁଏ ଯେ କେତେ ପାପୁଲିର ତତଲା ସ୍ନେହେ !
ମୁହଁ ଫରୁଆରେ, ଫିଟାରେ ଅଫୁଟା
ଏଡ଼ିକି ନିକୁଟା,
ଶ୍ୱାପଦୀ ନଖର ଚିହ୍ନ ଲେହେ ॥
ଅରୂପ ରୂପରେ ତାପସୀ-ସମା,
ହେ ମନୋରମା ।

ତୁମ ଲାଗି କେତେ ଶ୍ରାବଣ ରାତିରେ
ଫଗୁଣ ଫୁଲର ହୁଲିଆ ଜାରି
ନିଜକୁ ନିଜେ କି ଶୋଷୁନ ଲବେ ଗୋ
ଆଜି ବି ବୁଲୁଚ ଦୁନିଆ ଘାରି ?

କାହିଁକି ସ୍ୱପନ ଶୁଖେଇ, ଉଷେଇଁ,
କେତେ ଅଭାଗାରେ କି ଚକ୍ଷୁ ଚୁଷେଇ,
ଅକଥା କଥାରେ
କୁଟି ହୁଅ ନିତି
କାଳ-ପାହୁରାଣି ଶୂନ୍ୟ ସମା
ହେ ମନୋରମା !
କଳା-କାକଳିରେ ଏତିକି ମାଖୁନି
ଝୁମୁରୁ ଝମା, ଝୁମୁରୁ ଝମା—
ହେ ମନୋରମା !

ଦେହର ଦୋକାନ ପାଖେ ପାଖେ ଯେବେ
ଭୋକିଲା ଆଖିର କାହିଲା କିଉ ।
ଖୋଲାଖୋଲି ଯେବେ ଅରତି-ରତିର ଚାଲାଣ ଚାଲେ ଗୋ,
ଖଣି ଖଣାମୟ ଗାଲରୁ ଗାଲେ ।
ନିଜର ରୁଧିର ନିଜେ ହିଁ ପିଉ !

ସୃଜନଟି ଯେବେ ମଲା ଆଗାମୀର ଭଜନେ ମଜେ,
ଜୀବନର ଯେବେ ନିମେଷ-ରେଶନ ଫେଶନେ ହଜେ !
ବାଟହୁଡ଼ା ଲାଗି ଆଜି କି ବତାଇ ଅବାଟ ଭେଦ,
ଅଗଢ଼ା ଦେଉଳେ ପଢ଼ି ହୁଅ ନିଜେ ଅପଢ଼ା-ବେଦ ?
ହେ ମନୋମୟି !
ଲୀଳାସରସୀରେ, ହୋଟେଲି ନିଶିରେ,
ତୁମେ କି କେବଳ
ଟୁପ୍ ଟାପ୍ ଟିକେ
ଲୁହା କମଳିନୀ-କାଉଳା ଛାଇ
ହେ ମନୋମୟି ।
କ୍ରୀଡ଼ାକୁଶଳିନୀ ପ୍ରୀତି-କବିତାରେ
ଜାଣିନାହଁ କେବେ କୋଲୋନ୍ କମା
ହେ ମନୋରମା !
ତୁମେ କି ନୁହଁ ଗୋ,
ଶ୍ରମିକ-କିରାନୀ-ବଧୁ, ବାନ୍ଧବୀ, ନୟନତାରା ?
ବଣିକ ମହଲେ ପୋଷା ନର୍ତ୍ତକୀ ନଗ୍ନ ରାଇ ?
ବିବେକ ବିକାଳି ମନ୍ତ୍ରଣା ଘର ସ୍ୱର୍ଣ୍ଣ ପାରା ।
ଯବାନ୍ ଜନର ଶୁଶ୍ରୂଷା ସାଜି ହସିନ କାହିଁ ?

ତୁମେ କି ନୁହଁ ଗୋ
ବିରହିଣୀକୁଳ ଦୀର୍ଘଶ୍ୱାସ,
କେତେ ଜନନୀର ଆର୍ଦ୍ରଭାଷା ?
କାର୍ ବିଳାସିନୀ ଲିପ୍‌ଷ୍ଟିକ୍ ବୋଳା, ଅଧର-ଧାର !
ଇଷ୍ଟେସନ୍‌ର ଯାତ୍ରୀ ଗହଳେ
ଓଢ଼ଣା-ଖସାରେ,
ଚପଳ ଘଷାରେ

ବିକଳ ଠାର !

ହେ ମନୋଲୀନା ।
ତୁମକୁ ପାଇ କି ବାଜି ବାଜି ଉଠେ ପ୍ରୀତି-ଅନୁକୂଳେ
ଜୀବନ ବୀଣା ।

ନୂଆ କରୁଣାର କାରଖାନା କୋଳେ ଢଳେଇ ଯୁଗ ।
ତୁମକୁ ଅନାଇ କାହିଁ ସନ୍ତ୍ରାସେ ଥରୁଚି କିଏ ?
କେଉଁ ସାଧନାର ଲେଦ୍-ମେସିନ୍‌ରେ ଗଢ଼ା ଯେ ତୁମେ !
ବେତାର ଗୀତିରେ ବସ୍ତୁମୟୀ ଗୋ ଖୁମାଣ୍ଟୁ ଖିଏ !
ଆପଣାକୁ ଆପେ ଯଚାଇ, ନଚାଇ
ସ୍ୱୟଂକ୍ରିୟ ।
ତୁମେ ତ ସବୁରି, ନୁହଁ ତ କାହାରି ।
ନିର୍ଜୀବ ଜଡ଼, ପ୍ରେୟସୀ, ପ୍ରିୟ ।

ସାମ୍ୟର ଲିପି କପାଳେ ତୁମରି ?
ରାଜ୍ୟଲୋଭୀର ତୁମେ କି ଛବି ?
ପୋଡ଼ା ହୃଦୟର କୋଇଲା-କୁଢ଼ରୁ ଆସିନ ସ୍ରବି ?
କେତେ ତରୁଣର ବ୍ୟର୍ଥ ଗୁମାନ,
କେତେ ବୃଦ୍ଧର ଶୋଚନା ଗପ,
ଜନ ସେବକର ମୁଦ୍ରା-ଜପ ?
ହେ ମାୟାମୟି !

ତୁମକୁ ତ କାହିଁ କୋଟି ଜଞ୍ଜାଳେ ରଖିନି ମନେ ।
ବେଳେବେଳେ କିଆଁ ଝମକି ଉଠ ଗୋ,
ଶିରାରୁ ଶିରାରେ ଚମକି ଛୁଟ ଗୋ ।
କୁହୁକିନୀ ଆଗୋ ! ଆଡ଼ଆଢୁଆଳୁଁ ଅଧୀରେ ନଇଁ ?
ହେ ମନୋମୟି !

ଆଜି ଯେବେ ସଖି, ଜୀବନ ଝୁମେ !
ଢଳେ ଆମେଜନ୍ ଗଙ୍ଗା ଢଳେ ?
କାହିଁ ବା ୟାଙ୍ଗ୍‌ସି, କଙ୍ଗୋ ଢଳେ
କାହିଁ ମେକଙ୍ଗ୍‌ର ରକ୍ତେ ଆବିଳ
ଲହରୀ ଟଳେ ।
ମରଣ ଚୁମେ !

ହତ୍ୟା ଆହବେ ପ୍ରତିରୋଧିନୀ ଗୋ,
ତୁମେ ନୁହଁ ନିକି ପ୍ରୀତି-ବୋଧିନୀ ଗୋ !
ତୁମେ କି ମୋହର ? ତୁମେ କି ତୁମର ?
କାହାର ତୁମେ ?

ମୋ ହାତେ କାହିଁକି ଆସିଲ ଆଜି ଗୋ ?
ହେଇ ମୋ ଶିଶୁର ମୁହଁରେ ଫେଣ !
ଲୁହର ମୁହାଣେ ନିମେଷ ନାହା ମୁଁ !
ମେଲାଇ ଦେବି କି ? କରୁଚି ଖେଣ ?

ତୁମେ ପରା ସଖି ସତ୍ୟବାଚନେ ସଂପାଦନାର ଗୋପନ ଭୀତି ?
ଚିତ୍ତଘାତିନୀ ଅର୍ଥନୀତିର ଚିର ଅନର୍ଥେ ମିଶ୍ର ରୀତି ।
ଛୁଅଁ ନା, ଛୁଅଁ ନା, ମୋ ଓଠ ଛୁଅଁନା !
ଭୁଲ ଠିକଣାର ଡାକ ଲଫାପା ଗୋ,
ଶମନ-ଲୀଳା !

ପଣ୍ୟଶାଳାର ମନ୍ଦିର ତଳେ
ମୁଁ ଯେ ନିଷ୍କ୍ରିୟ ଶଙ୍କର ନୁହେଁ, ଶୁପ୍ତ ଶିଳା !
ମତ୍ତକାଶିନୀ ହେ ମନୋରମା ।
ତୁମେ ଯେ କେବଳ ମୃତ୍ୟୁରେ ମୋର
ବୀମା-କମ୍ପାନୀ ଫର୍ଦ୍ଦ-ସୀମା ।

କିଏ ମରିହଜି କେଉଁଠୁ ମିଳେ ?
ଆଗୋ ବ୍ୟଥିତର ସ୍ୱପ୍ନ-ନୀଳେ ।
ମହତ ହରାଇ କିଏ ବିକି ହୋଇ ଜଗତ ଗିଳେ,
ପଶି ପଶି ଯାଏ ଲୌହ-ବିଳେ ।
ଦେଖିଦେବ କାଳେ ଘରଣୀ ମୋର ଗୋ,
ଜାଣିଯିବେ କାଳେ ସାଥୀଏ କାହୁଁ ।

ଆଖିରେ ଥାଉ ମୋ ତୁମ ଲାଗି ପଛେ
ତନ୍ଦ୍ରାଳୋର ଗୋ !
ଚାହୁଁ ନ ଚାହୁଁ
ତୁମକୁ ପଢ଼ି କି ଫେରାଇ ଦେବି ମୁଁ ?
ମକଚି ଦେବି କି ମାଟିର ମୁଠାରେ, ମରମେ ନେବି ମୁଁ ?
ରହିବି କିପରି ତୁମରି ବିନୁଁ ଯେ
ଅଦିନ-ଦିନେ
ଆହା, ପ୍ରବୀଣା ଗୋ ।–
ଅରସ କେଳିରେ ?
ଅପ୍ରବୀଣେ ?

ନାଇଁ, ନାଇଁ ? ଯଦି ଆସିବେ ଆଜି ଗୋ,
ଭୁଲ ଠିକଣାର ଡାକ ଲଫାପା ଗୋ
ହେ ମନୋରମା ।
ରହିଥା, ରହ ଗୋ,
ପଢ଼େ ମୁଁ ଥରେ–
ଆଜି ବେପାରୁଆ ରାସ୍ତା ପରେ
ଜୀବନ-ଉଦ୍ଧାଳି ତହଖର୍ଚ୍ଚର
ନୀତି-ନିକିତିରେ
ଶୂନ୍ୟ ଜମା
ହେ ମନୋରମା ।

ହେ ମାୟାମୟି !
ତୁମକୁ ତ କାହିଁ
କୋଟି ଝଞ୍ଜାଳେ ରଖିନି ମନେ ।
ବେଳେବେଳେ କିଆଁ ଝମକି ଉଠ ଗୋ,
ଶିରାରୁ ଶିରାରେ ଚମକି ଛୁଟ ଗୋ,
ଆଗୋ କୁହୁକିନୀ ।
କେଉଁ ଆତୁଆଳୁ ଅଧୀରେ ନଇଁ,
ହେ ମନୋମୟି ।



# ଆଜି ପୁଣି

ଆଜି କ'ଣ ଗୁମ୍ ଗୁମ୍ ହୋଇ ବାଜି ଉଠେ ମୁଁ
ଝାଇଁଝାଇଁଆ ହସ ଭିତରେ ତୁମର ?
ଯୁଗର ନେଞ୍ଜରା ସବୁ ପୋଛି
ସଂଜ ସଞ୍ଜୁଆ ସକାଳରୁ–
ଆଜି ପୁଣି ବୁଣି ବୁଣି ଯାଏ ନିଜକୁ,
ଡରଡରକୁଳା ଭ୍ରମ-ମୂଳରେ ତୁମର, ଗୋଟିକି ଗୋଟି ?
ପାଉଁଶିଆ ପାଉଁଶିଆ ଆଶାର ଖତ ହୋଇ
ଆଜି କଣ ପିଇ ପିଇ ଯାଏ,–
ପିଏ ମୁଁ ଲାଲ ଟହ ଟହ ଟାପରାକୁ ତୁମର !

ବୁଲେ ଯେତେବେଳେ
ହେମାଳିଆ ଅବିଶ୍ୱାସର ଗାଆଁକୁ ଗାଆଁ,
ଝୁଲେ ଯେତେବେଳେ—ନା, ଥକ୍କାରେ ନୁହେଁ ଆଦୌ–
ଗଳିକି ଗଳି
ସଂଶୟର ଦୋଳିରେ ତୁମର;
ନୂଆ ନୂଆ ଗୋଲାମୀର ସହରରେ କେଉଁଠି,
ନିର୍ଲେପ କେତେ ହାତ ମଳି ମଳି ମାୟାରେ– !!
ପୋଛି ପାଛି ଦେଇ ମଲାଗଲା ଐତିହ୍ୟର ଖେଳକୁ,
କେଜାଣି କେତେ ଆଗତପ୍ରାୟ କି ଅନାଗତ ସ୍ୱପ୍ନର ବା !
ସୁରୁସୁରିଆ ରକ୍ତର ଝରରେ–

ହାଡ଼ର ଗୁହା ମୁହଁରେ ଲୁଚି ଲୁଚି ଛନକାରେ ସେଦିନ,
ଚଡ଼୍ ଚଡ଼୍ ହୋଇ ଫାଟିଥିଲି ମୁଁ ଠାଆକୁ ଠାଆ;
କେତେ କାଳର ସଂସ୍କାର-ପଙ୍କ ପରି ହୁଏତ
ଔଦାସ୍ୟର ଧାସରେ ତୁମର–
ଚିଡି ଚିଡି ହୋଇ ମଇଁଷିଆ ଚମଡ଼ାଟା ମୁଁ, ମୋର !
'ଆହା' ପଦେ ଶୁଣେଇଥିଲା କିଏ,
ସୁଖର ଜଞ୍ଜାଳରେ ମାତୁଁ
ତରାହୀନ ରାତିରେ ? କେଜାଣି !

କଟୁଆଳୀ କୋରଡ଼ାମାଡ଼ରେ ବିଦେଶୀର
ନୋଳାକୁ ନୋଳା ପିଠିରେ !
ଧାଉଁଥିଲି କାତରତାରେ ସେଦିନ,
ଯାତନାର ଝାଟିରେ ନଇଁ ନଇଁ
ବୁଦ୍‌ବୁଦ୍‌କିଆ ଦୁଃଖର କୋଇଲି-ଖିଆ କଣ୍ଠାରେ ଚିରି ହୋଇ;
ଦଳୁଆ ଦଳୁଆ ଆଖି ପାଖରେ କେତେ—
କାପ୍ରିର ବାହୁନା ମେଲି
ଓଲଟି ପଡ଼ି କାମୁଡ଼ିଥିଲି ନିଜକୁ !

—ଚାହିଁଚ ଭଲା କିଏ,
କଟାଶିଆ ଆଦରରେ ହେଉ, ଟିକିଏ ବୋଲି ଟିକିଏ ?
ମାନ କି ନ ମାନ।
ନଚେଇଁ ନଚେଇଁ ଚେଇଁଥିଲ ତମେ !
ସେ ଯୁଗର ଛନ୍ଦହରା ରାତିରେ ମୋର,
ଭୁଟୁ ଭୁଟୁ ହୋଇ ଖସୁଥିଲା—ସେତିକିବେଳେ ନା ?—
କୋଣାର୍କର ଅରସବୁ—ଛୁଟୁ ନ ଛୁଟୁ ଆକାଶରେ ?—
—ଆଜି ଯାର ପ୍ରେତକୁ ତୁମେ ସାଇତିଚ,
କି ପରିପାଟୀରେ ସତେ,
ବୈଠକଖାନାର ବୁକୁରେ ତୁମର, ନାଇଁ ?—
ଘୋଟି ଘୋଟି ଆସୁଥିଲା ଆଦିମତମ ଅନ୍ଧାର ପୁଣି
ବୈକୁଣ୍ଠରୁ ତୁମର !!

କଥାର ତାକୁଡ଼ିଟାକୁ ଘୂରେଇ ଘୂରେଇ, ସ୍ୱପ୍ନର;
ନାଟିକାର ଝୁଲାମୁଣିରୁ ମୋର—
ଛିଟକେଇ ଦେଇ ଦୁକ୍‌ଦୁକ୍ କେତୋଟି,
ଡାକି ଡାକି କହିଥିଲି ମୁଁ—
"ବନ୍ଦ କର ରେ ମମତ୍ୱରେ ଖଜଣା-ଦିଆ ତୁମର !
ରଦ୍ଦ କର ରେ ପୁଅଝିଅର ମଥା ବିକା ତୁମର !
ରୁଆଏ ବୋଲି ଲୁଣ ଲୋଡ଼େ, ଜୀବନ !
ଛେଲାଏ ବୋଲି ମାଂସ ଲୋଡ଼େ, ମୁକ୍ତି।"

ପୋଲା ପୋଲା କୌଳିନ୍ୟର ପୁରୁପୁରିଆ କୁଞ୍ଚକରେ–
ବି ଦର୍ପର ଓଲିପାଖେ ଠିକ୍
ଗଦାକୁ ଗଦା ଅଳିଆ ପୁଣି ଜମେ !
ପତିଆରାହୀନ ପ୍ରୀତିରେ ପଚ୍‌ପଚ୍
ସ୍ୱାଧୀନତାର କାରଖାନାରେ,
ଅରମା !

ଆଃ, ମର୍ତ୍ତ୍ୟର ପାରିଜାତ ମୋର !
ବ୍ରେକ୍-ଭଙ୍ଗା ସାଇକଲ୍‌ଟାକୁ ଡେରିଦେଇ–
ବିଷଣ୍ଣ କେତେ ବିଦ୍ୟୁତ୍‌ବାହୀ ଜିଭରେ ଚାଟିଚୁଟି,
ବୈଶାଖୀର ନିଃଶ୍ୱାସରେ ମୋର, ଝାଡ଼ିଝୁଡ଼ି,
ବୁଭୁକ୍ଷାର ଟକରାଳ ସବୁ–
ପୁଣି କଣ ଡାକୁନି ମୁଁ ?
ଡାକୁନି ?

ଜାଣେ,
କୁଆପଥୁରିଆ କୁସ୍ୱାର ଖେଳ ତୁମରି,
ଛାତିରେ ମୋର ବାଜେ,

ଝୁରୁଝୁରିଆ ବଉଳର ବିଛଣାରେ ଯେ ତେଣେ
ଆଜି ବି କଣ କାନ୍ଦି ଉଠୁନି ଲାମ୍ପଟ୍ୟର ଅରକ୍ଷା କଥା ତୁମର
ତ୍ୟକ୍ତା କେଉଁ ବାସନ୍ତୀ ?

ଆଜି ବି କଣ ଢୁଳଉନି ଅରୀତିର କଙ୍କର ଖାଇ–
ବାୟାଣୀ କେଉଁ 'ବାଟଭୁଲି' ଚଢ଼େଇର ବସାରେ–
ଲୁହ ଲାଳର ଛୁଆଗୁଡ଼ିକ ତୁମର ?

ଆଧାର ଆଣି ଦେଉ ଦେଉ ଭୟରେ ଛକପକ ତୁମେ !
ଘୁମଉଚ ଯେତେବେଳେ !
ଦେଉଳିଆ ଦେଉଳିଆ ବ୍ୟର୍ଥତାର ଖୋପରେ ସବୁ–
ଆଜି ପୁଣି ଲକ୍ଷ୍ୟ ମୁଁ
ହିଂସ୍ରତାର ବାଟୁଳିର, ତୁମର ?
ନାଇଁ ?

ଅଯାଚିତ କରୁଣାର ନିର୍ମ୍ମମ କାହାଣୀରେ
(ହାୟରେ, ନୂଆ ନୂଆ ସମାଜର ଗୃଧ୍ର ମୋର !)
ଛେପ ଆଉ ଖଙ୍କାରର ଆଶୀର୍ବାଦ ଝରୁଚି ତୁମର, ଝରୁ !
ଖଇ ହୋଇ ଝରିଥିଲି ମୁଁ, ଶୁଭ୍ରତମ ବେହିସାବୀ ହସରେ କେତେ ।
ଆଜି ବି କଣ ଝରେ ନା ମୁଁ–
ଦୁର୍ନୀତିର ଯୋଜନାରେ
ପର୍ଯ୍ୟୁସିତ ଆତ୍ମାର ସହ
ଆତ୍ମାର ଉଦ୍‌ବାହରେ ତୁମରି– ?

ସ୍ନେହର ଗାରୁଡ଼ିରେ ଜଡ଼ି,
ଧୋକଡ଼ୀ କେଉଁ ଖୁଡ଼ୀ କି ମାଉସୀର
ବଂଶୀର ସ୍ୱନଟିଏ ପରି,
ଆଦିମ ନିଃସଙ୍ଗତାରେ ନିମଗ୍ନ ମୁଁ
ସେଦିନ ଭଳି ତୁମରି ଆତୁରତାରେ,
ଆଜି ବି !
ବୁଝୁଚ ଭଲା ସଂବାଦ-ବିସଂବାଦର ପ୍ରଳାପରେ ତୁମର–

କିନ୍ତୁ କିଏ ମୁଁ ?
ମୁଁ କଣ ସିଏ ନୁହେଁ ? ତୁମରି–
ଶିରାଳ ଆକାଶରେ ତାରାର ଧକ୍ ଧକ୍‌ଟିଏ ଯିଏ,
ଝଡ଼ି ବି ଝଡ଼େ ନାଇଁ
ହୃଦୟଭେଦୀ କୋମଳ ଏକ ପୁଷ୍ପର, ତୀକ୍ଷ୍ଣତମ ସ୍ମିତି ଯାର,
ବିଳାସର କୀଟଗୁଡ଼ିକୁ
ଭକ୍ଷଣ କରେ ଯିଏ
ପବିତ୍ରତମ ସୌନ୍ଦର୍ଯ୍ୟର ମୋହରେ ?

ଦରଦର ପୋଡ଼ା ଚାଉଳର ରଙ୍ଗ ମୋର, ସତ,–
ଦୈନ୍ୟର ଜୟ ଜୟକାରରେ
ଭୂରୁଭୂରିଆ କଫିକପ୍‌ରେ ବୁଦ୍ଧିର ଫେଣ ହୁଏତ ମୁଁ
ପୋଷକୁ ପୋଷ ପିଏ ଯିଏ–
ଭର୍ତ୍ତାକୁ ଧିକ୍‌କାର ଯେତେ, ଭାର୍ଯ୍ୟାର,
ଭାର୍ଯ୍ୟାକୁ ପ୍ରହାର ଯେତେ, ଭର୍ତ୍ତାର ।

ମୁଁ କଣ ସେଇ ନୁହେଁ ତୁମର–
ଦାସତ୍ୱର ତୋଷାମୋଦରେ ଗୁମରି
ଘୃଣାର ଅହଙ୍କାରରେ–
କ୍ଷମତାର ବୀପ୍‌ସା ଯିଏ, ଅକ୍ଷମର;
ଉଦାର ଏକ ଅଜ୍ଞତାର ବର୍ବର ଅଭିସାର ପୁଣି ମଦ୍ୟପର,
ସୁରକ୍ଷାରେ ପ୍ରଗଲ୍‌ଭ ମୁଁ,
ଦୌରାତ୍ମ୍ୟର ପୁଲିଶ୍,
ସ୍ୱର୍ଣ୍ଣର କୁହେଳିରେ
ସୁଆଁର ରଣ ହୁଏ ଯିଏ ।

ତଥାପି....
ସେଇ ମୁଁ,..ତମେ,...ସେଇ...
ପ୍ରହେଳିକାରେ ସ୍ୱତ୍ର ମୁଁ
ନା, ନଇଁନି, ନଇଁନି ପତାକା ତୁମର
ସୁଦୃଢ଼ ଯାହାର ସାଧନାର ମୁଠାରୁ ।
ଆହ୍ୱାନରେ ଯାହାର,
ଆଜି ବି ଆନନ୍ଦରେ ମଚ୍ଛିତ ହୁଏ, କର୍ଷିତ ହୁଏ, ପୃଥ୍ୱୀ
ଆଜି ବି ନିର୍ମ୍ମଳ ହୁଏ, ଆକାଶ ।

ଏଃ, ହେଇ–
ନୂଆ ନୂଆ କାମନାର ପାର୍କରେ ତୁମରି,
ପୁଳାକୁ ପୁଳା ଦିନ ମକ୍‌ଚି ଗଡ଼ିଲି, ପୁଣି, ଗଡ଼େ ।
ଦିଅ, ମତେ ଗଡ଼ିବାକୁ ଦିଅ
ନିଜକୁ ନିଜେ ପାକୁଳି କରି ଗିଳିଚି ମୁଁ, ଗିଳେଁ ଟିକେ ଗିଳେଁ ।
ଅରମା ଅରମା ଭାବନାର ଶୀଷାକୁ ସବୁ ଚୋବେଇ ।
ନିଜକୁ ନିଜେ ଚୁଷିଚି ମୁଁ, ଚୁଷେଁ ।
ଅନହୁତି ସ୍ୱପ୍ନରେ–ଆଜି ବି– !

ରକେଟ୍‌ଟା ଉଡ଼ିଗଲା, କେଉଁଠି,
ଝାଡ଼ିଦେଲା ବୋମାଗୁଡ଼ାକ ହଠାତ୍,
ବିଦଗ୍ଧ ସୁରତିରେ ବୁଡ଼ିଲା ତାର ବଂଶ, ଏଇ ବୁଡ଼େ ।
ସ୍ୱପ୍ନର ମରୁରେ
ଲୁହ ଏ ତ
ଦୁର୍ବାର ନିଆଁର ଖାଲି ଢେଉ ।

ଚିତ୍ ହୋଇ ଦେଖୁଛି ମୁଁ, ଦେଖେ
ନେଳି ନେଳି ମୁହଁର ଆକାଶିଆ କୋଠାରେ
ଗୋଛାକୁ ଗୋଛା ତାପସୀର ଖୋସା ।
ହେଇ ଯେ, କିରି କିରି ହେଲା ଅଣଚାଷୀ ନୁପୂରଟା କାହାର
ରଣ ଝଣ କରି ଆପଣାକୁ ଆପେ ବଜେଇଗଲା
ଚେତନାର ଚଣାଚୂର ।
ଶହେ ଶହେ ମଜାର ।
ଚିରା ଚିରା ପକେଟ୍‌ର କାନ ପାଖରେ ଠିକ୍—
ଏ କି ଫୁଟ୍‌କିର ରେଓ୍ବାଜ୍ ।

କିଏ ଏମାନେ କିଏ ?—
ନା, ନା,....ମୁଁ ନୁହେଁ....ତୁମେ ନୁହଁ....
ଯୁଗର ସତ୍‌ରଞ୍ଜରେ
ଚମତ୍କାର
କିସ୍ତିମାତ୍ କରି ଖେଳାଳି ସବୁ—
ସଭାର ମଞ୍ଚରେ ଯେତେ କୃତ୍ରିମତାର ମୁଖା ?
କଳଙ୍କିଆ କାକୁତିର ଚାମୁଚ୍ ?
ଜିଙ୍କ୍ ଅକ୍‌ସାଇଡ୍ ଲେପରେ
କଣ୍ଟ୍ରୋଲହୀନ ପ୍ରୀତିର ପରମିଟ୍ ?

କାରବାରୀର କ୍ଲବରେ—
ସାଆନ୍ତର ଚଅଁରରେ ଯେତେ
ରାଜୁତି ଦରବାରରେ—
କିଏ ଏମାନେ, କିଏ ?

ଆମେଇ କ'ଣ ଏମାନେ ? ବ୍ୟଭିଚାରୀ, ଭ୍ରଷ୍ଟାଚାରୀ,—
ନଷ୍ଟିର ପଥରେ ସବୁ ଆଜି !
କାଲିର କର୍ଣ୍ଣଧାର, ଆଜିର ପଟତନ୍ ବା ତୁହାକୁ ତୁହା ତାଳିରେ ?
ଆଜି କ'ଣ ଘୁସୁଘୁସିଆ ଲାଞ୍ଛନାର ବର୍ଷା ଏଣୁ ରଙ୍ଗୀନ ?
ଶିରିଶିରିଆ ନୈରାଶ୍ୟର ଭାଷା ଏତେ ଉଷୁମ୍ ।

ହେଇ ରେ ମୁଁ
ମୁଠାକୁ ମୁଠା ବାଲି ଛାଟେ ସମୁଦ୍ରକୁ–
ଦୂରର ଚକ୍ରବାଳକୁ ଅନେଇ
ଶିଶୁଟିଏ !
ଓଁ କାରରେ ଅବାସ୍ତବ କୃଷ୍ଣନଗର କ୍ରୀଡ଼ା ମୁଁ–
ସହସ୍ରଦଳ ପଦ୍ମରେ
ହୁଏତ ମୁଁ ମୃତ୍ୟୁ ବୀମାର ଏଜେଣ୍ଟ ବା ତୁମର !
ଆଘାତ ପରେ ଆଘାତ ଖାଇ ତୁମରି,–
ବେଇମାନି ମାନସର ପଳାତକ ପଳାଶ ଆଜି ଭୀରୁ ?
ନବାୟିତ ଚାନ୍ଦାରେ କେତେ, ବିଲ୍ ମୋହରର ଧଳାରେ
'ଭୋଟ୍‌ର ସ୍ତୂପରେ–
ସମତାର ପ୍ୟାଟର୍ଣ୍ଣରେ ମୋର–
ଶୂନ୍ୟତାର ଡିଜାଇନ୍ ମୁଁ
ଅନ୍ନର ଆୟୁଷ ଲୋଡ଼ି
କେଉଁଠି ମୁଁ କେଉଁଠି,

ଦିଅ ମତେ ଅଙ୍କୁରିବାକୁ ଦିଅ–

ଆରେ ଆରେ !
ବିମୂର୍ତ୍ତ ଛାୟାଗୁଡ଼ାକ ଭିତରେ–
ରେସ୍ତରାଁକୁ ଖାଲି କରି ଚାଲିଗଲେଣି, ଚାଲିଯିବେ !
ବିଧାନୀ ଆଉ ବିଧାନର ଖରିଦ୍‌ଦାର ଦଲାଲ ସବୁ
ଜରୁରି !!
ନାସ୍ତମାନ୍, ଅସ୍ତିମାନ୍ କେଜାଣି କେତେ, ଦର୍ଶନର ।
ଏ ହେଃ କଫିର କାଣ୍ଟି !
ନାଡ଼ହୀନ କପ୍‌ରେ
ଥର ଥର ଓଠଗୁଡ଼ିକର ଏ କି ଝକ୍‌ମକ୍ ହସ ମା !
ନକ୍‌ସଲ୍‌ର !

/ ୨୧୦ /

ହେ ମୋର ସରଳ ସୃଜନାତୁର, ପ୍ରତାରିତ ବିପ୍ଳବର ସଂଗ୍ରାମୀ ତୁମେ !
ଖଣିରେ ଖାଦାନ୍‌ରେ, କ୍ଷେତରେ କାରଖାନାରେ–
ଭୟର ନିର୍ମୋକତଳେ, କୂଟତାର ଚକ୍ରରେ–
ବେଳେ ବେଳେ ସବାକ୍, ନିର୍ବାକ୍ ବେଦନାଗୁଡ଼ିକ ମୋର !–

ତୁମରି ଲାଗି, ତୁମରି
ଆଜି ବି ଅଡ଼ଢଙ୍ଗିଆ ଡେଙ୍ଗୁରାଟାଏ ମୁଁ
ଗୁମ୍ ଗୁମ୍ ହୋଇ ଆଜି ବି ବଜେଇ ହୁଏ ନିଜକୁ !
ତୁମରି ଲାଗି, ତୁମରି
ଆଜିବି ଉତ୍ତେଜିଆ ନୋଟିସ୍‌ଟିଏ ମୁଁ–
ସର୍ ସର୍ ହୋଇ ବାଣ୍ଟିଯାଏ ନିଜକୁ !

ପୁଳାକୁ ପୁଳା ଶୀଷା ଚୋବେଇ, ସ୍ୱପ୍ନର କେତେ ଭାବନାର–
ତୁଚ୍ଛ ଏକ ବିନ୍ଧାଣୀ ମୁକ୍ତିର,
ସ୍ୱର୍ଗ ଆଉ ନର୍କକୁ ଉଡ଼ାଇ–
ହୋ' ହୋ' ହସରେ ମୋର
ଚୁପ୍ ଚୁପିକା !



# ଶୋଷକ ହାତରେ ଲାଗିଲା ବେଡ଼ି

ଲଢ଼ି ଲଢ଼ି ନିତି ପଚାଶ ବରଷ
ଚାଲିଲୁ ଆଗେଇ, ଚାଲିଚୁ ଆଗେ !
ଅତୀତର କଥା ଅତୀତେ ହଜେ କି ?
ଆଜିର ଚଲାରେ ମରମେ କି ଆମ,
ରୁଧିରେ ପଖଲା ସ୍ମୃତି ଜାଗେ ?....

ଥାଉ ଅତୀତର ବେଦନା ଥାଉ ରେ
ନୂଆ ସାଧନାରେ
ନୂଆ ବୋଧନାରେ
ଦେଖୁଚୁ କି ଆଜି—
ଆମ ହାତୁଁ ଖସି ମାଲିକ ହାତରେ
ଲାଗୁଛି ବେଡ଼ି—
ଆମେ ଧରିଚୁକି ଆମରି ମୁଠାରେ
ଲୌହ ମୁଠାରେ—
ଜୀବନ ପୋଡ଼ି ?

କେବେ ଖରତରେ କେବେ ମଞ୍ଚରେ
ପଲ୍ଲୀ ନଗରେ—
ସମତାର ଲାଗି ପାଗଳ ଆମେ କି
ଶୋଷକ ଜନରେ ଯାଇଛୁ ବେଢ଼ି ?

ଆମେ କି ଦେଖୁଚୁ ଆମ ହାତେ ଆସେ
ରୁଚିରୁଁ ରୁଚିର ପ୍ରୀତି ଆଶ୍ୱାସେ—
ନବ ନିର୍ମାଣେ, ନବ ବିଶ୍ୱାସେ,
ଶାସନ ଡୋରି,
ନାହିଁରେ କାହିଁ,—

କଳ କଉଶଳେ ଦୁର୍ନୀତି ବଳେ–
ଭୁଲାଇ ଭଳାଇ,
ଆମ ସ୍ୱପନର ଦୁନିଆ ଜଳାଇ
କୁଟକପଟରେ ଅଶ୍ରୁ ଗଳାଇ ।
ଖାଇବ ଆମର-ଜୀବନ କୋରି ।

ଭିଏତ୍‌ନାମ୍‌ରେ ନାହିଁ ଯାର ଛାଇ
ଆମ ହାହାକାରେ–
କ୍ଷମତା ରଖିବ, ବୁଲେ ହାଇଁପାଇଁ–
ଆମରି ରକତ ପୋଛି ନିଏ ତାର ଯୁଦ୍ଧଖୋରି ।

ଆମେ କି ଦେଖୁଚୁ
ଆମର ବିଲରେ ଆମେ ବୁଲାଉଚୁ
ଜୀବନ ହଳ......
ଆମେ ଚଳାଇଲୁ
ଆମ କାରଖାନା ସ୍ୱପନ କଳ,
ଶିଳ୍ପପତିଏ ବଣିକ ବେପାରି;
ଚୋରା କାରବାରୀ;
ଖୋଲା ଦରବାରୀ,
ଆଜି କି ସକଳେ ମର୍ତ୍ତ୍ୟ-ସେପାରି ?
ଆମ ସରଜନା, ଆମ ଅରଜନା
'ନାହିଁ ମହୁ ନାହିଁ !'
ଚାଟିଲେଣି ସବୁ ଶୂନ୍ୟ ନେଡ଼ି ?

ପଚାଶ ବରଷ କାହିଁ ଚାଲିଗଲା ?
ଚାଲିଯାଏ କିକି ମୁକ୍ତି-ଉଜଳା
ଚଳାରେ ଅଚଳା ?....
କେତେ ପଚାଶ ତ ଆସିବ, ଯିବ,
ସବୁ ନିଭିଯାଏ, ରକତ ନିଭେ ନା,
ଯାବତ ଧରାରୁ ନ ତୁଟେ ଜୀବ ।

ରକତର ଧାରା        ଶିରାରେ ଶିରାରେ
ଲୁହର ଶିରାରେ
ନବ ସୃଜନୀରେ
            ନୁହେଁ କି ଏକା ରେ–
            ନୁହେଁ କି ଏକା ?
ଗଗନୁ ଗଗନେ        ସଘନୁ ସଘନେ
    ପ୍ରାଣର ପ୍ରତୀକ, ସେ ଅନଳୀକ,
            ଉଡ଼ି ଉଡ଼ି ଖେଳେ
    ସଂଜୀବନୀ ସେ ସମତା-ଲେଖା ।

ପ୍ରକୃତି ରାଣୀ                ନିଗୂଢ଼ କାହାଣୀ–
                            ଦେଉଛି ଫେଡ଼ି–

ଶତ ଉତ୍‌ପାତେ
ଶତ ବିତ୍‌ପାତେ,
ପଚାଶ ବରଷେ        ଆମ ହାତୁ ଖସି
                ମରଣ-ହାତେ କି ଲାଗିଛି ବେଡ଼ି !



/ ୨୧୪ /

## ଧର ମତେ—

ମତେ କ'ଣ ଖୋଜୁଛ ଆଜି ?...ଖୋଜ !
ଯେତେ ଯେଉଁଠି ବିସ୍ରସ୍ତ ଆକାଶର ବିସ୍ତାର
ଅତର୍କିତ ଦେହ ମନର ରନ୍ଧ୍ରରେ,
ଘଡ଼ିକି ଘଡ଼ି, ଓଲଟ ପାଲଟ ଖରାବର୍ଷା, କାକରରେ...ଖୋଜ !
ଶବଦପରେ ଶବଦର ଅଶବଦର...ହସରେ ଉଡ଼ିଉଡ଼ିଯାଇ ଦିଗ୍‌ଦିଗନ୍ତରୁ—
ଗ୍ରହରୁ ଗ୍ରହାନ୍ତରରେ—
ଖୋଜ !
ଅତଳାନ୍ତ ଆଲୋକର ଅନ୍ଧାରରେ !

ଆତୁରତାରେ
ଖୋଜିଥିଲି ତୁମର ଚଳନିଶ୍ଚଳ ଅଧରକୁ
ଯେତେବେଳେ
ଦୃଷ୍ଟିର ଅବଶତାରେ ପଶି ତୁମର
ଖୋଜିଥିଲି ବାତୁଳତାରେ—
ତୁମକୁ—
ଖେଳିଥିଲି....ସେ କି ଲୁଚକାଳି, ସତେ !...
ବିମୂର୍ତ୍ତର !
ମୂର୍ତ୍ତର !

ସଲ୍‌ସଲେଇ ନିଃଶ୍ୱାସରେ
ଦୁର୍ଦ୍ଦାନ୍ତ କ୍ରୋଧରେ, ନିଷ୍କପଟତାର
ତଟସ୍ଥ ଶ୍ରୁତି ପାଖରେ ତୁମର
ଯେତେବେଳେ
ଶୁଣାଇଥିଲି ମୃଦୁ ନିର୍ଦ୍ଦୟ କାରୁଣ୍ୟରେ—

"ଅପସ୍ୱପ୍ନର ଅଭିଶାପରୁ ନିଜର
ମୁକ୍ତ ହୁଅ, ଅବାରିତ ହୁଅ, ବନ୍ଧୁ—"
ଠୁକ୍ ଠୁକ୍ କରି ଜଞ୍ଜାଳର ପଞ୍ଜରାଗୁଡ଼ିକୁ ତୁମର
ଠାରିଥିଲି କଠୋର କୌତୁକରେ ମୁହୁର୍ମୁହୁ !
"ଆସ, ଅତୀତ ଓ ବର୍ତ୍ତମାନର ଗିରିସଂକଟ
ପାର ହୋଇଯିବା, ଆସ।"

ଚଂପକର ଚିତ୍ତଚିମାନ,...କି କଜ୍ଜଳମୟ ସତେ !
ପ୍ରତିଫଳନ ଏବେ ବି ତାର ମନମେରୁର ହିମାନୀର ତଳେ ତଳେ ବା ?—
ଘମାଘୋଟ ଘମଣ୍ଡିରେ ଖେଳୁଥିଲା—
ପାଉଁଶର ଦରଦରପୋଡ଼ା ମାଂସର ମେଘ—
କେରିକେରି କାଞ୍ଚନର କେଶ ବା କାହାର ?
ତାକୁ ପୁଣି ହଟାଇ ଦେଇ ସେ କି ପ୍ରତିରୋଧରେ
ତୁହାକୁ ତୁହା ଛୋଟ ବଡ଼ ଷ୍ଟାଲିନ୍‌ଗ୍ରାଡ଼ର ଆଗ୍ନେୟ ତୋଫାନ୍।
ଗୁଧ୍ରଶିବାର ମହୋତ୍ସବର ବସ୍ତୁ ତମେ,
କେଜାଣି କେତେ ଗଙ୍ଗା ଆଉ ଗୋଦାବରୀ, ଚିଲିକାର ତଟରେ।
ଦେଖନ୍ତ କିପରି, ଶୁଣନ୍ତ ବା କିପରି,
ବେୟୋନେଟ୍‌ର ସାମ୍‌ନାରେ ମୁଁ...,
ଝନ୍‌ଝନି ଚିତ୍କାର ମୋର !

ଦିନାନ୍ତ ପରେ ଦିନାନ୍ତରେ କେତେ—
ଖୋଜ ତମେ, ସତେ କ'ଣ ଖୋଜ ଆଜି ?
ରକ୍ତରେ ଅଙ୍କୁରିତ ହୋଇ
ଭିଏତ୍‌ନାମରେ
ମୁକ୍ତ ହୋଇ ନିହତ ହୋଇ
ନିଶ୍ଚେତ ଚିଲି ଆଉ ବିବ୍ରତ ବାଂଲାରେ—
ଏଇ ଏଇ ପୁନରୁନ୍ମେଷରେ ଲକ୍ଷ ଲକ୍ଷ ନେରୁଦାର ?

/ ୨୧୬ /

ଠିକ୍ ପାଇଚ, ଠିକ୍ ଠିକଣାଟା ମୋର ?
ଯେଉଁଠି ଶୈବାଳମୟ ବିଭଗ୍ନ ପରଂପରାର ପ୍ରାନ୍ତିକ ମୂର୍ତ୍ତି ତଳେ
ସଂସ୍କୃତି ଦଂଶନ କରେ ସ୍ୱପ୍ନକୁ...।
ଡଲାରର ମାୟାରେ ଯେଉଁଠି
ଡ୍ରାଗନ୍ ହସେ ତନ୍ତ୍ରର ସଂତୃପ୍ତି।

ଜୀବନଗ୍ରାସୀ ନୃତ୍ୟର ଢେଉ—
ବାଲୁକାର ପ୍ରାନ୍ତରରେ ଦ୍ୱୀପ,
ଡିଆଗୋ ଗାର୍ସିଆର—
ଠିକ୍ ପାଇଚ, ଠିକ୍ ଠିକଣାଟା
ଆଫ୍ରିକାର ନିଘଞ୍ଚ ଅରଣ୍ୟର
ଶ୍ୱାପଦର ସଂଚାରରେ
ନିର୍ଭର, ସେ କି ସ୍ନେହାଞ୍ଚିତ
ସମ୍ଭାଷ !
କେଜାଣି କେତେ ସ୍ମୃତିର ସୂକ୍ତି—
ଅସଂବୃତ ସଂବିତ୍‌ର—
ଠିକ୍ ପାଇଚ, ମୋର ବାର୍ତ୍ତା...ଠିକ୍।

କିନ୍ତୁ ମୁଁ, କେଉଁଠି ମୁଁ ?
ସଂକଳ୍ପର ସମ୍ବୋଧନରେ, ନୂତନ...
ଧର ମତେ..
ଧର ତୁମର..
ଅନିର୍ବାଣ ନିଜକୁ ! ଭଲା..ଧର...ଥରେ ଧର।



# ଉଡ଼ନ୍ତା ଏକ ଚୁମ୍ବନ ମୁଁ

ମୁଁ କ'ଣ କିଛି ନୁହେଁ?...ବିଦ୍ୟୁତୀନ ଗୋଟିଏ ?
ହାତୁଡ଼ିର ଶୀତ୍କାର, ଯନ୍ତ୍ରଣାର ଶାସ୍ତିରେ ?
ସର୍ ସର୍ ରେଞ୍ଚର ଅଶ୍ରାନ୍ତ କାନ୍ଦରେ
ହସର ଶୂନ୍ୟତା ଖାଲି, ଲେଖନୀର ?

ମୁଁ କ'ଣ କିଛି ନୁହେଁ। ଋଣାତ୍ମକ ବିଦ୍ୟୁତୀନ ଗୋଟିଏ !
ଖୁବ୍ ହେଲେ ତାରକସୀ ବ୍ରୁଚ କି ଟାଇପିନ୍।
ଆକାଶ-ଖିଆ କୋଠାରେ ଅତୀତର ହୁଡ଼ା ମୁଁ;
ଦୁର୍ଗନ୍ଧିର ଆଲୋକରେ ମହିମାର ତୂରୀ—
ନହେଲେ ବା କଂକତିକା ମୁଁ କୈଶିକ ଆକର୍ଷଣୀକୁ
ଉପହାସ କରି ତନ୍ୱୀର— ?

କିଛି ତ ମୁଁ ନିଶ୍ଚୟ !!
ଅଭାବନୀୟ ବ୍ୟସ୍ତତାରେ ଅବ୍ୟକ୍ତର ବୁଭୁକ୍ଷାରେ
କିଛି ତ' ମୁଁ ନିଶ୍ଚୟ।
ନିଜଠାରୁ ମୁଁ କ'ଣ ବିଚ୍ଛିନ୍ନ ଆଜି ସତେ...
ଶଙ୍କରଙ୍କ ଆତ୍ମା ପରି, ବିଲଗ୍ନ ମୁଁ ଲଗ୍ନରେ ?
ବିଜ୍ଞାନୀର ଭାବନାରେ ନିମଗ୍ନ ଏକ ସ୍ୱାର୍ଥର ଜିପ୍‌ସି ?

ନା, ନିଜକୁ ବିଚ୍ଛିନ୍ନ କରି ନିଜଠାରୁ, ଅସହାୟ ମୁଁ ସବଳ,
ଗୋଟିଏ ବୋଲି ସ୍ୱର ମୁଁ ବିକୃତିର ମନୋଟନିରେ
କିଛି ତ ମୁଁ ନିଶ୍ଚୟ !

/ ୨୧୮ /

ଘୃଣାରେ ତାଚ୍ଛଲ୍ୟରେ ଉତ୍ପୀଡ଼ିତ ମୋ ରାତ୍ରୀ
ରକ୍ତାକ୍ତ ମୋ ଦିବା...
ଜୀବନର ଜ୍ୱାଳାରେ ଜର୍ଜର ମୁଁ
ଉଡ଼ନ୍ତା ଏକ ଚୁମ୍ବନ ତ' ମୁଁ ?
ଚୁମ୍ବନ !!! ରାସ୍ତାର ମର୍ମରେ—
ବିଯୋଗୀ ଏ ଯୁଗର !



# କଥାଟିଏ ଗାଏ ବସି

ଅନ୍ତନାଡ଼ି ମୋ ଦୁହିଁ ଓଟାରି ମୁଁ
କଥାଟିଏ ଗାଏ
ପ୍ରାଣର ପ୍ରଚାରେ
କଥାଟିଏ ଗାଏ ବସି— !

ଝୁମୁ ଝୁମୁ ଝୁମୁ ହଜିଲା ନୂପୁର
ସତେ କି ବାଜିଲା କାହିଁ—
କେଉଁ ଖୋଜିଲାର ପାଇଁ;
କେତେ ମଗୁଶିର ପକ୍ୱଧାନରେ
ଟୋପି ଟୋପି ଟୋପି
ହୃଦୟ ପଡ଼େ କି ଖସି—
କଥାଟିଏ ଗାଏ ବସି— !

ଶିଶିରୁଁ ଶିଶିରେ
ଅରୁଣିମା ତୀରେ
କିଶୋରୀ ଉଷାର
ଚପଳ ଚିବୁକେ ହସି—

କଥାଟିଏ ଗାଏ—
କଥାଟିଏ ଗାଏ ବସି !
ଶୁଣ କାନ ଡେରି ଶୁଣ
ବହୁ ବର୍ଷିଲା ବେକାରୀ ଆଶାର
ସେ କି ଅଣାକାରୀ ଉଷା !
ଶାଶ୍ୱତୀ ମୋର ପ୍ରୀତି ଶହୀଦର
ଯୁଗ ଯୁଗ ପାରେ, ସ୍ୱପ୍ନ ବିସାରେ
ସତେ ନ ତୁଟିଲା ତୃଷା !

/ ୨୨୦ /

ଶତ ବାତୁଳତା ବିଭ୍ରମ ମେଳେ
ଆକାଶେ ଲୁଳିନି ହସି ?
—କଥାଟିଏ ଗାଏ ବସି !

ନୁହେଁ ନୁହେଁ ଏ ତ ସଗୁଣ ବ୍ୟଥାରେ
ନିର୍ଗୁଣ ମନ ଘୂଣ !
ଶୁଣ କାନ ଡେରି ଶୁଣ ।

ଶୁଣି ତ ଶୁଣିନ କାଲି ରଜନୀରେ
ସାଥୀ ସଜନୀରେ
ଡାକି ଡାକି ଗଲି,
କେତେ ଯେ ମୂର୍ଚ୍ଛାହତେ—

"ହେଇ, ଚୁପି ଚୁପି, ହେଇ ଛପି ଛପି,
ବୁଲୁଚି ଘାତକ,
କର୍ମେ ପାତକ,
କାହିଁ ଅସ୍‌ଉଇକ୍, କାହିଁ ନାଗାସାକୀ
—ଜୀବନେ ଜୀବନେ ମରଣର ସାକ୍ଷୀ—
ହେଇରେ ରହିଚି
ଗ୍ରାସିବାକୁ ଟାକି—।
ଛନ୍ଦ ଯତିର, ପୁଞ୍ଜି ପତିର
ନୀଳ ପୂର୍ଣ୍ଣିମା ପଥେ—!"

ଦେଖି ତ ଦେଖିନ
ଅକାଳେ କାଳର ଖେଳରେ ବିଟୋଳ
ଫିଟାଇ ଲୋଟାଇ
ତୃଷ୍ଣା ନିଚୋଳ
—ଆସୁରୀ ରୀତିର ରୋଳରେ ନିରୋଳ ।
ଚକ ଚକ ଚକ ସାଜି କୃତ୍ରିମେ
ତୁମ ଚର୍ମିଳ ଚେଲେ—

ଦେଖି ତ ଦେଖିନ
ତୁମ ପାଶେ ପାଶେ,
ଅଶ୍ଳୀଳ କେତେ ହାସ-ପରିହାସେ
ଚେତାଇ ଦେଇ ମୁଁ ଚମକେ ଚମକେ
ଠାରିଅଛି ଅବିରତେ—

ତୁମ ନିପୀଡ଼ିତ ଆତ୍ମାର ବାଣୀ...
ମୁଁ ଯେବେ ଗାଇଚି
ବନ ବିଲେ ତୁମ
ମୁଁ ଯେବେ ଗାଇଚି ଏକା ।

ଦେଖାଇ ଦେଖାଇ ଚକ୍ରବାଳରେ
'ନିଶ୍ଚେତନରେ ନବ ଚେତନାରେ ଲେଖା !
ନିର୍ଯ୍ୟାତନାରେ ମଥିତ ମନରେ
ତୁନି ଚିତ୍କାରେ

ଚମକିଲ କାହିଁ ନିମେଷଟିଏ କି ।
ଅହେତୁ ଭୟରେ
ତୁମେ କି କିଳିନ ଦେହ ?
ଜାଣି ତ ଜାଣିନ
କେତେ ସ୍ୱୈରିଣୀ ଶାସନେ ଶାସନେ
ସେ କି ଲୋଲୁପୀର ଲେହ—

ଶୁଣି ତ ଶୁଣିନ—
ମୋ ଡାକ ଭେଦିଛି ଲୌହ, ପାଷାଣ
ଅତଳ ବାରିଧି ଗର୍ଭ,
ବିହ୍ୱଳିତ କରି, ବିଚଳିତ କରି,
ବିଦଳିତ ଯେତେ ଦର୍ଭ !

ଡାକିଚି ଯେବେ ମୁଁ
''—ସରିନି ସରିନି ସରିନି ସମର ଆରେ !
ଲୁପ୍ତ ହୋଇନି ଦାରୁଣ ଦୁଃଖ ରାଶି ?
ସ୍ୱର୍ଣ୍ଣ ସଉଧୁଁ ମଧୁ ମନ୍ତ୍ରଣା ସୁରେ
ମୃତ୍ୟୁ ଆସୁଚି ଭାସି !'

ଏ କି ଆନନ୍ଦ— ଏ କି ଆନନ୍ଦ ଆଜି !
ସଂକେତ ମୋର ମନ୍ଦ୍ରେ ଉଠିଲା ବାଜି ।
ଭାଜିଚି କି ସତେ ତୁମ ବିକୃତିରାଜି ?
ବୁଝି ବୁଝି ସତେ ଛିନ୍ନ କରିଚ ବିଭ୍ରମ-ଜାଲରାଜି ।
ଭିଏତ୍‌ନାମରେ ମୁହିଁ କି ଯୁଝିନି
ହଟାଇ ହଟାଇ ନବ ନାତ୍‌ସୀରେ—
ଘାତ ପ୍ରତିଘାତେ,
ସମ ପଦପାତେ ବୀର ସୈନିକ ସାଥେ ?

ମୁହିଁ କି ଚୂରିନି କେତେ ଆଣବିକ ବଳ,
କେତେ ଯନ୍ତ୍ରଣା-କଳ,
ରଖିନି ହାତ କି
ଚିଲ୍ଲିରେ ମୁହିଁ, ରକ୍ତ ସରିତେ
କେତେ 'ନେରୁଦା'ର ହାତେ ?
ଧ୍ୱଂସ କରୁନି ଗୁପ୍ତ ଘାତକ କ୍ଷମତାତନ୍ତ୍ରୀ, ଖଳ !

କେତେ ଅଭାଗୀର ମନ-ସଂପୁଟୁଁ
ଶୁଭ ସିନ୍ଦୂର ଆଣି—
ଖୋଲି କି ଦେଇନି ବାଂଲା ବଧୂର ବୁର୍ଖା ଉଡାଲୁଁ
ପ୍ରୀତି-ମେଘନାର, ପ୍ରୀତି-ପଦ୍ମାର ବାଣୀ !

ମୁହଁ କି ଲଢୁନି !
ଯୁଗର ଆକୃତି ରହି—
କେତେ 'ବାପୁଜୀ'ର ରକ୍ତ-ଗୀତିରେ,
କେତେ 'ମୁଜିବୁର'
ଅମର ଆତ୍ମା ବହି— !

ମୁହିଁ କି ନୁହେଁ ରେ ଯୋଦ୍ଧା ଜନ ସେ ଗଣତନ୍ତ୍ରୀର
ଯିଏ ହଜିଗଲେ ଲାହୋର ସମୀପେ—
ଯିଏ ଜଳିଗଲେ ତୁଷାର ଚିତାରେ,
ଲେଖିଗଲେ ନୂଆ କୋରାନ୍ ଗୀତାରେ
ମୁକ୍ତି ସମରାନଳେ....

ଖୋଜି ଖୋଜି କେତେ ସ୍ନେହର ସିତାରେ !
ଯିଏ ରଖିଗଲେ ନୂତନ ଜୀବନ
କୃଜନୀ ସ୍ୱପ୍ନ-ଦଳେ
ଖଣି ଓ ଖାଦାନ ତଳେ—

କୋଟିକର ଲାଗି ଗୋଟିଏ କହିବ କଥା !
ବହିଥିବୁ ଆମେ ତାହାରି ସ୍ୱର୍ଣ୍ଣ ଛତା !
ତାହାରି ହାତରେ ଟେକିଦେବୁ ଆମ ମଥା !
—ଆମ ଉନ୍ନତ ମଥା ?

ସାମ୍ୟର ନାମେ ବିଭେଦ ହତ୍ୟା ବୁଣି
ଜାତିର ଛାତିରୁ ମାଂସ ଖାଏ ଯେ ଝୁଣି—

ସ୍ୱାଧୀନତା ନାମେ ସ୍ୱାଧୀନ ଚିନ୍ତା ସ୍ୱାଧୀନ ବାର୍ତ୍ତାଜାଳି
ବଜାଇ ବଜାଇ ଗଣତନ୍ତ୍ରର କବର ଉପରେ,
ରଣତନ୍ତ୍ରୀର ତାଳି-
ମୁହଁ କି ଦେଉନି ତାହାରି ଦର୍ପ ଟାଳି ।

ଶାନ୍ତ ସରସ କଣ୍ଠୁ ଯାହାର,
ପ୍ରାଣର ବାର୍ତ୍ତ ଝରେ
ସବୁଜ ଲାସ୍ୟେ—
ନିତି ସୃଜନର ଅସରା ଆର୍ତ୍ତି ଥରେ !

/ ୨୨୪ /

ସେହି କି ନା ତମେ ?
ଜାଗିଚ ଆଜି ହେ—
ହାଣିବ ଆଘାତ
ବଜ୍ର ଆଘାତ
ଶତ ଆତତାୟୀ ହତ୍ୟାକାରୀର ବୁକେ—
ଆଣିବ ନୂତନ ଯୁଗ-ସଂଳାପ
ନିର୍ବାକ-ଧରା ମୁଖେ ।

ଭିତରେ ଶତ୍ରୁ, ବାହାରେ ଶତ୍ରୁ !
ରହରେ ତିଆର୍ ରହ !
ମୁକ୍ତିରେ ତୋର କର ଅକ୍ଷୟ !
ନବ ଏକତାର ନବ ସଭାର
ଆରେ ନିର୍ଭୟ—
ଶାନ୍ତିକେତନେ— 'ବଜ୍ର' ମୁଠାରେ
ସାମ୍ୟରେ ରଖ ଲୟ !

ଆଜି ଆନନ୍ଦ, କେତେ ଆନନ୍ଦ ମୋର—
ତୁମେ ଯେ ଶୁଣିଚ ଯୁଗ-ଆହ୍ୱାନ !
ମୋର ଆହ୍ୱାନ !
ତୋଳିଛ ଆକାଶେ, ମୈତ୍ରୀର ଗାନ
ତୁମ ପଚ୍ଛଆରେ
ଚାଲିଛି ମୁହିଁ ଯେ—
—କିଏ ମୁହିଁ, କିଏ ମୁହିଁ ?
ମୁହିଁ କି ନୁହେଁ ହେ ତୁମରି କର୍ମ,
ନର୍ମଲୀଳାରେ ତୁମରି ଧର୍ମ
ତୁମରି ସ୍ୱପ୍ନ କୁସୁମେ କୁସୁମେ—
ତୁମରି ପୁଣ୍ୟ ଭୂଇଁ !!
ନିତି ତାରୁଣ୍ୟର ତୃଷାରେ ତୃଷାରେ
ମୁହିଁ କି ଖେଳୁନି
ତୁମ ଭବିଷ୍ୟ ଛୁଇଁ ।



# ମୁଁ ଆଜି ମଳୟ ଡାକେ–

ମୁଁ ଆଜି ମଳୟ ଡାକେ !
ଡେସ୍କରେ ନାଚେ କି ଟିପ,
ଟେବୁଲ ଉପରେ ତୁମ...?

ବେଣୁରେ ବିଭାସ ଧରେ
ମନର ଅରଣ୍ୟେ କଥା–
ମାଦଳେ ତ୍ରିତାଳ !

ମୁଁ ଆଜି ମଳୟ ଡାକେ !
ଅତନ୍ଦ୍ର ଆଳସ୍ୟେ ତୁମ ପ୍ରୀତିର ପ୍ରତାଳ !
ଖୋଲି କି ଖୋଲିନି ଆଖି ଚୈତ୍ରର ସକାଳ ?

ମୁଁ ଆଜି ମଳୟ ଡାକେ
ଇମନ୍ କଲ୍ୟାଣ ଇଡ଼ି
ଅଶ୍ରୁତି-ଶ୍ରୁତିର ତଟେ,
ନିବିଡ଼ ନର୍ମରେ ଭିଡ଼ି
ସ୍ମୃତିର ବିସ୍ମୃତି ପଟେ ।
ଶିଥିଳାଇ ଭୁଜ କେତେ
ମୁକୁଳାଇ କେଶ-ପାଶ
ରତି-ଉନ୍ମନାର–

ମୁଁ ଆଜି ମଳୟ ଡାକେ
ଗୀତି ଗୁଂଜରଣେ ମୋର
ରୀତି ମୁଂଜରଣେ–
ତୁମରି ନିଃଶ୍ୱାସ ମୁଁ ଯେ
ଆତୁରୁ ଆତୁର ତୁମ
ଉଷ୍ଣ କାମନାର !

/ ୨୨୬ /

ଶମାଇ ଶମାଇ ଜ୍ୱାଳା
ଯୋଗ-ବିଯୋଗର ଯେତେ,
ତୃପ୍ତିର ବିଷାଦେ ପୁଣି,
ନିଥର ଆହ୍ଲାଦେ—
ପ୍ରୀତି ଆଭୋଗରେ ତୁମ !—
ମୁଁ ଆଜି ମଳୟ ଡାକେ—

—କାହିଁରେ ଆଶୋକା କାହିଁ
ଗୈରିକ ବିଳାସେ
ସ୍ତନର ସ୍ତବକେ ଚାହିଁ....
ବୈରାଗ୍ୟ ବାସନା ମେଳେ
କାହିଁ ରେ ପ୍ରଦାହ କାହିଁ—
ଦେହୀ କି ବିଦେହୀ ପାଇଁ—
ନିଃସ୍ୱର ନୟନ ତୀରେ
ନଗର ପଲ୍ଲୀରେ—

—କାହିଁ ରେ ପଳାଶ କାହିଁ,
ଶୈଳେୟ ଶେଯରେ ହସି
ଦୂରନ୍ତ ତେଜରେ ତାର ଆରକ୍ତ ଫୂର୍ତ୍ତିରେ
ଦୋହଲାଇ ବସନ୍ତର ଅମୂର୍ତ୍ତ ମୂର୍ତ୍ତିରେ
ରିରଂସୁ ବଲ୍ଲୀରେ—

—କାହିଁରେ ଦ୍ୱିରେଫ ଲୀଳା
ନିଶାର ସରୋଜେ କାହିଁ—
ଉଷାର ଆଲୋକ ଆଶେ
ତୁଷାର ତୃଷାରେ କେତେ—
ମୃଦୁ ଆମନ୍ତ୍ରଣେ ମୋର ।
ସାଧୁ ନିୟନ୍ତ୍ରଣେ... ।

—କାହିଁ ନବ କର୍ଣ୍ଣିକାର
ମୁକ୍ତ ଭର୍ତ୍ସିକାର ସତେ
ରୂପର ସଂଭାର–
ଦ୍ୟୁତିର ଦାକ୍ଷିଣ୍ୟେ ବହି
ସ୍ନିଗ୍ଧ ହାହାକାର–
ହେ ପଥୁକୀ, ପଥୁକିନୀ,
ହେ ବଂଧୁ ବାଂଧବୀ ମୋର
ଅପଥ ପଥରେ ଆଜି—
ଅରସ ରସରେ ହଜି ଅମତ ମତରେ
ଅଭିସାରେ ସ୍ୱପନର,—ଉପାସୀ ବ୍ରତରେ
ପାର୍ଥିବ କି ଅପାର୍ଥିବ–
ଅସତ୍ ସତରେ–

ମୁଁ ଆଜି ମଳୟ ଡାକେ,
ଥୟରେ ଅଥୟ
ନୟରେ ଅନୟ
ହୃଦୟୁଁ ହୃଦୟେ, ତୁମ
ବିକୃତିର ବ୍ୟବଧାନ ତୁଟାଇ ତୁଟାଇ
ଅସ୍ଫୁଟ କୋରକ ଭାଷା
ମିଳନେ ମିଶ୍ରଣେ କେତେ·
ଧୀର ସନ୍ତର୍ପଣେ
ଶିରାରେ ଶିରାରେ ତୁମ
ଅଧୀରେ ଛୁଟାଇ।

ମୁଁ ଆଜି ମଳୟ ଡାକେ–
ଫିଟି ପଡୁ ବେଦନାର ପ୍ରମତ୍ତ ଝରଣା !
ବିଗଳିତ ଚେତନାର 'ପ୍ରଣବ' ଆଶ୍ୱାସ ଯେତେ
ମୃତ୍ତିକାର ସ୍ତରେ ସ୍ତରେ
ତ୍ରିତାପ ହରଣା।

/ ୨୨୮ /

ତୁମେ କଣ ବର୍ଣ୍ଣହୀନ ଚିତ୍ର ସମାରୋହ—
ପଣ୍ୟ-ବୀଥିକାରେ ଖାଲି ସ୍ୱର୍ଣ୍ଣର ସମ୍ମୋହ
ତୁମର କପୋଳ ଛୁଇଁ
କ୍ରୀଡ଼ା କି ରଚେନା ମୁହିଁ...
ଚାହଁ କି ନ ଚାହଁ ମତେ
ପ୍ରୀତି ଉଚ୍ଚାଟନେ
ମୁହିଁ କି ମାତେ ନା ତୁମ
ହୃଦୟ ଲୁଣ୍ଠନେ— ?
ବେଣୁରେ ବିଭାସ ଆଣି
ମାଦଳେ ତ୍ରିତାଳ !
ଅଚେତ ନିମେଷ ତୁମ
କରେନା ବିଟାଳ ?

ଅନା, ଅନା,....
ଚକ୍ରବାଳେ—
ନିରୁଦ୍ଧ ଆକାଶେ ତୁମ
ଚୂର୍ଣ୍ଣ କୁନ୍ତଳରେ କା'ର ଲୋଳାଇ ଲୋଳାଇ
ଡାକେ ମୁଁ, ମଳୟ ଡାକେ
ଅତର୍କିତେ ପାଖେ ପାଖେ
ସୋଫାରେ ସୋଫାରେ ଅଫିସ ନିବାସେ, ତୁମ
ଯାନୁ ଯାନେ ଧୂଳି ସ୍ନାନେ
ଖଣିରେ ଖଳାରେ କେତେ ଅନୁକ୍ତ ପ୍ରୟାସେ
ଦୃଶ୍ୟାତୀତ ସୌରପୁରୀ ରଶ୍ମିଳ ଦୁକୂଳ ଯେତେ
କେଉଁ ଶ୍ରମଜୀବନୀର ଦୋଳାଇ ଦୋଳାଇ।

ମୁଁ ଆଜି ମଳୟ ଡାକେ—
ତୁମେ ତ ଭେଦିଲ କେତେ ଆକାଶ ନୀଳିମା,
ଆହରିଲ ବିଦ୍ୟୁତୀନ, ରତ୍ନ ଆକରିକ—
ତୁମେ ତ ମଛିଲ କେତେ ଅପୂର୍ଣ୍ଣ ପୂର୍ଣ୍ଣିମା !
ଅମାର ଗର୍ଭରେ ସତେ ଜୀବନ-ନୈରାଜ୍ୟେ
ସାଜିଲ ତ ସୁଜ୍ଞତାରେ କ୍ଷୁବ୍‌ଧ ନାଗରିକ
ନିଜର ପ୍ରତିମା ପାଶେ
ସ୍ତବ ପ୍ରାତ୍ୟହିକ !

ତୁମେ କି ଶୁଣୁନ ମତେ....କୁହୁର ନିଃସ୍ୱନେ
ଅନାମ୍ନେ ନିହିତ ଆତ୍ମା ।
ଲୁପ୍ତ ଅନଶନେ—
ମୁଁ ଆଜି ମଳୟ ଡାକେ....
ଖସାଇ ଉତ୍ତରୀ ଯେତେ କଳାଲଳନାର—
କୁଣ୍ଠିତ ମିଳନେ, ଯେତେ ଛଦ୍ମ ଛଳନାର—

ମୁଁ ଆଜି ମଳୟ ଡାକେ,
ଅପୂର୍ବ ବିଦ୍ରୋହେ...
ଅଶ୍ଳୀଳ ପୁଲକେ ଝୁମି
ନିର୍ଗଳ ଗଳିରେ ଚୁମି
ନିରନ୍ନ ଶିଶୁର ଶିରେ,
ଅବାଧ୍ୟ ମନନେ
ଅଭାବୀ ସଂସାରେ ପଶି—
ନୂପୁର ରଣନେ—

ମୁଁ ଆଜି ମଳୟ ଡାକେ—
ନର୍ଦ୍ଦମାର ପଙ୍କତଳେ...
କଳଙ୍କିତ ଅଙ୍କେ କା'ର
ପୁଣ୍ୟ ରେଣୁ ଲୋଡ଼ି...
ଭଗ୍ନ ପ୍ରତିଶ୍ରୁତି ଯାପି ଧର୍ଷିତ ବୁକୁରେ ନିଜ...
ଧୃଷ୍ଟ ପ୍ରଣୟୀର—
ଯେତେ ଯହିଁ ପ୍ରତାରିତା
ଭଗ୍ନ ଆଶା ଯୋଡ଼ି ଯୋଡ଼ି
ଆୟୁଷ ଅଛାରି ବସେ
ମଥା କୋଡ଼ି କୋଡ଼ି— ।
ମୁଁ ଆଜି ମଳୟ ଡାକେ
ନିଶ୍ଚଳ ଭୂରୁରେ ତାର
ମୁଗ୍ଧ ନିରାଧାର !

/ ୨୩୦ /

ମୁଁ ଆଜି ମଳୟ ଡାକେ
ଅଳସ ଶ୍ରମରେ ସତ,
ତୁହାଇ ତୁହାଇ...
ଯେ ଅଶ୍ରୁ ପାରିନି ବହି
ଭିଜାଇ ଉରୋଜ କାର
ସୁହାସ ବୁହାଇ ଥରେ
ସୁରସେ ପୂଆଇ—

ଡାକେ ମୁଁ, ମଳୟ ଡାକେ
ଫର୍ଣ୍ଣେସର ପାଖେ ପାଖେ—
ସଦ୍ମରେ କୁଟୀରେ କେତେ
ବନେ ବନାନ୍ତରେ ପୁଣି,
କେଦାରୁଁ କେଦାରେ କାହିଁ—
ସବୁଜ ପ୍ରାନ୍ତରେ
ନୁହେଁ ମୁଁ ଯେ ଅନିର୍ଣ୍ଣେୟ !—
—ଅଦୃଶ୍ୟ ରୁଧିର ମୁଁ ଯେ
ରସ-ସଂଭୂତିର ।
ପରାଗ-ପେଟିକା ଜୁରି—
ପ୍ରୀତି-ଆରତିରେ
ଅଧୀରୁ ଅଧୀର—
ନୃତ୍ୟେ ମୋର ଘୂରି ଘୂରି
ବୁଣିଯାଏ ଜୀବନ ମୁଁ
କୃତି-ସଂସ୍କୃତିର ।

ମୁଁ ଆଜି ମଳୟ ଡାକେ,
ପ୍ରାଣର ବିପ୍ଳବେ ମୋର...
"ଆସୁରେ ଶୈଶବ ନୂଆ— !
ଆସୁରେ କୈଶୋର,
ସ୍ନେହର ସାରଲ୍ୟେ
ତୃଷ୍ଣାର ତାରଲ୍ୟେ ଖେଳି,
ଆସୁରେ ତାରୁଣ୍ୟ ନୂଆ !

ନିଷ୍କଳୁଷ ପ୍ରଣୟର—ବିପୁଳ ପ୍ରବାହ ମେଲି !
ଅନ୍ନ ମୁଠିକ ତ ନୁହେଁ ଜୀବନ ସମ୍ବଳ !
ସୃଜନୁ ସୃଜନ ରାଗେ—ପ୍ରବଳ ପ୍ରବଳ
ଅନଶ୍ୱର ବାର୍ତ୍ତା ମୋର...

ଡାକେ ମୁଁ, ମଳୟ ଡାକେ,
——ପୃଥୀର କଟୀରେ ଆଜି
ଆଣବିକ ବେଦନାର ଆଗ୍ନେୟ ବଳୟ ଯେବେ !
ତୁମରି ପଞ୍ଜରା ତଳେ—
ମୋକ୍ଷରେ ପ୍ରଳୟ !—
ଡାକେ ମୁଁ ଯେ ମମତାର ମାଧୁର୍ଯ୍ୟେ ମଳୟ !

ମୁଁ ସିନା ଖେଳିଚି ବୋଲି,
ଫିଟିଥିଲା କୋଣାର୍କର ନଟୀର ନୟନ ଠାଣି ।
ନିଶ୍ଚଳ ଅଧର ପୁଟେ
ସ୍ମିତିର ରେଖାଟି !
ମୁଁ ସିନା ଖେଳିଚି ବୋଲି,
ଫୁଟିଥିଲା ବିଯୋଗିନୀ ଯୋଗିନୀ ସେ
'ହୀରାପୁରୀ' ଭିକ୍ଷୁଣୀର
ମୈସ୍ବରୀ ଲେଖାଟି !!

ଅମର୍ତ୍ତ୍ୟ ସୁଷମା ଲିହି ସେ ଶାଳ-ଭଂଜିକା, ଆହା !
କି ରସେ ରଂଜିକା !
ଯୁଗେ ଯୁଗେ ଅନାଘ୍ରାତା
ଶିଳ୍ପୀର ପ୍ରେୟସୀ— !
ପାଷାଣର ଗାତ୍ରେ ସେତ
ଅଭ୍ରମଭ୍ରମରେ ଆହା
ଅଳସ ରୂପସୀ !!

/ ୨୩୨ /

ମୁଁ ଆଜି ମଳୟ ଡାକେ
କୋମଳୁ କୋମଳ
ପୁଣି କଠୋରୁ କଠୋର
ଡେସ୍କରେ ନାଚେ କି ଟିପ !
ଟେବୁଲ ଉପରେ ତୁମ ?
ତୂଳିରେ ବର୍ଣ୍ଣିଳ ବ୍ୟଥା ?
ବେଣୁରେ ବିଭାସ ଥରେ,
ମାଦଳେ ତ୍ରିତାଳ ?

ନ ଖୋଲି ଖୋଲିଲା ଆଖି—
ଚୈତ୍ରର ସକାଳ !!



# ଟିକେ ଜଣାଣ—

—ଏଥିରେ ସନ୍ନିବେଶିତ ଲେଖାଗୁଡ଼ିକ ମଧ୍ୟରୁ ପ୍ରାୟ ସମସ୍ତ ହିଁ ଆମର 'ସାହିତ୍ୟ-ସମ୍ବାଦ ପରିବେଷଣ' କ୍ଷେତ୍ରରେ ସୁପରିଚିତ। 'ସହକାର', 'ଝଙ୍କାର', 'ନୂଆ ଦୁନିଆ', 'ପ୍ରତିବେଶୀ', 'ଜୀବନ ରଙ୍ଗ', 'ସୋଭିଏତ୍ ଦେଶ', 'ମହିଳା ବାର୍ତ୍ତା', 'ଅଧୁନା ଲୁପ୍ତ', 'ଏକଚକ୍ର' ପ୍ରଭୃତି ଯେଉଁ ଯେଉଁ ପତ୍ରିକାରେ ଭିନ୍ନ ଭିନ୍ନ ସମୟରେ ପ୍ରକାଶ ପାଇ ଧନ୍ୟ ହୋଇଛନ୍ତି, ସେହି ସେହି ପତ୍ରିକାକୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛନ୍ତି—ଉଲ୍ଲେଖ କରିବା ଯଥାର୍ଥ ମନେ କରୁଛନ୍ତି—''ଆମେ ତ ଧରିଛୁ କ୍ରିୟା'', ଚିର ସ୍ମରଣୀୟ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ତିରୋଧାନରେ ରଚିତ ହୋଇ 'ଉତ୍କଳ ସାହିତ୍ୟ ସମ୍ବାଦ'ର ସ୍ମରଣିକାରେ ପ୍ରକାଶ ପାଇଥିଲା—'ଭୂମିକା'ଟି ଲେଖକର ଅତି ଅନ୍ତରଙ୍ଗ ସୁବିଖ୍ୟାତ କବି ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ପ୍ରତି ଉଦ୍ଦିଷ୍ଟ ଥିଲା—'ଆଃ, ଶ୍ୱାସଟିଏ ଆଃ'—ଲେଖକର ମୂଳ ଇଂରାଜୀ କବିତା 'Sigh'ର ଅନୁବାଦ—ଅନ୍ୟ ଦୁଇ, ତିନୋଟି ବୋଧହୁଏ କେଉଁଥିରେ ଦେଖା ଦେଇ ନାହାନ୍ତି।

# ଉଭଟ

ଅଶୋକ କଢ଼ିର ଗୁଚ୍ଛଗୁଡ଼ିଏ
ମାଡ଼ି ଆସିଲା ଯେତେବେଳେ ଲହଡ଼ି ପରି
ନା, ଲାଜେଇ ଯାଇ ଭାଜି ପଡ଼ିନି ମୁଁ।

ଖେଳଉଥାଏ ମୂକ ମନର ମଞ୍ଜରୀ ମୋର
ଅଦେଖା ବୀଣାଟି ଧରି
ଝୁରୁ ଝୁରୁ କେଉଁ କୋଣାର୍କର କଟୀରେ,

ସେତେବେଳେ !

ଲୋଟିଯାଇ କୋଟି କୋଟି ନିଃଶ୍ୱାସର ନିଉଛାଳିରେ
ଆଉଜି ଆସିଲା ଯେତେବେଳେ ସେଗୁଡ଼ିକ
ଦେହର କୂଳକୁ ମୋର
ସ୍ନେହର ଆଲୋଡ଼ନରେ ମୁକୁଳେଇବା ପାଇଁ ମୋତେ
ବିକଳ ଏକ ମୋକ୍ଷର ଆକାଂକ୍ଷାରୁ
ନା, ଡରିଯାଇ ଝାଳେଇ ଯାଇ ନାହିଁ ମୁଁ !!

ସତ ଏ !

ମୁକ୍ତ ହୋଇ ସୁତୀକ୍ଷ୍ଣ ଆଲୁଳିରୁ ସେଗୁଡ଼ିକର
ଲୋତକର ଲବଣାକ୍ତ ହସରେ କେମିତି ଦେଖିଲି ମୁଁ
ଅଶୋକର ଗୁଚ୍ଛ ନୁହେଁ, ଶତଦଳର ପୁଞ୍ଜ ବା !

ଆଉ ମୁଁ ?– ପଥରର ମୃଣାଳକୁ କେତେ
ଚାଖି ନ ଚାଖି, ଛୁଇଁ ଛୁଇଁ, ଥରୁନି କଣ ଆଜି
ହଂସଟିଏ ମାନସର
ନିର୍ଯ୍ୟାତିତ ଆତ୍ମା କୋଟିର ହିମାଦ୍ରିର ଚୂଡ଼ାରେ ?

ହଁ, ଥରୁଚି ମୁଁ, ଦେହର ନୀରବ ମୁଖରତାରେ
ଚେତନାର ବିଲୁପ୍ତିରେ କ୍ଷଣକ ପାଇଁ।

ଆଖିର ଏକ ପ୍ରଗାଢ ଚୁମ୍ବନର ଚମତ୍କୃତିରେ ଅନ୍ଧାର।
ନିଷ୍କଳୁଷ ବ୍ୟଥାର, ଥୋପାକୁ ଥୋପା ନଚାଇ ଦେଇ ରକ୍ତ ପଳାଶ
ଥରୁଚି ମୁଁ
ଉଚ୍ଚାଟ ହୋଇ ତଲ୍ଲୀନ ବିହ୍ୱଳତାରେ, ତୃଷାରେ,
ମୁଁ ଆଉ ମୁଁର ସ୍ୱଚ୍ଛନ୍ଦ ସମାହାରରେ କେମିତି,
ଥରୁଛି ମୁଁ, ହସିବାର ପ୍ରୟାସରେ, ଅବ୍ୟର୍ଥ ବ୍ୟର୍ଥତାରେ,
ଅତୃପ୍ତ ଶିଶ୍ନଟି ପରି,
ଚାଗୁଳେଇ ହୋଇ ଚେହେଲିଆମିରେ ଏବେ
ଚତୁର ସୃଷ୍ଟିର ସମକ୍ଷରେ ନିଜର !!

କାନ୍ଦିବାର ଆୟସରେ ଛନ୍ଦି ହୋଇଯାଇ
ନିର୍ଲିପ୍ତ ବିଳାସୀଟି ପରି
ଫେରନ୍ତି-ଅନୁକମ୍ପାର ପାଖରେ ଦୋଚାରୁଣୀ ପ୍ରେୟସୀଟିର !!

ନା ହଜିନି ମୁଁ– ହରାଇ ଦେଇ ନିଜକୁ
ସୂର୍ଯ୍ୟର ଶୀତଳତାରେ
ବଳିଷ୍ଠ ଏକ ବାତୁଳତାରେ ଜ୍ୱଳନ୍ତ ମୁଁ !

ପରିପକ୍ୱ କୌତୁକରେ
ନିଶ୍ଚଳତାର ଦ୍ରୁତିମୟୀ ଗତିରେ
ଶହ ଶହ ସଂଘାତ ବହି ଝଡ଼ର
ଖେଳେ ମୁଁ ଖେଳେ,
ଭବିଷ୍ୟର କେଶର ଝରାଇ-
ଧୂଳିମୟ କୋଳରେ କେତେ ନିର୍ବ୍ରହ୍ମ ଆକାଶରେ
ଖେଳେ !

ଦିଅ ମତେ, ଦିଅ।
ଦରଦର ପୋଡ଼ା ଓଠଗୁଡ଼ିକ ଦିଅ, ତମର।
ମୁଁର ମୁଁ ଯେ ତୁମେ !
ବିଦ୍ଧ କରି ଅଶୋକର ଢେଉକୁ
ଓଲଟ ଯେତେ ପଦ୍ମର ନାରାଚରେ,
ମୁଁର ମୁଁ ଯେ ତୁମେ !!



# ମତେ କି ଚିହ୍ନିନ ତୁମେ

ନିଜକୁ ପଚାରେ ଆଜି, ନିଜକୁ ଉଚ୍ଚାରେ
ମତେ କି ଚିହ୍ନିନ ତୁମେ-
ନଗର ବସ୍ତିର କଣେ ବତୀ ଖୁମ୍ବ ପାଖେ ପାଖେ
ଡେରି ଦେଇ ଆପଣାକୁ ଗପେ ମୁହିଁ ମନେ ମନେ
ଭୂତିଆରି ଅମରୀର ଚେହେଲିଆ ବଣେ ବଣେ,
ଏ ଯୁଗର ଝାଳ ଯେତେ
ମାଖେ ମୋ ମୁହଁରେ ମାଖେ,
ସମୟର ଡ୍ରିଛକିରେ,
ଛକି ନ ଛକିରେ
ଆତ୍ମଭୁଲା ଜୀବନର କୁଟିଳ ପଥରେ
କେତେ ଅସତ୍ ସତ୍‌ରେ।

ମୋତେ କି ଚିହ୍ନିନ ତୁମେ–
ଧୀରେ ଧୀରେ ଅଧୀରେ ପ୍ରଚାରେ ମୁଁ ଯେ !
ନୁହେଁ ମୁଁ ଭିକ୍ଷୁକ ନୁହେଁ, ନୁହେଁ ମନ୍ତ୍ରୀ, ମିସ୍ତ୍ରୀ, ଅବା
ପଲିମର୍ ଖଦ୍ଦରରେ
କ୍ଷମତା ଇସ୍ତ୍ରୀରେ ନୁହେଁ ବକ୍ତୃତାର ଗଭା;

ନୁହେଁ ମୁଁ, ସ୍ତାବକ ନୁହେଁ ଫାଇଲ୍ ସ୍ତୂପରେ।
ନୁହେଁ ମୁଁ, ଘାତକ ନୁହେଁ, ସଦ୍ଧର୍ମୀ ରୂପରେ,
ମତେକି ଚିହ୍ନିନ ତୁମେ-
ଥାଏ ମୁଁ ପଲ୍ଲୀରେ ତୁମ ଅଶାର ଜନ୍ତାଳେ ସଢି,
କେତେ ଶୋକ ଶୋଚନାର, ଦଲିଲ କୀଲାଳେ
ନିଃସ୍ନେହୀ ସ୍ନେହରେ ଲେହି
ନିର୍ଭୂମିର ଅସୂୟା ଉଚ୍ଛାଳେ !!

/ ୨୩୮ /

ମୋ ପାଖେ ଜନନୀ ନାହିଁ, ନାହିଁ ରେ ଭଗିନୀ ନାହିଁ,
ତାତ କି ସୋଦର, ସାଥୀ, ନାହିଁ କେହି ନାହିଁ କାହିଁ।
ତଥାପି ମୁଁ, ଅତୀନ୍ଦ୍ରିୟ-ତତ୍ତ୍ୱେ ତିଳେ
(ଅତଥ୍ୟର) ତଥ୍ୟେ ଅବଗାହି
ନୁହେଁ ପାପୀ, ନୁହେଁ ଅନାଚାରୀ
ନୁହେଁ ମୁଁ, ଅସୁରୀ କାୟା ବିଧି ଅବିଧାନ।

ନ୍ୟାୟର ଆସନ ମଣ୍ଡି
ନୁହେଁ ମୁଁ ଅନ୍ୟାୟ-ଦଣ୍ଡୀ,
ଜର୍ଜରିଳ ପ୍ରାତରାଶେ ନୈଶ ପ୍ରଳାପନେ
ମୁଁ ଯେ ନିତ୍ୟ ଅନିତ୍ୟରେ
ଅମୂର୍ଚ୍ଛିତ ଜୀବନର
ଦୃପ୍ତ ଅଭିମାନ !

ସେଦିନ ଖେଳିଲି ଯେବେ,
ଘନ ଘୋର ଶ୍ରାବଣ ନିଶାରେ
ଉନ୍ମେଷିତ ଚେତନାର ଅତୃପ୍ତି ବିସାରେ,
କିଶଳୟ-କଳି ସମ ଛାଟି ମୋର ଅନୁପମ କର ଓ ପୟର,-
ଶୃଙ୍ଗ ପରେ ଶୃଙ୍ଗ କେତେ
ଶତ ଶୃଙ୍ଗ ସାମ୍ରାଜ୍ୟର ପଡ଼ିଥିଲା ଭାଜି,
ଭୟେ ଭୟେ ଧରିତ୍ରୀ କୋଇଲା
ଉଠିଥିଲା କାତରେ ଶିହରି,
"ଏ କି ରେ ଭୀଷଣ ସ୍ୱପ୍ନ ଗର୍ଭେ ଥିଲି ଧରି !"
ସେ କିବା ଅଧ୍ମାନେ ବାର୍ତ୍ତା
ପୁଣ୍ୟ ବେଦନାର ମୋର
କାମନା କାନ୍ତାରେ କେତେ ଉଠିଥିଲା ବାଜି !

ସରି ସରି ଆସିଥିଲା ନିଃଶାସନ ଶାସନାଶୟର
ଗୋଟି ଗୋଟି କୋଟିଏ ଶୃଙ୍ଖଳ ଛିନ୍ନ ହେଲା ତାହୁଁ,
ନଚାଇ ରଜତ ଊର୍ମି ମହୋଦଧି ଉଦ୍‌ବେଳନେ
କ୍ଷିପ୍ତ ରତ୍ନାକରେ

କେତେ ପୂଗ-ନାରିକେଳ ବନ ବନାନ୍ତରେ
ଯଚାଇ ହୃଦୟ ମୋର ଦେଶ ଦେଶାନ୍ତରେ
ନୀରନ୍ଧ୍ର ଅରଣ୍ୟେ କେତେ ଖର୍ଜୁର ବୀଥିର ମେଳେ,
ଯାଯାବରୀ ବାଲୁକାର ଝଟିକା-ନିଃସ୍ୱନେ କାହୁଁ।

ସେଦିନ ଖେଳିଲି ଯେବେ ସେ କି ସମାରୋହେ
ପ୍ରାଣର ଉଲ୍ଲୋଳେ
ଶିଳାୟିତ ଅତୀତର ଭାବନାର କୋହେ
ସେ କି ଭାବମୂର୍ତ୍ତି ମୋର
ପ୍ରସନ୍ନ ମଧୁର ହାସେ ଦୋଳାଇଲା ଫୁଲର ହିଲ୍ଲୋଳେ!

ତୁମେ କି ଚିହ୍ନିନ ମତେ—
ସେଦିନ ନମେଲୁ ଜ୍ୟୋସ୍ନା
ଭ୍ରାତୃଘାତୀ ଦାନବୀୟ କ୍ରିୟାର କ୍ରୀଡ଼ନେ
ଭାସିଲି ମୁଁ ରକ୍ତେ ସତ,
କେତେ ଶ୍ୟେନ, ଶକୁନର ଚଞ୍ଚୁର ପୀଡ଼ନେ -
କି କୁନ୍ତ ପରିଘ ହାତେ ଆସିଥିଲେ କେତେ କିଏ
କି ହିଂସାରେ ଘେରି!
ନିର୍ମଳ ରଶ୍ମିଳ ମୋର ଆନନ୍ଦ ନିହେରି,
ବ୍ୟର୍ଥ ଅଭିଯାନ
ଲଜ୍ଜାପାଇ ପରାଜୟେ ଯାଇଥିଲେ ଫେରି!
ଉଲ୍ଲାସର କେତନ ଉଡ଼ାଇ
ଖେଳିଲି ଖେଳିଲି କେତେ
ଚିନ୍ମୟ ରସରେ ମୋର ଏ ବିଶ୍ୱ ବୁଡ଼ାଇ!
ମତେ କି ଚିହ୍ନିନ ତୁମେ
ଛନ୍ଦ ଅଛନ୍ଦରେ ନିତି ଦ୍ୱନ୍ଦ ଅଦ୍ୱନ୍ଦରେ
ସେହି ମୁଁ ଥରୁଛି ରୋଷେ—
ଆଣବିକ ପଶୁତ୍ୱର ହିଂସ୍ର ମନ-କୋଷେ
କି ଆଗ୍ନେୟ ତୃଷା ଲହ ଲହ,
ପୈଶାଚିକ ନୃତ୍ୟ ମେଳେ
ଦେଖିଥିଲି ଯାହା ମୁଁ ପୁରାଣ ପ୍ରମାଣେ
ହୁଏତ ବା ନିସ୍ୱପ୍ନ ବିଜ୍ଞାନେ!

ସେହି କି ପେଷିବ ଅସ୍ତ୍ର, ପାଶୁପତ ଅବା ବାୟବୀୟ,
ଧିକ୍ ନାରକୀୟ ।
ଉତ୍କଟ ବିଷାକ୍ତେ ଗୋଳା ବିଷାକ୍ତ ପ୍ରୟାସ
ସୁତୀବ୍ର, ଅସହ !
ମୃତ୍ୟୁ ମହ ମହ !

ଅରକ୍ଷରେ ଆଗାମୀର ସ୍ୱର-ଶୁଭ୍ର-ଭ୍ରୁଣ ଦେବ ନାଶି,
ଥିବ ତା'ର ପଣ୍ୟଶାଳା—କା' ଲାଗି କେଜାଣି—
ଥିବ ହର୍ମ୍ୟମାଳା—
ଏ ଜୀବ-ଜଗତ ହେବ ସୁଗୁପ୍ତ ଜ୍ୱଳନେ ତାର, କୃଷ୍ଣ ଧୂମରାଶି !!

ସ୍ୱୈରାଚାରୀ ବର୍ବରର ଲୋଭାତୁର ପୁଞ୍ଜିର ଜଞ୍ଜୀରେ
ବିଳାସୀ ବିଶ୍ରାମ କକ୍ଷେ ନର୍ତ୍ତକୀର ନୃତ୍ୟର ମଞ୍ଜିରେ—
ମହାମୋହେ ବିଭ୍ରମାଇ ନିଃସ୍ୱତାର,
ଚିତ୍ତ, ସକୌତୁକେ—
ଦେଖୁନ କି ଦେଖୁନ ରେ
ସାଜେ ସେ କୃତାନ୍ତ ସାଜେ
ସାଜେ ତାର ଅନୀକିନୀ, ଧ୍ୱଂସେ ସମୁତ୍ସୁକେ !!

ଆହ୍ଲାଦୁଁ ବଞ୍ଚିତ ମୁହିଁ
ତେଣୁ ସିନା, ତାରୁଣ୍ୟେ ମୋ କୃତିରେ ବିକୃତି,
କର୍ମ ନାମେ ଅପକର୍ମ ରହେ ମତେ ଗ୍ରାସି !
ଧର୍ମ ନାମେ ବିଚାର ମୋ ଲଭେ ଲୌହ ଫାଶି
ଚତୁର୍ଦ୍ଦିଗେ ଅହଙ୍କାର ହତ୍ୟାର ବିଶ୍ରୁତି ।

ନୁହେଁ ଏ ବସୁଧା ନୁହେଁ, ନୁହେଁ ଖାଲି—
ଗୌର କି ଧୂସର, ଦେହୀ ଗୁପ୍ତ ଘାତକର !
ଅନ୍ଧ ଓ ବଧିର ଯେତେ ଦୁର୍ବିଜ୍ଞାନେ ଅଜ୍ଞ ସ୍ନାତକର ।
——ନୁହେଁ ତାର
ଲୀଳାସାର !

ଗୋଟିଏ ଜୀବନ ଯିଏ ପାରେ ନାହିଁ ସୃଜି,
କୋଟିଏ ଜୀବନବର୍ତ୍ତ୍ମ, ମୁହୂର୍ତ୍ତକେ ଦେବ ଆଜି ବୁଜି !!
ସେ କି ଦମ୍ଭେ ଆସେ, ସେ ତ !
ମନ୍ଥିବ ସାଗର ଆମ, ମନ୍ଥିବ ଆକାଶ,
ମତେ କି ଚିହ୍ନିନ ତୁମେ—
ତାର ପ୍ରତିରୋଧ ମୁହିଁ, ତୁମରି ଉଦ୍‌ଗତ ଅଶ୍ରୁ,
ମୁହିଁ ତୁମ ପ୍ରାଣର ଉଦ୍‌ଭାସ !!
ସକଳ ଅସ୍ଥିତି ମେଳେ ସ୍ଥିତିର ନିର୍ଯ୍ୟାସ ।

କ୍ଷଣିକରେ ନିତ୍ୟ ଚିରନ୍ତନ ମୁଁ ଯେ—ଶାନ୍ତିର ବଂଧନ ।
ମୋ ମର୍ମେ ଧରିଛି କେତେ ନିରୁଦ୍ଧ-କ୍ରନ୍ଦନ—
ଉର୍ଦ୍ଧ୍ୱେ, ବୁଲେ ମାଂସ ଆଶେ
ସୁନାର ଇଗଲ ବୁଲେ
ବିଶ୍ୱାସବିନାଶୀ କେତେ ଉତ୍‌ଫଣ ସର୍ପର କୋପ
ଫୁଲେ ନିମ୍ନେ, ଛପି ଛପି, ଫୁଲେ ।
ତଥାପି ଲଲାଟେ ମୋର ଦୀପ୍ତ ଲିପି କୋଟି ବସନ୍ତର !
କେତେ ମୈତ୍ରୀ ସାଧକର ପ୍ରୀତିର ବିଧାନ
ଶତ ଘାତ ପ୍ରତିଘାତେ
ଶତ ଧ୍ୱଂସ, ବ୍ୟବଧାନେ, ମୈତ୍ରୀର ନିଧାନ ।
ପ୍ରତି ଲୋମ୍-କୂପେ ମୋର ସ୍ପନ୍ଦେ ନିରନ୍ତର !

ମତାନ୍ଧ ମଦାନ୍ଧ ଯେତେ ଅଧର୍ମର ଧର୍ମଗୁରୁ
ମରଣର ଶିକ୍ଷା ଗୁରୁ ଆସି—
ଗଲେଣିରେ ଇତିହାସେ, ଯିବେ ପୁଣି,
ପ୍ରାଣର ଆଲୋକ ସ୍ରୋତେ ଯିବେ ଯିବେ ଭାସି ।
ମୋ ଆମ୍ର କୁଞ୍ଜରେ ପୁଣି କଦମ୍ବ କି ତମାଳ-ଛାୟାରେ,
ବାଜିଛି ମୋ ବେଣୁ ଯେତେ
ବାଜିଛି ବାଜିବ ଜାଣ,
ମମତ୍ୱର କାରୁଣ୍ୟ ମାୟାରେ—

/ ୨୪୨ /

ହେ ବନ୍ଧୁ ବାନ୍ଧବୀ ମୋର !
ତମେ କି ଚିହ୍ନିନ ମତେ !
ଅମରତ୍ୱ ଆଶାୟୀ ମୁଁ,
ତୁମରି ବାଙ୍ମୟୀ ବ୍ୟଥା
ସଂଗ୍ରାମୀର କ୍ରାନ୍ତିର କାୟାରେ— ।



# ଖଡ୍‌ଗଟିଏ ବୁଲେ

ଖଡ୍‌ଗଟିଏ ବୁଲେ ରେ, ସାଥି!
କେତକୀ-କିଆ ପାଖୁଡ଼ା ସେ ତ!
ଖଡ୍‌ଗଟିଏ ବୁଲେ!

ଗୋଟିଏ ପାଖ ତୀକ୍ଷ୍ଣ ଧାର–
ସଆର କାଟେ, ମଟାଳ ବାଲି
ପାହାଡ଼ ଛାତି ପରେ—
ନିଃଶ୍ୱାସର ସମୀରେ ତାର, ଶ୍ରମର ପ୍ରୀତି-ସ୍ୱରେ!

ଆଖିରୁ କେତେ ଝରାଏ ହସି ଲୁହ
ଖେଳାଇ ଦିଏ ପ୍ରଖରେ କେଡ଼େ ଜୀବନ-ଜ୍ୟୋତି-ସୁଅ,
ହସାଇ ଦିଏ ଶୂନ୍ୟ ବିଲ, ଗହମ-ଧାନ-ଫୁଲେ!

ଆରେକ ପାଖ ଧାରୁଆ ଧାର–
ହାଣେ ରେ ଯେତେ ଅତ୍ୟାଚାର ହାଣେ–
ମଛିତ ଯେ ପାରେନା ଉଠି,
ତାହାରି ପାଖେ ଚଳେ ରେ ଛୁଟି,
ଆଶାର ଭାଷା ଭରେ ରେ ତାର ପ୍ରାଣେ।

ଧର୍ମ ନାମେ ଆଜିରେ ଯେବେ ଭାଇର ବେକେ ଭାଇର ଲାଗେ ଛୁରୀ
କ୍ଷମତା ଲାଗି ସ୍ୱାର୍ଥୀ ମାତେ ନିୟମ ନୀତି ଜୁରି,
ଅଭାବେ ଅବା ବିଳାସ ମୋହେ
ବେକାରୀ ଯୁବା ଦସ୍ୟୁପଣ ଧରେ,
ଜନନୀ ଆଉ ଭଗିନୀ ଯେବେ,
ଧର୍ଷଣରେ ଥରେ।
କେତେକୀ-କିଆ, ଖଡ୍‌ଗଟିଏ
ଧୂଳିର ପଥେ ଝୁଲେ–!

ପଡ଼ୋଶୀ ଅବା ବିଦେଶୀ ଯେବେ
କି ଛଳେବଳେ ଛପିଛପିକା
ପଶେ ରେ ଆମ ଘରେ
କି ମହାରୋଷେ, ଖଡ଼୍‌ଗଟି ସେ ଝଲସି ଉଠେ,
ଶତ୍ରୁରେ କି ଭୁଲେ ?
ଜୀବନ ରଖେ, ଜୀବନଦିଆ ତୁଲେ ।

ମୁକ୍ତିର ତ ସାନ୍ତ୍ରୀ ସେ ଯେ ବୁଲେ ରେ ନିତି ବୁଲେ,
ରକ୍ତ ନଦୀ କୂଳେ !

ଆଜିରେ ଯେବେ ବଣିକ ଆଉ ଶୋଷକ ଦଳ
ମଣିଷମରା କାମରେ ମାତି ଅସ୍ତ୍ର ଘେନି ସାଜେ,
ଆକାଶେ ଆଉ ପାତାଳେ ପୁଣି,
ନୁହେଁରେ ଖାଲି ଭୂଇଁରେ ନୁହେଁ—
ହତ୍ୟା ରୋଳ ବାଜେ— !

ପ୍ରାଚ୍ୟମଝି ଆଫ୍ରିକାରେ,
ଚିଲ୍ଲି, କେତେ ସାଲ୍‌ଭାଡ଼ୋରେ
ସ୍ୱୈରାଚାର ମଥାର ପରେ,
ଝୁଲେ ରେ ସେ ତ ଅଗ୍ନିରାଗେ ଝୁଲେ ।
କେତକୀ କିଆ ପାଖୁଡ଼ାଟିଏ ଖଡ଼୍‌ଗ ସେ ତ !
କୋଟିଏ କୋଟି ରୁଧିରେ ଧୁଆ,
ବିଜ୍ଞାନର ରସରେ ଜୁଆ,

ଶକ୍ତ ଆମ ମୁଠାରେ ଧରା, ଦୁଃଖ ହରା,
ମଧୁରତମ ସ୍ୱପ୍ନେ-ଭରା,
ଖେଳାଏ ମୃତ୍ୟୁ ମହକ ତାର
ପ୍ରଳୟ ରୋଧୀ ବିପ୍ଳବ ସେ,
ଶ୍ରମିକ ଜନ ଶ୍ରମର ଗୀତି ମୂଳେ—
ସମତା ଆଉ ଶାନ୍ତି ଲାଗି ବୁଲେ-ରେ ବୁଲେ,
ଖଡ଼୍‌ଗଟିଏ ବୁଲେ ସେ ସାଥି !
ଖଡ଼୍‌ଗଟିଏ ବୁଲେ ।



# ତ୍ରୟୀ

## (୧)

ପ୍ରେୟସୀ ଗୋ ମୋର,
ହେ ମୋର କୃଷକ କନ୍ୟା !
ସେ କି ଅକପଟେ
ଏଇ ପ୍ରାଣତଟେ
ଆଣିଲ ରସର ବନ୍ୟା !

ଚିତ୍ତେ ନ ଆଣି ତିଳେ ସଂଶୟ,
ସମ୍ପିଲ ତୁମେ ପ୍ରୀତିସଞ୍ଚୟ,
ଖାଲି ନିମିଷକେ, ଡୋଳାର ଚମକେ,
ଆପଣାରେ ସଖି ପାଶୋରି ପଲକେ
ସରଳ ସୋହାଗେ ତରଳ ପୁଲକେ—
ମଣିଲ ନିଜକୁ ଧନ୍ୟା,
କି ସୁଧା ଲୋଡ଼ିଲ ବକ୍ଷେ ଲୋଟି ମୋ
ପ୍ରେୟସୀ କୃଷକ କନ୍ୟା—

ହେଲିଲ ସକଳ ମାନ, ସମ୍ମାନ, ଲାଜ ଗୋ
ଖୋଲା ପଥ ପରେ ଦୋଳି ମୋ ଗଳାରେ
ନାହିଲ ପ୍ରେମର ସାଜ ଗୋ !

ଧୂଳି-ଶେଯ ତଳେ ଘାସ ଫୁଲ ମେଳେ,
ପାପ-ପରିତାପ ଗଣିଲ ନି ହେଳେ
ସ୍ନିଗ୍ଧ ନୟନେ ଠାରିଲ ସରସେ
''ଶୁଣ ମୋ ପ୍ରଣୟ-ରାଜ ଗୋ'',
—ଭଙ୍ଗୀରେ ତମ ଥିଲା କି ଛଳନା
ଇଙ୍ଗିତେ ପ୍ରୀତି ବ୍ୟାଜ ଗୋ ।

ହାସ୍ୟ ଉଜ୍ଜଳ ନିର୍ମଳ ହୃଦ-ପୁରେ ଗୋ
ଅଜଣା ମନରେ କରିନେଲ ଜଣା
ବାରବୁଲା ଜନେ କରିନେଲ ବଣା
ନୀଡ଼ର ବିହଗ ସୁରେ ଗୋ;
ରଖିଲନି ଦାବୀ କହିଲନି କଥା,
ଅନିଭା ବେଳର ନିହିଲ ବାରତା ।

ସ୍ମରଣେ ଯାହା ଗୁମରଇ ବ୍ୟଥା—
ଏଇ ଜୀବନର କୂଳେ ଗୋ ।
ଝୁରୁଛି କି କେତେ ? ଝୁରେ ଗୋ !!
ମନେ ନାହିଁ ସଖି କେଜାଣି କେସନେ
ଦେଖିଲି ଅତୀତ ଛାଇ ଗୋ—
ତୁମର ସରଳ ପ୍ରୀତି ବିଭ୍ରମେ
ମାରୁଥିଲା ଧୀରେ ହାଇ ଗୋ ।

ପ୍ରଣୟ ପଥରେ ରୂପର ମୟୂଖ,
ବୁଦ୍ଧି ବିହ୍ବଳେ ଦିଏ ନାହିଁ ସୁଖ,
ସାର୍ଥକ ନିକି ପ୍ରୀତି ହେଲେ ମୂକ
ତରୁଣ ସ୍ୱପ୍ନ ପାଇଁ ଗୋ ।
ତେଣୁ ତୁମ ପାଶୁଁ ତ୍ରସ୍ତ ପରାଣେ
ଚଳିଗଲି ଦୂରେ କାଇଁ ଗୋ ।

ଯୋଛିଦେଲି ମନୁ ତୋଟାତଳ ଖେଳ ସୋହାଗ,

କପୋତ କଣ୍ଠର ଅଶ୍ରୁ-ସଜଳ ବୋହାଗ,
ପ୍ରେମ କଳଭାଷ
ଭଙ୍ଗୀ ବିଳାସ
ଜାଣେ ନାହିଁ ଯେଉଁ ବାଳି ଗୋ,
ଢାଳିଲି ତାହାର ଅଞ୍ଜଳି ପୁଟେ
ପ୍ରେମ ସୁଧା ବୃଥା ଢାଳି ଗୋ !!

(୨)

ଚଳିଗଲି ଦୂରେ ରତ୍ନମାଳିକା ହାତେ ଗୋ
ନିର୍ମଳ ମଣି ଧୂମ୍ର ଧୂସର ପ୍ରାତେ ଗୋ ।
କେତେ ନଗରୀର ବକ୍ଷେ ବିଳସି
ଭଗ୍ନ କରିଲି ସ୍ୱପ୍ନ-କଳସୀ
ଫାଙ୍କୀ ପରଶେ, ନିର୍ଦ୍ଦୟ ଦୁଃଖେ
କହିଲ ରଖ ତୋ ଛଦ୍ମମ,
ଶତ ଛଳନା—
ଆଗୋ ନାଗରିକା !
ପ୍ରୀତି ନୋହେ ତୋର ପୁତ୍ତଳି,
କ୍ରୀଡ଼ା, ଖେଳନା !

ସ୍ୱର୍ଣ୍ଣ ବିଳାସେ ଆଗୋ ବିଭୂଷିତା ରମଣି !
କୁଣ୍ଠିତ କେତେ କରୁ ନିତି ପ୍ରୀତିସରଣୀ !
        ଶାନ୍ତି ସୁହାସେ ଦେଇଚୁ କି ଜାଣି ପ୍ରଣୟ–
        ଧନ ଲୋଡ଼ା ତୋର ଲୋଡ଼ା ଲୋ ଆସବ;
        ଲୋଡ଼ା ନରକର ନୃତ୍ୟ ପାଶବ,
        ରୂପ ବିନିମୟେ ଅଲାଜୁକୀ ଖୋଲୁ ନିଳୟ
        ପ୍ରୀତିର ମୂଲ୍ୟ କଳେ ତୋ ରତ୍ନ ବଳୟ !

ଚତୁରୀ ଲୋ ତୋର ହାସ୍ୟ-ଗହନେ
                ଝଲଇ ତୀକ୍ଷ୍ଣ କତୁରୀ !
                ହିଂସୁକ ଲୋଭୀ ଚକ୍ଷୁ ଗହଳେ
                ଉଡ଼ଇ ମୃତ୍ୟୁ-ଉତୁରି
        ସର୍ପିଣୀ ଖେଳି ମୃତ୍ୟୁର ବିଳେ
        ନେଇ ଜାଣୁ ସବୁ, ଦେଉ ନାହିଁ ତିଳେ;
        ପୁଣ୍ୟ ପ୍ରଣୟ ମୁକୁଟ ବହିବୁ
        ଅବକାଶ ତୋର କାହିଁ ବା ?
        ଚିକ୍କଣ ଦେହେ ଚମକ ସଜାଇ
        ରୀତି ଚଉପାଶେ ଚାହିଁବା ?

ଆଗୋ ବାରବିଳାସିନୀ
                ଧନିକ -ପ୍ରେୟସୀ ରମଣି !
        ତୋର ରୂପ-ସରସୀରେ ଅଶ୍ରୁ-ଶିଶିରେ
                ପୋଡ଼ି ନ ଯାଇ ମୋ
                ଜୀବନ ପଦ୍ମ-କରଣୀ !
        ମେଲି ଦେଲି ପଛେ ଶୂନ୍ୟ ସ୍ୱପନେ
                ଏଇ ମୋ ଜୀବନ ତରଣୀ !

        (୩)

ଆସ, ଆଗୋ, ଆସ,
            କାହିଁ ଅଛ ତୁମେ
            ଆସ ଆଗାମୀ ଯୁଗର ସଜନି !
ଶୂନ୍ୟ ସ୍ୱପନେ ଡାକୁଚି, ଡାକିବି,
ଉଜାଗରେ ପଛେ ଯାପୁଚି ଯାପିବି,
        ଆଜି ଏଇ କାଳ, ରଜନୀ !

ଆସିଲେ ତୁ ସଖି ଏଇ ମୋ ଜୀବନ କାନନେ
ଗୁଣ-ଗୌରବେ ରୂପ-ଝଲସିତ ଆନନେ,
ମନ ପଥେ ମୋର ମଧୁରେ ମଧୁରେ,
ବାଜିବ ପ୍ରୀତିର ଖଞ୍ଜନି।
ଆଗୋ ଆଗାମୀ ଯୁଗର ସଜନି !

ନଥିବ ଲୋ ଆଉ ପଲ୍ଲୀର ମୂକ ଲଳନା,
ନ ଥିବ ଲୋ ସଖି ! ଧନ-ଗର୍ବିତା ଛଳନା,
ନ ଥିବ ଲୋ କାହିଁ ଭୀରୁ ବିଚଳିତ ଚାହାଣୀ,
କୁଣ୍ଠିତ ମନ, ତ୍ରାସ-ବିଜଡ଼ିତ କାହାଣୀ।

ପଣ୍ୟ ବେଭାର ଚଳିବ ନି କେବେ ପ୍ରେମରେ
ହେବ ନାହିଁ କେହି କାହା କିଙ୍କର ଦାସ ଗୋ,
ମୃତ୍ୟୁର କୋଳେ ଚଳିବନି ପ୍ରୀତି ରାସ ଗୋ,
ତୁଟିଯିବ ଶତ ବନ୍ଧନ ଶତ ପ୍ରାସ ଗୋ।

ଅସୀମ କାଳରୁ ଅକୁହା ଯା' ଥିବ ସହିରେ
କୁହାକୋହି ହୋଇ ହସଖେଳେ ଯିବା ନୋଇଁ ରେ
ବଉଦେ ବିରଚି ସଉଧ
ହସି ଖଳ ଖଳ
ଆବେଗେ ଉଚ୍ଛଳ,
ଚୂରିଯିବା ଯେତେ ପ୍ରଣୟ-ବିନାଶୀ ଆୟୁଧ !

ବିଦ୍ୟୁତୁଁ ସଖି ଆହରି ଦୀପକ ରାଗିଣୀ
ଜଗାଇବା ସେହି ଅତୁଳ ସ୍ୱପନ
ଭବନେ ଯା କେବେ ଜାଗିନି।

ଅଳକାର ପଥେ, ଖେଳି ଅବିରତେ
ତୋଳିବା କୁନ୍ଦ ମାଳତୀ,
ବୁଦ୍ଧିର ସହ ହୃଦୟ ମିଶାଇ
ଅସରା କରିବା କେଳତି !

ହାତେ ନେବୁ ତୁହିଁ ଆହୁଲା, ପ୍ରେୟସି !
ମଙ୍ଗ ଧରିବି ମୁହିଁ ଗୋ।
ନୂଆ କଳରତ ରଚିବା ବିଳସି
କୁହାରାଇ ଫୁଲଚୂଇଁ।

ଶସ୍ୟ ଗହଳେ ଉଠିବ ତୋ ସୁର,
କଳରେ କଳରେ ଝଲିବ ତା ମୂଳ,
ସକଳେ ହେବେ ଲୋ ପୀରତି-ବାତୁଳ
ଶ୍ୟାମଳିବ ମରୁଭୂଇଁ ଗୋ !
ଆମରି ପ୍ରଣୟେ ନୂଆ କୋଣାରକ
ହସିବ ଆକାଶ ଛୁଇଁ ଗୋ !

ଭୁଜେ ଭୁଜ ଭିଡ଼ି ଚାଲୁଥିବା ସାଥି-ଯୁଗଳ
ବରଷା ଆସାରେ
ତୁଷାରେ ତୁଷାରେ
ଦୋଳୁଥିବ ପ୍ରୀତି-କମଳ
ବାଲୁକା ଧୂଳିରେ ଲେଖି ସୃଜନର ଲିପିକା
ଯୁଗେ ଯୁଗେ ସଖି ନିତି ଅଭିନବ
ଢାଳୁଥିବ ପ୍ରୀତି ଦୀପିକା !

ଆଗୋ ଆଗାମି ଯୁଗର ସଜନି !
ନଥିବ ଲୋ ଆଉ
ପ୍ରୀତି-ଶୋଷଣର
ନଥିବ ଲୋ କାଳ ରଜନୀ।



/ ୨୫୦ /

# ଘେନ ପ୍ରଣାମ

ଭିଏତ୍‌ନାମ୍ ! ଭିଏତ୍‌ନାମ୍ !
ମୁକ୍ତିକାମୀର,
ଘେନ ପ୍ରଣାମ!
ଭିଏତ୍‌ନାମ!

ଦସ୍ୟୁଦଳନେ ହେ ମହାରୁଦ୍ର !
ବୀର୍ଯ୍ୟେ ଅତୁଳ, ରୂପରେ କ୍ଷୁଦ୍ର,
ଧ୍ୱଂସି ସରୋଷେ ମରଣ-ଗୃଧ୍ର,
ତୁମେ ଏ ଧରାରେ ଶାନ୍ତି-ଧାମ;

ଭିଏତ୍‌ନାମ୍ ! ଭିଏତ୍‌ନାମ୍ !
ଅଗ୍ନି ସରିତେ ଧଉତ ଗାତ୍ର,
ତୁମେ ତ କୃଷକ, ଶ୍ରମିକ, ଛାତ୍ର!
ରକ୍ତେ ଭରୁଚ ଜୀବନପାତ୍ର,
ସାମ୍ୟଗୀତିର ସ୍ୱରିତଗ୍ରାମ !

ଭିଏତ୍‌ନାମ୍ ! ଭିଏତ୍‌ନାମ୍ !
ପେଣ୍ଟାଗନର କମାଣ-ଗର୍ଭେ
ସଂଚରି ଚଳ ନବୀନ ଗର୍ବେ,
ହତ୍ୟା ବିନାଶି ମୁକ୍ତି-ପର୍ବେ
ସରଛି ସବୁଜ ଜୀବନରାମ !

ଭିଏତ୍‌ନାମ୍ ! ଭିଏତ୍‌ନାମ୍ !
ଯୁଗ ଯୁଗ ଲାଗି ମୁକ୍ତି-ପ୍ରୀତିର ପରମ ଜ୍ଞାନ!
ଏସିଆର ତୁମେ ଦୀପ୍ତଦାନ ।
ଆର୍ଦ୍ର ଆଖିର ଘେନ ପ୍ରଣାମ ।
ଭିଏତ୍‌ନାମ୍ !



# ପୋଡ଼ା ଖୁମ୍ବ

ତାରାଟିଏ,
କାହୁଲେଇ ହୁଏ, ନାହୁଲେଇ ହୁଏ,
ଛାଇ ପଡ଼େ ଚଳକୁ ଚଳ ଲୁହରେ।

ଝାଳ ବୁହା ଦିନଗୁଡ଼ାକ
ବେଙ୍ଗେଇ ହୁଏ ଆଶର
ବସ୍ତାକୁ ବସ୍ତା
ଖଲାସ ହୁଏ ଚିକିମିକିଆ
ପୋଲା ପୋଲା ଚିଜସବୁ ବେଭାରୀର।

ଦରପୋଡ଼ା ଖୁମ୍ବରେ
ପିଟିହୁଏ ସଇତାନୀର ଶାଗୁଣା ନୁହେଁ ଖାଲି
କାରୁଣ୍ୟର କପୋତୀ କି କାମନାର କଜଳପାତୀ ନୁହେଁ
ଲୁହାର ଟୋପିଗୁଡ଼ାକ
ଫିଟି ପଡ଼େ ସଞ୍ଜମର,
ବିଳାସର ତାତିଲା ବାଲିରେ ଗଢ଼େ
ଚମଉଡରା କ୍ଷମତାର କରାମତି ଗଢ଼େ!

ସେ କି ଅଦୁରିଶିଆ ଛୁଞ୍ଚ୍ ସବୁ
ଗୋଳେଇ ଗୋଳେଇ ପୁଞ୍ଜି ଗରଳରେ
ଗଳେଇ ଗଳେଇ ଛାତିରେ ଆମର,
ନଚେଇ ନଚେଇ କଣ୍ଢେଇଟିମାନ ଭଳି,
ଲଢ଼େଇ ଦିଏ, ଲଢ଼େଇ ଦିଏ ଆମକୁ, ଢି,ଢା!
ଓଟାରି ଓଟାରି ତେଲିଆ ତେଲିଆ ଚାହାଣୀରେ,
ଶୋଷଣର ସୂତୁଲି!

/ ୧୫୧ /

କଟୁଆଳ ଗୁଳିର ଚୋଟ ପରେ ଚୋଟ
କାଳର କାନତରାଟିରେ,
ଜଳେ, ତରାଟି ଜଳେ,
କେତି କୋଟି ରୂପରେ ଜଳେ !!

ଆହୁଲେଇ ଆହୁଲେଇ ସେ କି ଆଲୁଅର ନାହା
ଫେରିଆସେ ନିଆଁର ଢେଉ ପରେ ଢେଉର,
ଖପୁରୀଟିମାନ, ଫୁଲର ତୋଡ଼ା ହୋଇ,
ଫେରି ଆସେ !

ତରାଟିଏ ସେ,
ଲାଲ ଲାଲ ହସରେ,
ଲାହୁଲେଇ ହୁଏ
ଖୁଲିଖୁଲିଆ ଖୋସାରେ ପୁଣି
ନୂଆ ଏକ ଦିଗ୍‌ବିଜୟରେ ସମୟର !!



# ଆମେ ଯେ ଧରିଛୁ କ୍ରିୟା

ଆମେ ଯେ ଧରିଛୁ କ୍ରିୟା!
ନିରୋଧି ନୟନେ ଆଗ୍ନେୟ ବାରି,
ଶୀତଳାଇ ସାରି ଅତୀତର ରଇ,
ଶୀତଳାଁଇ ସାରି,
ଆମେ ଯେ ଧରିଛୁ କ୍ରିୟା !
ତୁମରି ସଦ୍ୟ କ୍ରିୟା !

ଜନ-ଜଳଧିର ଶୋକ ଉଦ୍‌ବେଳ
ଊର୍ମି-ଶିଖରି-ଚୂଳେ,
ଫୁଲେ ଯେବେ ତୁମ ସ୍ୱପ୍ନ-ସୁଷମାରାଶି !
ଶତ:ସଂଗ୍ରାମେ ରକ୍ତିମ ତୁମ
ଅତି ବାସ୍ତବ
ଗୋଲାପ-ଗୁଚ୍ଛେ ଫୁଲେ !
ଆମେ ଯେ ଧରିଛୁ କ୍ରିୟା !

ଧରଣୀରୁ ଉଠି, ତୁମରି ଭସ୍ମ ମୁଠି
କୋଟି ସୂର୍ଯ୍ୟର ନିଦ୍ରିତ ବୁକେ ଛୁଟି,
ଆଣିବ ଯେ ଏବେ ଅମୃତ ରାଗେ
ବିଜ୍ଞାନ ବାଣୀଲୁଟି
—ସ୍ତବକେ, ସ୍ତବକେ,
ଶିଶୁ କିଶୋରର ହସର ସ୍ତବକେ,
ଦଗ୍‌ଧା ଧରଣୀ କରି ଧୀରେ କମନୀୟା !
ଆମେ ଯେ ଧରିଛୁ କ୍ରିୟା !

ମହାକାଳ ଏଣୁ ସ୍ତବ୍‌ଧ, ଚକିତ,
ଲଜ୍ଜିତ ମୁଖେ ଠିଆ !!
ତୁମରି ନିବିଡ଼ ସ୍ୱପ୍ନର ଛାୟା ତଳେ
ରଶ୍ମିର ସ୍ରୋତେ ଅବଗାହି ତୁମ,
ଆମେ ଯେ ଧରିଛୁ କ୍ରିୟା!

ଶଙ୍କିତ ଗୁରୁ ପ୍ରାସେ,
ଆଶେ, ଭବିଷ୍ୟ ଆଶେ,
ନିର୍ଭୀକ ବୀର !
ତୁମରି ହାସ୍ୟେ ଅଶ୍ରୁ ମିଶାଇ ଆମ !
ଆମେ ଯେ ଧରିଛୁ କ୍ରିୟା !

ତୁମରି ସେହି ଏ ରସ-ଉତ୍‌ଥଳ—
ପ୍ରାଣ-ଗଙ୍ଗାର କୂଳେ,
ଆମେ ଯେ ଧରିଛୁ କ୍ରିୟା !

ଯେତେ ସଂଶୟୀ, ଯେତେ ବିଶ୍ୱାସୀ,
ତୁମ ସାଧନାର ହେମ-ହିମାଦ୍ରି ମୂଳେ
ଆମେ ଯେ ଧରିଛୁ କ୍ରିୟା!

ଭାସି ଭାସି ଯାଉ ଭସ୍ମ ତୁମରି,
ସ୍ୱପ୍ନ କରୁଣ,
କର୍ମେ ଅରୁଣ,
ପ୍ରୀତି-ବର୍ଷଣ ମେଘେ !
ଭାସି ଭାସି ଯାଉ ସୃଜନେ ଛନ୍ନ
ଭାସି ଭାସି ଯାଉ ବେଗେ !

ଝରି ଝରି ପଡୁ
କ୍ଷମତା-ଦୃପ୍ତ, ଟଳ ଟଳ ଗିରି ଚୂଡ଼େ !
ଜଗାଇ, ଜଗାଇ,
ନିର୍ଜ୍ଜିତ ଯେତେ ମୂର୍ଚ୍ଛିତ ଯେତେ,
କୋଟି କଙ୍କାଳ କୁଢ଼େ !

ଝରି ଝରି ପଡୁ
ସବୁଜ ବାର୍ତ୍ତା ନେଇ,
ଲାଙ୍ଗେ ଲାଙ୍ଗେ ନିତି କୃଷକ ବଧୂର
ତୃପ୍ତି-ପଣତ ଫେଇ—
ଶ୍ରମିକ ବଧୂର ଶ୍ରାନ୍ତ ଅଧରେ
ମଧୁର ଘର୍ମ ସମ—
ତୁମ କବିତାର ପ୍ରୀତି-ପାରାବାର,
ସ୍ନିଗ୍ଧ ହେ ଅନୁପମ !!

ଆମେ ଯେ ଧରିଛୁ କ୍ରିୟା !
ଯେଉଁ କ୍ରିୟା ଧରି ଯୁଗ ଯୁଗାନ୍ତ ପଥେ
ପିତୃ-ପୁରୁଷ ରତ-ନିର୍ଯ୍ୟାସ ପୁଷ୍ପ ତରୀରେ ବାହି
ନର୍ମଦା ସୁରେ ଶର୍ମଦା କେତେ
ଭଲ୍‌ଗା, ରାଇନ୍, କଙ୍ଗୋର ଗୀତି ଗାଇ,
ବର୍ଣ୍ଣ-ବିଭେଦେ ଯେତେ କଳୁଷିତ
ହିଂସା-ଦୂଷିତ ବ୍ୟଥିତ କର୍ମେ ଥରି,
ଦଳି, ଦଳି, କେତେ କ୍ଷୁଦ୍ରତା-ମତେ
ତୁମେ ସୁଧା-ନିର୍ଝର ! ଝର !
ଝରି ଝରି ଯାଅ, ଝର ଅବିରତେ !

ଚୂରି ସମାଜର ଶତ ଶୃଙ୍ଖଳ,
ଚୂରି ବୁଦ୍ଧିର କୂଟ ଅର୍ଗଳ,
ଆଣିଲ ପ୍ରଖରେ ଜୀବନ ତୃଷ୍ଣା, ଚିର ନିର୍ମଳ,
ପୁର-ପଲ୍ଲୀରେ ବିନ୍ଧାଣୀ କେତେ ଗଢି,
ବଜାଇଲ ଧୀରେ ଶାନ୍ତିର ବୀଣା,
ଆଣିଲ ଚିତ୍ତେ ନବ ପ୍ରମତ୍ତ ଝଡ଼ି !

ଯେଉଁ କ୍ରୟା ଧରି
ପୃଥିବୀ ଗର୍ଭୁ ଅନ୍ତ ଓଟାରି
ମୁକ୍ତିର ରସେ ଜାଳିଲ ମୈତ୍ରୀ-ଶିଖା!
ସାନ୍ତ୍ରୀ ହେ ତୁମେ, ସ୍ନେହୀ ସଂଘର !
ପ୍ରାଣର ବିସ୍ଫୋରଣେ
ବିଶୋଷଣ କରି
ବିଶ୍ୱ-ବେଦନା-ଦାହ,
ପ୍ରତି ଭାଲେ ହେଲ
ଶାନ୍ତିର ଜୟ-ଟୀକା !
ବଜ୍ର-ରବରେ ପ୍ରୀତିମଞ୍ଜରୀ-ଧ୍ୱନି
ତୁମ ଲାଗି ନମନୀୟା
ଧରିଛୁ ତୁମରି କ୍ରିୟା !
ଶତ ଜଞ୍ଜାଳ ତିକ୍ତରେ ଖାଇ
ଅଫିଟା ଆଶାର ମଞ୍ଜ ପତରେ
ତୁମରି ମନ୍ତ୍ରେ,
ତୁମରି କର୍ମେ ମମତା ଧର୍ମେ ଧାୟି
ଧରିଛୁ ତୁମରି କ୍ରିୟା!

/ ୨୫୬ /

ଶାନ୍ତିର ପାରା ଉଡ଼ାଇ ଦେଇଛୁ
ଫେରିନି, ଫେରିନି, ଜାଣୁ !
ଦେଶେ ଦେଶେ ଘୂରେ ଆଜି,
ବନ୍ଦ ହୋଇନି ଘାତକ ଅଶ୍ୱ-ହ୍ରେଷା !
ଅଗ୍ନିରେ ଉଠେ ବାଜି !
ଖୋଲ, ଖୋଲ, ତୁମ
ଗୋଲାପୀ ସ୍ୱପ୍ନ ଖୋଲ !

ଆହେ ବିଦ୍ରୋହୀ ! ବୋଲ ଆଉ ଥରେ
ତୁମ, ସ୍ୱପ୍ନର ଗୀତ ବୋଲ!
ଲୁହ ଅଞ୍ଜଳି ଟେକି
ନୂତନ ଶପଥେ ଯାଉ ତାହା ଯାଉ
ହୃଦୟ ରୁଧିରେ ଲେଖି !

ସାବଧାନ ହୁଅ,
ଯିଏ ଯହିଁ ଅଛି, ଶାନ୍ତି-ଘାତକ ଦଳ !
ସାବଧାନ ହୁଅ,
ସାମ୍ୟ-ବିନାଶକାରୀ !
ସାବଧାନ ହୁଅ,
ଶ୍ରାଦ୍ଧ ବାଢୁଛୁ ଆମେ !
ଆମେ ଯେ ଧରିଛୁ କ୍ରିୟା !

ଶୁଣ ହେ ବିଶ୍ୱଦେବା,
ଶୁଣ ହେ ବରୁଣ ବାୟୁ !
ଶୁଣ କାଳ କାଳ, ଶୁଣ ମହାକାଳ !
ମଣିଷର ପରମାୟୁ !
ଆମେ ଯେ ଧରିଛୁ କ୍ରିୟା !
ଆମେ ଯେ ତାହାରି, ଜୈତ୍ର ପତକାଧାରୀ,
ତାହାର ପ୍ରାଣର
ଚିର ତୃଷ୍ଣାର,
ଚିର ରକ୍ତର ଗାନ
ନିଜ ପାଶେ ତାର ନିଜର ଶ୍ରଦ୍ଧା ଦାନ !



# ଶୀତୁଳିଆ ଖରା ଖେଳେ

(୧)

ନୁଆଁଅ, ନୁଆଁଅ ପତା, ସଜନି ଗୋ ଅଜଣା ମୋ,
ଲାଜେ ଲାଜେ ଆଲାଜରେ ।
ଶୀତୁଳିଆ ଖରା ଖେଳେ
ଛାୟାର ଅଙ୍ଗୁଳି ଚାଳି !
ଅରାଳ କେଶରେ ତୋର,
ଶ୍ୟାମଳ ଆନନେ ଯେତେ !!.

ଅକସ୍ମାତେ ଭେଟାଭେଟି ଅତଳ ଡୋଳାରେ ଏ ଯେ,
ନକ୍ଷୁରୁ ନକ୍ଷୁରୁ ଆଉ
କୁରରୀ କାହାଣୀ ଆଗୋ,
ଆଜି ଯେ ଉଜୁଆ ଓଷା ଶ୍ରାବଣ ନିଶିର ସଖି !
ସିସୃକ୍ଷୁ ବ୍ୟଥାରେ ମନ ଆନନ୍ଦେ ବିହ୍ୱଳ କ୍ଷଣେ
ବିଦ୍ରୋହୀ ବିକଳ ବୃଥା ବ୍ରତ ପ୍ରାର୍ଥନାରେ,
ହେଲା ଅବା ଅକୀର୍ତ୍ତି-କାନ୍ତାରେ ବୁଲି
ଅଖ୍ୟାତି ପନ୍ତାରେ–

(୨)

ନୁଆଁଅ ପତା, ନୁଆଁଅ ପତା
ଶୀତୁଳିଆ ଖରାରେ ମୋ
ପୁରାଣ ପୋଥିରେ ଯେତେ ବିରୋଧ ମିଳନ ହେଲି
ପରା ଆଉ ଅପରାର,
ଅଣୁରେ ଅଣୁରେ ଆଜି
ଅନଣୁ-ବିଳାସେ !

କୁହୁକିନୀ ମରାଳୀର ନିଃସ୍ୱନେ ଶିଞ୍ଜିନୀ ବାଜେ
ବିଳମ୍ବିତ ଅଭିସାରେ ପଲ୍ଲବୀ ଆଳାପ ସାରି
ଅନୂଢା ଷୋଡ଼ଶୀଟିର
ଦ୍ରୁତରୁ-ଦ୍ରୁତତର ଲୟେ
ଅଖଣ୍ଡ-ଖଣ୍ଡରେ।

ବାର୍ତ୍ତା ଯାଏ ବେଦାନ୍ତର
ବିଯୋଗ ଯୋଗରେ ଢଳି;
ନିଷ୍କଳ ଭୂରୁର ନାଚେ ଶୁକ୍ଳିମ ମେଘର ଚୂଳେ
ପ୍ରକୃତି ଗୋ, ବିମୂର୍ତ୍ତ ସାଂଖ୍ୟରେ ତୁ ଯେ!
ପ୍ରାଣର ସଙ୍ଗାଳି ସତେ—
ସକ୍ରିୟ ପୌରୁଷେ ମୋର
ଢ଼ିସ୍କୋରେ ତୁ ଶିଖରିଣୀ
ପାହାଡ଼ୀ-କେଦାର ଝୁଲା,
ସ୍ୱରାନ୍ତରିତା,
ଚର୍ଯ୍ୟା ଜୀବନର ନୂଆ ମିତଣୀ ଗୋ, ନିର୍ଗୁଣେ ତୁ
ଶ୍ରୁତି ଅଶ୍ରୁତିରେ ନିତି
ସତ୍‌ରେ ଉଡ଼ାଇ ଯେତେ ଅସତ୍ ସ୍ମୃତିରେ
ଯନ୍ତ୍ର ଯନ୍ତ୍ରାନ୍ତରେ ପଶି
ଫର୍ଣ୍ଣେସ୍ଁ ଫର୍ଣ୍ଣେସେ ଯେତେ
ଅପୂର୍ବ ପ୍ରୀତିରେ,
ପ୍ରାଚ୍ଛିକ କପୋଳୁ ପୋଛି ବ୍ରାହ୍ମୀ ବୈଷ୍ଣବୀର ଲିପି
ଜହ୍ନି ଫୁଲ ଝରାଇ ଗୋ
ଝୁଁଝରା ପିଞ୍ଜରା ବାଡ଼େ ବିଦେହୀ ଦେହରେ ମୋର।

(୩)

ଶୀତୁଳିଆ ଖରା ଖେଳେ
ମାୟାର ଆଙ୍ଗୁଳି ଚାଳି ମରମୀ,ମରମୀ ଆଗେ!
ମୁକୁଳାଅ କାଞ୍ଚଲା ତୋ, କାଞ୍ଚଲା ଲୋ କନିଅର!
ଗଡ଼େ ଲୋ ଶେଫାଳି-ଶିଶୁ
କାମିନୀର ଶେଯେ ଶେଯେ!
ନ ଆଁସୁ ନ ଆଁସୁ ଆଗୋ ପାଂଶୁଳା ପ୍ରଜ୍ଞାନ-ନିଶି
ହେମନ୍ତୀର ତପସ୍ୟାରେ ଅଗସ୍ତି କୁସୁମେ ଶୋହି!

ନୁଆଁଅ, ନୁଆଁଅ ପତା, କହ୍ଲାରେ କହ୍ଲାରେ ସଖି,
ଝିଅର ପାଉଁଜି କାହିଁ, ପୁଅର ଅଙ୍ଗୀଟା ଆମ ?
ଖେଳଣା ରକେଟ୍ ସଜା ବଜାରେ ବଜାରେ ପଛେ !
ଶିତୁଳିଆ ଖରା ଖେଳେ—ସଜନି ଗୋ, ମିତଣି ଗୋ !
ଅଚିହ୍ନା ଚିହ୍ନାରେ—
ବିବକ୍ଷୁ ବ୍ୟଥାରେ ଝୁଲି !
ସତେ କି ପାଷାଣୀ ହେଲୁ
ଅଶ୍ରୁ ଧୁଆ କୋଣାର୍କର ଶାଶ୍ୱତୀ ପ୍ରତିମା ତୁ କି ?

ଶୀତୁଳିଆ ଖରା ଖେଳେ ଅଛାଡ଼ ହସରେ ତୋର ।
ସଜନି ଗୋ !
କାଳ କାଳ ସକାତରେ
ଉଷୁମୁ ଉଷୁମୁ !!



/ ୨୬୦ /

# ସାମୟିକ

ହେଇରେ ଚାଲିଛି, ହେଇ, ଆଖିର ବୋତଲ !
ହଳଦି, ପାଟଳ, ନାଲି, ମାଳକୁ ମାଳ ଯେ !
ସରବତୀ ପ୍ରୀତିର ଠାଣି, କାକରି ଗରମ,
ଧରେ ନିକି ଧରେ ତାନ ସରବ ଆକାଶେ—
ମୋ ଠେଲା ଗାଡ଼ିରେ ମୁଁ କି ବସିନି ସୁଖରେ !

ତୁମେ କହ ଧରା ହେଲେ ସମାଜ-ଦ୍ରୋହୀଏ
ଭିକ୍ଷାର ବିରୋଧୀ ଯେତେ ଆଦର୍ଶ-ପାଗଳ,
ସଚ୍ଚୋଟ ସୁକୁଟା ସବୁ ସମତା-କାମୀଏ
ଧରା ହେଲେ ମ୍ଳେଚ୍ଛ ଏବେ, କି ଯାଏ ଆସେ ବା
ମୋ ଗଳା ଫୁଂଗାରେ ମୁଁ କି ବାଜୁନି ସ୍ଲୋଗାନ୍ !

ରକ୍ଷିତା ରାତିରେ ଲୋଡ଼ି ବିଭୋର ପୁଲିସ୍,
ଛୁଟିଚି ପିଟିବ ଯେତେ ଚଗଲି ଉଷାରେ !
କାହିଁରେ ବସନ୍ତ କାହିଁ, ବେତାରେ ବନ୍ଧା କି ?
କି ହେଲା କି ହେବ ଡିଏଁ ଶିରାରୁ ଶିରାକୁ
ମୁଁ କି ରେ ଜପୁନି ମୋର ଐତିହ୍ୟ-ମାଳିରେ ?

ହଗ୍ରଙ୍ଗୀ ଦେହର ଖୋଲେ ଘୁମୁରେ ତୋଫାନ
ଚୋରାରେ ଚାଲାଣ ଯେବେ କ୍ଳୀବର ବିଳାସ,
ସ୍ୱଦେଶୀ ଲେନ୍ସରେ ହସେ ଦୟାର ଗହମ,
ଓଠରେ କାମୁଡ଼େ ଚଟି, ଚଟିରେ ଜିଭ ଯେ—
ଉନିଦ୍ର ବ୍ରଣରେ ମୁଁ କି ଚିପୁନି ଗାଲକୁ ?

ଜାହାଜ ସଉଦା ସାରି ଫୋନ୍‌ର ଉଡ଼ାଣେ
ରାସ୍ତାରେ ବୁଣିଲା ଗୀତା, କି 'ଦୀନ ଦୟାଲ୍'
ଝର ଝର ରକ୍ତରେ ହଜେ, ବାଇବେଲ୍ ବାସନା ଅନା,
ଆଲ୍‌ଖାଲା ଭିତରେ ଲୁଚେ ପବିତ୍ର କୋରାନ୍
ମୁଁ କରେ ପିଉନି ନୀରା ମରମ ଠୋଲାରେ !

ବାଜି ଉଠେ ମୁଏଜିନ୍ ଚେପ୍‌ଟା ଟିଣାରେ,
ଆରବ ମରୁରେ ମାୟା, ନିଘଞ୍ଚ ତୃଣ କି !
କି ଜେରୁଜେଲମ ଧୂଳି ନଦିୟା ଖୋଳରେ
ଡ୍ରଇଁରୁମ୍ କୋଣେ ତାଜା, ବଳିଆ ଜଗା ଯେ—
ମୁଁ କିରେ ମାତିନି ଆଜି ମାଦଳ-ପୂଜାରେ !

କବିରାଜ ନାଡ଼ି ଚିପେ ମୋଦକ ମୋଦରେ କାହିଁ—
ଫୋଡୁଚି ଡାକ୍ତରୀ ହସ ଉତାପେ ଶୀତଳ
ବଣିକ ବଧୂର କିଆଁ ଫୁଲିଲା ପେଟଟା !
କେଡ଼େ ପତିବ୍ରତା ସତୀ ଧାର୍ମିକ-ପ୍ରବରା—
ସୋଲର କୁସୁମେ ମୁଁ କି କାଟୁନି ମଜାରେ !

ବନ୍ଧା କୋବି ଗାଲୁଁ ଗାଲେ ଲାଉଆ ଉରୋଜେ,
ସେକ୍ରେଟାରୀ ଭଣ ଭଣ, ଉପାସ ଫାଇଲ;
ଚାଇଁଆ ଚପ୍‌ରାସୀ ମାରେ, ଫାଉରେ ପ୍ରୀତିଟା
ଶ୍ରୀମତୀ ଯେ ଷ୍ଟ୍ରିପ୍‌ଟିଜ୍—କ୍ଲବର ଓଠରେ !
ମୁଁ କି ରେ ଢୋକୁନି ବସି ସ୍ୱରୂପୀ କାଞ୍ଜି ମୋ !

କାନ୍ତରାଟି ଭାରିଯାଟା ଓଲେଇ ଫାଜିଲ୍,
ଦସ୍ତଖତ ମାରି ଆଣେ ହୀରାର ପରମିଟ୍ !
ବିଭାଘର ନିଲାମରେ ଆଇ.ଏ.ଏସ୍. ଅମୂଲ୍
ପକେଟ୍ ଯେ ରଣଝଣ ବାରିକ୍ ସୋଗରେ—
ଶୂନ୍ୟରେ ଶୂନ୍ୟରେ ମୁଁ କି ଗୁଣୁନି ହରିକି !

ଲଙ୍ଗୁଳୀ ଲୀଳାଙ୍କେ ଫିଟେ ଗଣିତ ସୋପାନ,
ବୈଷ୍ଣବୀୟ ଭଗତିରେ କାତର କଲେଜ,
ପାସ୍ ଲୋଡ଼େ ମାଳଞ୍ଚରେ ତରୁଣୀ ଛାତ୍ରୀ ଯେ
ପ୍ରଫେସର ଟୀକା ଲେଖେ ପ୍ରାକୃତ ପ୍ରୀତିର–
ଚରିତ୍ର-ମୂଲରୀ ମୁଁ କି ବାଜୁନି ମେଳାରେ।

ଆସେମ୍ବ୍ଲି ଭବନେ ବିକି ବକ୍ତୃତା ଝୁଡ଼ିଏ,
ହେଇ ଏ ଫେରିଲେ କିଏ ? ଆହା, ମହର୍ଷିଏ !
ଗୋଦାମ୍ ଗଦିରେ ଝଡ଼େ ସୁନାର ବୋତାମ୍,
ଅଚେତ ବିଜ୍ଞାନୀ ଗଢ଼େ ମୁଦ୍ରାର ମୋହର–
ମୁଁ କିରେ ଦଳୁନି ବସି ଦେଶର କପାଳ !

ମନ୍ତ୍ରିତ୍ୱର ଗୀତୁଁ ଗୀତେ ମାର୍କିନ୍-ଭଣିତା,
ଗୁଳିର ରାଗିଣୀ ଛୁଟେ ପଞ୍ଜରା ଭେଦି ଯେ,
ପେଟ୍ରୋମାକ୍ସ ବହି ଶିରେ ବିଦ୍ୟୁତ ଆଲୋକେ
ବିବାହର ପଟୁଆରେ ଦୁଃଖିନୀ ଦଳିତା ଚାଲେ–
ମୋ ଜିପ୍ ଛୁଟିଛି ଅନା, ଜହ୍ନକୁ ଟପି ଯେ !

ମୁଁ ଆଜି ଦେଖୁଛି ସବୁ, ଦେଖୁନି କିଛି ଯେ !
ହଳଦି, ପାଟଳ, ନାଲି ଆଖିର ବୋତଲ !
ହରିଜନ ବଧୂ ଶିରେ ମଳର ଟୋକେଇ,
ମେଙ୍ଗ ନଈର କୂଳେ ଜଳୁଚି ଚିତାଗ୍ନି, ଅନା !
ଗଭୀର ସ୍ନେହର କ୍ରୋଧେ ଥରୁଚି ମୁଠା ମୋ–
ମୁଁ ଯଦି ମରିବି, ତେବେ ଜୀଇଁବ ତୁମେ କି ?



# ନିଷ୍କରୁଣ କରୁଣାର

ମୁଁ ଆଜି ଉତ୍ତର ଖୋଜେ–
ଆର୍ଷ ବିଷାଦରେ ନୁହେଁ,
ମୋକ୍ଷ-କାମନାରେ ମୋର,
କୃଚ୍ଛ୍ରତମ ତପସ୍ୟାର ଆଦିମ ଅରଣ୍ୟେ କାହିଁ
ଅହଂମୟ ସମାଧିର ହିମାଦ୍ରି-ଶିଖରେ ନୁହେଁ
ନୁହେଁ ନୁହେଁ ବିନ୍ଧ୍ୟାଦ୍ରିର ତିମିରିତ ନୀରନ୍ଧ୍ର ଗହ୍ୱରେ
ତ୍ରିତାପରୁ ତ୍ରାହି ଲୋଡ଼ି (କି ଅବାଁ ତ୍ରିତାପ ନୂଆ ?)
ବାଲୁକା ପ୍ରାନ୍ତରେ ନୁହେଁ,
ଲୁପ୍ତ ସରସ୍ୱତୀ ତୀରେ–

ମୁଁ ଆଜି ଉତ୍ତର ଖୋଜେ–
ଦିଗ୍-ବିଦିଗେ ପ୍ରସାରିତ
ସୁବର୍ଣ୍ଣିଳ ଆକାଂକ୍ଷାର ପ୍ରପଞ୍ଚ ମଞ୍ଚରୁ
ଊର୍ଦ୍ଧ୍ୱୁଁ ଊର୍ଦ୍ଧ୍ୱେ ପ୍ରକ୍ଷେପାଇ ନିଜକୁ କନ୍ଦୁକ ସମ
ସ୍ୱେଦମୟ ରୋମାଞ୍ଚର ଭୟାର୍ତ୍ତ ଆନନ୍ଦେ ମୋର,
ଅକଳ୍ପିତ ପ୍ରାଚୁର୍ଯ୍ୟରେ ଭଗ୍ନାଂଶ ବିଭ୍ରମେ !

ମୁଁ ଆଜି ଉତ୍ତର ଖୋଜେ–
କଂକାଳର କଳରୋଳେ
ପ୍ରମତ୍ତ ଦୈନ୍ୟର ନୃତ୍ୟେ
ପୁଂଜିର ପ୍ରାସାଦ ଚୂଳେ
ଯୌନଦ୍ୱର ପ୍ରମୋଦ ଉଦ୍ୟାନେ,
ସ୍ୱର୍ଣ୍ଣିମ ଶ୍ମଶାନ ପାଶେ
ପ୍ରଦୋଷ ଉଷାରେ
ସତ, କେତେ ରୁଚିରାର ରୂପର ବୈଚିତ୍ର୍ୟେ ହସି
ଚିତ୍ତର ବକ୍ଷେପେ !

ମୁଁ ଆଜି ଉତ୍ତର ଖୋଜେ—
ବିଜ୍ଞାନୁ ବିଜ୍ଞାନେ ସେ କି ଚମତ୍କୃତି ପଥେ ପଥେ
ଦର୍ଶନୁ ଦର୍ଶନେ ପୁଣି,
ଅନିର୍ଣ୍ଣେୟ, ଅନିର୍ଣ୍ଣୀତ, ଅତତ୍ତ୍ୱ-ତତ୍ତ୍ୱରେ;
ଦୁର୍ନିବାର ପ୍ରତିଭାର ବିପ୍ଳବୁଁ ବିପ୍ଳବେ,
ଉଦ୍‌ଭାବନୀ ସାଧନାର—
ଭାବର କବନ୍ଧରାଜି ନାଚେ, ମହୋଲ୍ଲାସେ ନାଚେ !
ଶୋଷଣ ଲିପ୍‌ସାରେ ସୃଜେ ଈର୍ଷା ଅସୂୟାରେ କେତେ
ରକ୍ତର ସରିତ୍-ସ୍ୱରେ ସମରୁ ସମରେ
ସତ୍ତ୍ୱୁଁ ସତ୍ତ୍ୱାନ୍ତରେ
ଗୁଣାନ୍ତରେ, ନିର୍ଗୁଣର ବ୍ରହ୍ମ-ବିବର୍ତ୍ତରେ—

କାହିଁଯାଏ ବୁଦ୍ଧିର ବିତର୍କ ଯେତେ
ପ୍ରଜ୍ଞାର ବିଚାର ?
ଉଠେରେ ଆଜାନ୍ ଉଠେ
ମସ୍‌ଜିଦ୍ ଗମ୍ବୁଜେ ଭାଜି,
କେତେ ଯେ ଗୀର୍ଜାରେ ଯୀଶୁ
ଜ୍ୱଳନ୍ତ ମହମ ଖାଲି
ତରଳି ତରଳି !
ଗ୍ରନ୍ଥୀର ଭଜନ ନିତି ରକ୍ତରେ ମଜ୍ଜନ ଯେବେ
ଓଁ କାର ମହିମ୍ନ ସ୍ତବ
ମୁଦ୍ରାର ମନ୍ଦିରେ !

ମୁଁ ଆଜି ଉତ୍ତର ଖୋଜେ—
(ଖୋଜିନି କି ଯୁଗୁଁ ଯୁଗେ ?)
ଧର୍ମୁ ଧର୍ମାନ୍ତରେ !
ଧର୍ମାନ୍ଧର ଧ୍ୱଜା ଉଡ଼େ
ଉଡ଼େ ମତାନ୍ଧର,
ସଂଭୋଗେ ବୈରାଗ୍ୟେ ଠିକ୍
ଦୁର୍ଭୋଗେ ସୌଭାଗ୍ୟେ

ଜୀବିକାର ଅଭିଯାନେ
ଜୀବନ-ବିତୃଷ୍ଣା ମେଳେ
ଶିଶୁର କରୋଟି ଫୁଟେ,
ଛିନ୍ନଦଳ ତାରୁଣ୍ୟରେ ହୃତ୍‌ପଦ୍ମ ସଜ୍ଜାରେ—

ମୁଁ ଆଜି ଉତ୍ତର ଖୋଜେ—
ବିଦ୍ଧ କରି ପୃଥ୍ୱୀକୁ ଏ
(ଲେସର) ରଶ୍ମିରେ ମୋର
ମେରୁରୁ ମେରୁକୁ ପୁଣି
ପୃଥୁଳା ତା ବିଷୁବ-କଟୀକୁ
ଉଦ୍‌ବେଜାଇ ମହାକାଶ—
ବାରମ୍ବାର ପ୍ରଜ୍ୱଳନେ—ନିର୍ବାପନେ
ଭାସ୍କରୁଁ ଭାସ୍କରେ
ଉସ୍ପରାଇ ଉଦ୍‌ବେଳାଇ,
ବିପୁଳା-ପ୍ରଳୟ-ଊର୍ମି ସାଗରୁଁ ସାଗରେ—

ମୁଁ ଆଜି ଉତ୍ତର ଖୋଜେ
ନିର୍ନିମେଷ ଦୃଷ୍ଟିରେ ମୋ
ସ୍କାଲ୍‌ପେଲ୍ ହାତରେ—
ମୃତ୍ୟୁର ସର୍ଜନ ମୁଁ ଯେ !
ଅହେତୁକ ହେତୁ ଲୋଡ଼ି
ରୁଗ୍‌ଣ ଚେତନାର ଯେତେ
ବୁଦ୍ଧି-ବିକୃତିର !

ମୁଁ ଆଜି ଉତ୍ତର ଖୋଜେ—
ଅଧରୁଁ ଅଧରେ ଝୁଲି,
ଶିଶିର ବିନ୍ଦୁଟି ସମ,
ସୁକ୍ଷୀନ ଅଭ୍ରରେ ଶୁଭ୍ର,
ଅଙ୍ଗୁଳି ପ୍ରମାଣେ ସ୍ନିଗ୍ଧ
ପତତ୍ରୀ ପରରେ ।

/ ୨୬୬ /

ମୁଁ ଆଜି ଉତ୍ତର ଖୋଜେ
ଆରାମେ ବିରାମେ ନୁହେଁ—
ବିଦ୍ୟୁତ୍-ଚୁମ୍ବକ କ୍ଷେତ୍ରେ;
ଆଣବିକ ନିଃଶ୍ୱାସରେ ଧୂସର କୁଜ୍‌ଝଟୀ ତଳେ
ଚୁମ୍ବନୁ ଚୁମ୍ବନେ,
ଦୁର୍ବାର ପ୍ରୀତିର ତାପେ
ଅଟୋରୁ ରୋବୋଟ୍ ମୁଖେ
ଅୟୁତ ଆତ୍ମାର ମୋର ସ୍ପନ୍ଦିତ ଦୀପ୍ତିରେ !

ନା, ନୁହେଁ ମୁଁ ଉଦ୍‌ଭ୍ରାନ୍ତ ନୁହେଁ
ଉଦ୍‌ଭଟ-ବିଳାସୀ !
ନିଜକୁ ଚିତ୍ରିଚି, ଚିତ୍ତେ
ନିର୍ମାଣେ ନିଜକୁ ନିତି, ଧାତୁରେ ପ୍ରସ୍ତରେ,
ନିଜକୁ ପ୍ରାର୍ଥନା କରି—ନିଜର ପ୍ରତିମା ପାଶେ— !

ଖୋଜେ ମୁଁ ଉତ୍ତର ଖୋଜେ—
ନିଷ୍କରୁଣ, କରୁଣାର ଆର୍ଦ୍ର ବେଦନାରେ,
ନିଜର ସୃଷ୍ଟିରେ ମଗ୍ନ
ସୃଷ୍ଟିର ଧ୍ୱଂସରେ ଆଜି !
ନୁଏଁ ନୀରବତା ନୁଏଁ
ସ୍ତବ୍ଧ ନିରୁତ୍ତର ତୁମେ, ପ୍ରଳାପ-ମୁଖର ସବୁ

ନିରୁତ୍ତର ! ବିଶ୍ୱ ନିରୁତ୍ତର ଆଜି !

କାହିଁ ମୋ ଉତ୍ତର କାହିଁ ?
କାହିଁ ମୋ ଉତ୍ତର ?—



# ଫୁଲ ହୋଇ ପାଉଁଶର–

କେବେ କିଏ ଭସାଇଥିଲା
ନାହାଟିଏ– !
ଉଡ଼ାଇ ଉଡ଼ାଇ ଫୁଟ୍‌କିମାନ
ପୁରୁଣା ତାର ମନରେ....

ଯେଉଁ କୂଳରେ ନ ଥିଲା
ଚଳେ ବୋଲି ପାଣି,
ଅଗନା-ଅଗନି ବିଶ୍ୱାସରେ
ଗୁଳ୍ପିଳ ବିଷାଦରେ–
ଘୁଙ୍ଗାଳି ହୋଇ ନିସଙ୍ଗ–
ଆଶ୍ୱାସଟିଏ ପବନ
ବାଉଳି ବାଉଳି ହୋଇ ଖୋଜୁଥିଲା ନିଜକୁ
ସେଇଠି ସେ ଲାଗିଥିଲା ଯାଇ...

ହକାଳି ହକାଳି ରାତିର ଶାଢ଼ୀଟିକୁ
ଛଡ଼େଇ ଛଡ଼େଇ ମାୟାର ମଲୁଖ ଯେତେ–
ଅଣ-ଉକୁଆଁ ଆଶାର ସକାଳଟାରେ
ଛାଟୁଥିଲେ କେତେ କିଏ କବରୀଟିମାନ !

ସେଇ ସେ ପାହାଡ଼ର କଡ଼େ କଡ଼େ
କଚାଡ଼ି ହୋଇ ନାଚୁଥିଲା
ଶିଉଳି ଫୁଲର ଢେଉ !
ସେଇଠି ସେ ଛୁଇଁଥିଲା,
ଛୁଏଁ, ପୁଣି ଛୁଏଁ–
ବିଛାଡ଼ି ଦେଇ କେଉଁଠୁ–ଅଣାକାରୀ କି !

କେତେକୀର ପାଖୁଡ଼ାମାନ, ସୌରଲୋକର—
କିଳିକିଳା ରାବ ଶୁଭୁଥିଲା—ଶୁଭେ ଦୂରରୁ, ହେଇ—
ଦେଖାରେ ଅଦେଖା,—ମହାକାଳର ବା !
ଫିଟି ପଡୁଥିଲା, ପଡ଼େ, ପାତାଳର ଘୋଡ଼ଣି—

ପୋଡ଼ା ପୋଡ଼ା ମେଘର
ଛିଗୁଲିଆ ଛାଇ ସବୁ—
ଗପ କରୁଥିଲେ ଟୁପ ଟୁପ—ବର୍ଷି ନ ବର୍ଷି—
ସେଇଠି ସେ ଖେଳିଥିଲା ଆସି ଟିକିଏ—
—ଖେଳେ କ'ଣ ଆଜି ?

ସ୍ୱପନ ମଳର ଟୋକେଇମାନ ବହି ମଥାରେ
କିଶୋରୀଗୁଡ଼ିଏ, ରାସ୍ତାରେ !
ଟ୍ରକ ତଳେ ଦାନ୍ତ ନେଫେଡ଼ି ମଳିଚିଆ ଫ୍ରକ୍-ପିନ୍ଧା ଝିଅଟି
ଖୋସାରୁ ସେବତୀ—କିର୍ କିର୍ ହସରେ
ବିକ୍ରିହୁଏ ଦିନୁଟିମାନ ।

ପୁଥିଲା କି ତନ୍ତ୍ରୀର—
ଶୂନ୍ୟତାର ତଟରେ
ଡୋଳା-ନେଉଟା ବେଳରେ—
ଦୋହଲି ଥିଲା—ଦୋହଲି ଆସି ଦେହରେ ପୁଣି—
ଝୁଲ୍ ଝୁଲ୍କା ସ୍ୱରରେ—
ସେ କି ଶକ୍ତ ପ୍ରତିଶ୍ରୁତି ?
ଗୋଟାକୁ ଗୋଟା ଓଲଟି ପଡ଼ିଥିଲା—ପଡ଼େ କଣ, ଆଃ,
ଦିଅଁଙ୍କ ଖଟୁଲୀ—
ଜାଳେଣି—ହେଲା—ଦିନ ଶେଷର ଚୁଲିରେ, ହୁଏ ପୁଣି—
ସିଂହାସନର କାଠ—
ଚନ୍ଦନର କି ଓକ୍ର !

କୁଟିଳ ଆଉ ଶଂଖଳ ଯେତେ—
ବାତୁଳ ସବୁ !
ଦର୍ଶନର ପଥରେ—
ବାତୁଳ ସବୁ !

ବିଜ୍ଞାନର ଗାଉଣାରେ ଅଧରା—
ତାନ୍‌ପୁରାରେ ଲୟ ପରି ?

ଓସ୍ତାଦି ହାହାର ପଛେ ପଛେ—
କାହା ପାଇଁ—ତୁମ ପାଇଁ ମୋ' ପାଇଁ ନୁହେଁ ତ—
ଭସାଇଥିଲା ନାହାଟିଏ କିଏ—
ଉଡ଼ାଇ ଉଡ଼ାଇ ଫୁଟ୍‌କିମାନ
ଆନନ୍ଦରେ
ଭାସି ଭାସି ଚାଲିଥିଲା ସେ, ଚାଲେ
ଶୂନ୍ୟ ଏକ ପୂର୍ଣ୍ଣତାରୁ
ପୂର୍ଣ୍ଣ ଏକ ଶୂନ୍ୟତାକୁ—
ପ୍ରବଳରୁ ପ୍ରବଳତର ଝଡ଼ ବତାସିରେ
ଅଜସ୍ର ପରମାଣୁର—

ଆଃ, ଚାଲିଚି ସେ, ଚାଲେ ଆଜି—
ଜଳି ଯାଏ ପୃଥ୍ୱୀ ଯଦି—

ମୃତ୍ୟୁର ଆବାହନରେ ଆମର
ନିଉକ୍ଲିଆର ଯୁଗରେ—
ଚାଲିବ ସେ—ପାଉଁଶର ଫୁଲ ହୋଇ...
ଆଉ ଏକ ଗ୍ରହକୁ,
କି ସୌର ଲୋକକୁ—
ନିଶ୍ଚୟ !



# ଆଜି ତ ମହାପାର୍ବଣ ରେ

ଆଜି ତ ମହାପାର୍ବଣ ରେ,
ହୃଦୟ ଦେଇ ହୃଦୟ ନେଇ
ପାଗଳ ହେଲୁ, ପାଗଳ ହେଲୁ
ଅଶ୍ରୁହୀନ ଆତ୍ମା ଆମ
କାଳର ବୁକେ ଖେଳାଇ ଦେଲୁ ।

ଆଜି ତ ମହାପାର୍ବଣରେ
ଆଜି ତ ରସ-ସଂହୃତି;
ଆଜି ତ ମନ-ମାର୍ଗଣରେ
ଆଜି ତ ହସ-ସଂସୃତି;
ଯେତେ ରେ ଓଷା ପର୍ବ ନୁଏ—
ଯେତେ ରେ କ୍ରୀଡ଼ା-ଗର୍ବ ଥାଏ
କେହି ଏ ଜାତି ଜନ୍ମଦିନେ
ଜାଗୃତିର ଆରତି ପାଏ ?
ଭିତରେ ଦୋଳ, ବାହାରେ ଦୋଳ,
ଝୁଲଣ ମେଳେ ଆହାରୀ ଆଉ ମାହାରୀ ଗୋଳ,
କାହାଳୀ-କୋଳେ ବ୍ୟୁଗଲ୍-ରୋଳ,
ଶୂନ୍ୟ ତରି ହୃଦୟ ଥରେ
ପୂର୍ଣ୍ଣ କରି ହୃଦୟେ ନେଲୁ,
ଆଜି ତ ଆମେ ପାଗଳ ହେଲୁ !—

ନୂଆର ଲୁହେ ପୁରୁଣା ହସ
ଯାଏ କି ଭାସି, ଯାଏରେ ସତେ
ରକ୍ତାପ୍ଲୁତ ଜୀବନ ପଥେ ?
ଦେଉଳ ହୁଏ ଯନ୍ତ୍ରଶାଳା,
ଦେଖାଏ ନୂଆ ମନ୍ତ୍ରମାଳା,
ନୟନେ ଏ କି ବାଷ୍ପ ଭରେ,
ଆମେ କି ନୂଆ ବହ୍ନି ସ୍ୱରେ
ଜୀବନ ମେଲୁ ପାଗଳ ହେଲୁ !...

ଆଜି କି ଆଶା, ନନ୍ଦିତା !
ଆଜି କି ପ୍ରୀତି ବନ୍ଦିତା ?
ଗଗନେ ଫୁଲ-ଫଲ୍‌ଗୁ ଧାରା
ଧରାରେ ତାରା ସ୍ପନ୍ଦିତା ?
ମୁଗ୍‌ଧା ଆମ ଜନ୍ମଭୂମି
ପିଆଏନି କି ସ୍ତନ୍ୟ ତା'ର ?
ତାମ୍ର-ଜୟୀ ସ୍ୱର୍ଣ୍ଣ-ଜୟୀ
ଓଠରେ ଲୁଳେ
ଶ୍ୟାମଳତମ ସନ୍ତୋଷର
ଆହା କି ସରୁ ଶସ୍ୟଗାର !
ରଶ୍ମି-ଧୂଳି-ପଣତେ ଗଢ଼ି
ଆମେ ତ ଧାଉଁ,
ଅବାଧେ ଆଜି ଆକାଶ ବୁକେ ଦଉଡ଼ି ପଡ଼ି
ମେଘରୁ ମେଘେ ବାଗୁଡ଼ି ଖେଳେ—
ନିମେଷ ଲାଗି ଦୁଃଖ ଭୁଲି
ପାଗଳ ହେଲୁ ।

ବୁଦ୍ଧ ଯେତେ, କୃଷ୍ଣ ଯେତେ
ଗାନ୍ଧୀ ଯେତେ, ଲେନିନ୍ ଅବା
ପାଗଳ ଆମେ ଆଗୁଳହୀନ—
ଆମେରେ ସବୁ ଆମେରେ ସବୁ
ବସାଇ ପ୍ରତି-ଦୀପ୍ତ ସଭା...
କାହିଁରେ ଦଳ ବିଦଳ କଥା ?
ଗୋଟିଏ ସୁରେ ମତ୍ତ ମଥା,
ଆମେରେ ନୀପ-ପଦ୍ମ-ଜବା,
ଜନ୍ମଭୂମି ଗଳାରେ ଦୋଳୁ
ସଜାଇ ତାର ସ୍ୱପ୍ନ-ଗଭା !
ଆମେ ଯେ ମହାପାର୍ବଣର
ପୂଜ୍ୟ ପୂଜା, ପୁଣ୍ୟ-ପ୍ରଭା !
ଭୁଜରେ ଭୁଜ ଭିଡ଼ିରେ ଥରେ
ଆମେ ଯେ ଏଇ ପାଗଳ ହେଲୁ !

ଶତ୍ରୁ ଯଦି ପାଳଟି କିଏ–ଆମରି ପ୍ରାଣ-ପ୍ରଣିରା ଡିଏ–
କୋଟିଏ କୋଟି ଚିତ୍‌କଣାର
ହସର ରସ-ଖଡ୍‌ଗ ଧାର
ପ୍ରହରୀ ଆମେ ଅନାଇ ରହୁ,
ଲୌହ ମୃଦୁ ପରଶ ତାର
ହିଂସ୍ରୁକର ବକ୍ଷ ସୀଏଁ !

ବ୍ୟାଟନ ରଖ ପୁଲିସ ଆରେ !
ଫାଇଲ ଭୁଲ କିରାନୀ କୁଳ,
ହୃଦରେ ହୃଦ ଶାସନ ଜାରି !
ସ୍କୁଲ ରେ ଆଜି ବୁଦ୍ଧି-ମୂଳ–
ଅଧ୍ୟାପକ-ଚେତନା ଜୁରି
ଛାତ୍ର ଉଡ଼ା ସ୍ୱପ୍ନ-ଝୁରି !
ମୁକ୍ତି ପଥେ, ମୈତ୍ରୀ-ଦୁଆ
ଆମେ ରେ ଚାଷୀ ଶ୍ରମିକ ନୂଆ,
ପାଗଳ ହେଲୁ, ପାଗଳ ହେଲୁ !!
ଆଜି ତ ମହାପାର୍ବଣ ଏ,
ହୃଦୟ ଦେଇ ହୃଦୟ ନେଲୁ !!



# ବିଭ୍ରାଟ

ଆସିଥିଲା ଭୋଟଦେଇ, ଚାଲିଗଲା ସିଏ।
ଭୋଟ ଦେଇ ସାରି ତାକୁ
ଅନାଅନି ହେଉ ଆମେ 'କିଏ ସେ ଯେ କିଏ?'

ପଢ଼ିନୁ ତା ବାର୍ତ୍ତା କାହିଁ ଦୂରନ୍ତ ବସନ୍ତେ ଲବେ
ଶୁଣିନୁ ତା' କିଶଳୟେ କୁହୁର ସ୍ଲୋଗାନ୍।
ନଗର ପଲ୍ଲୀରେ ଯେତେ ମରୁଡ଼ିଆ କାମନାର ବିକଳ ଉତ୍ସବେ
ଭେଟିନୁ ତା' ହୃଦୟର ଅମୁକ୍ତ ତୋଫାନ।

ମୁହେଁ ମୁହେଁ ପଥେଘାଟେ
ପ୍ରକଟିତ ଛବି ତାର, ଚିହ୍ନୋଟ କାଗଜ।
କେତେ କେତେ ପ୍ରାର୍ଥୀମେଳେ, ବଳ ଆଉ ବିଭବର ଅପୂର୍ବ ବଡ଼ିମା ଖେଳେ
ସେ କିରେ ଅନର୍ଥ ଏକ? ଶ୍ୱେତପୀତ ଧବଳର ବର୍ଣ୍ଣିଳ ବିପାକେ
କବୋଷ୍ଣ କୁସୁମ ସେ କି? ମିଶ୍ରରେ ଅମିଶ୍ର ସେ କି ପ୍ରତୀକ-ପ୍ରମାଣେ
କି ମହା ମାମଲା ସେ କି, ଅଯତ୍ନେ ତାଚ୍ଛଲ୍ୟେ ବଢ଼ି ହୋଇନି ଖାରଜ।
କେମନ୍ତେ? କେମନ୍ତେ ହେଲା ଅକ୍ଲେଶେ ବାରଜ?

ଆସିଥିଲା ଭୋଟ ଦେଇ, ଚାଲିଗଲା ଭୋଟ ନେଇ
କି ଧୀର ଲଳିତ ପଦେ
ମଧୁର ଆମୋଦ ମଦେ, କି ଭାଷା ଗଦ୍-ଗଦେ
ଅବାସ୍ତବୀ କଳ୍ପନାର ଡାକବାଜି ରୋଳେ ରୋଳେ, ପ୍ରାଣର ଉଲ୍ଲୋଳେ
ବିଦ୍ରୋହୀ ବେଣୁଟି ସମ, ଦୃପ୍ତ, ଅଭିରାମ?
ତୀର୍ଯ୍ୟକ୍ ହସଟି ତାର ଓଷ୍ଠ ପୁଟେ ଲୁଚି ଯେବେ ଚିରିଲା ମୁହୂର୍ତ୍ତ ଆମ—
ବାଧିଲାନି ଆଘାତ ଯେ, କାରୁଣ୍ୟେ କୋମଳ ଏଡ଼େ,
ହେଲା କି ଲାବଣ୍ୟ-ତୁଳୀ, ସଂଶୟେ ଆରାମ ଆଣି ବିଚାରେ ବିରାମ!

/ ୨୭୪ /

କିଏ ସେ ଯେ କିଏ ?
ଆମେ ଯେବେ ଶୋଇଥାଉ
ସେ କି ରେ ସୁବୋଧ ଅତି, ଚିଏଁ ଏକା ଚିଏଁ ?

ଶତାବ୍ଦୀ ଚଉଠେ ହେଲା !
ସ୍ୱାଧୀନତା ପଣ୍ୟ ସମ, କେତେ କିଏ ହେଲା, ନେଲା !
ଥିଲା କି ତା' ଶିରସ୍ତ୍ରାଣ ହିଂସ୍ରତା, କୀର୍ତ୍ତିର ଯେତେ ଯୁଯୁତ୍ସୁ ଯୁଗର
ଥିଲା ଦେହେ ସାରଲ୍ୟର ଛଦ୍ମ ଆଭରଣ ?
ଆଣବିକ ବାଣିଜ୍ୟର କୁଟିଳ ଆସ୍ଫୋଟେ
ବିନୟ ବାହୁଲ୍ୟେ ଯେତେ ହତ୍ୟା—ପ୍ରାବରଣ !

ସଂସ୍କୃତିର ନବ୍ୟ-ନ୍ୟାୟ-ଘୋଣାର ଘୂତ୍କାରେ, ଶାନ୍ତିର ଥୁତ୍କାରେ
ବିବେକ, ବିଚାର, ବୋଧ୍—ଚାତୁର୍ଯ୍ୟେ ବିରୋଧୀ—
ସୁବିକ୍ରୀତ ସାହିତ୍ୟେ କି ବିକୃତ ବିଜ୍ଞାନେ ଅବା କି ତନ୍ତ୍ର— ବ୍ୟାଖ୍ୟାନେ,
ସୃଜିଲା ସମ୍ମୋହ ସେ କି ସାମ୍ୟର ଯୋଜନା ରୋଧି,
ମେଲିଦେଲା ଇନ୍ଦ୍ରଜାଲ ସ୍ୱାର୍ଥେ ଶଠତାର—
କେମନ୍ତେ ଭୁଲିଲୁ ଆମେ, ଭୋଟ ଦେଲୁ ଅନ୍ଧ ଭଳି,
ଆମେ କି ଶୀକାର ହେଲୁ ସୁସତ୍ୟ-ହନ୍ତାର ?

ସୁବିଜ୍ଞ ଶୃଗାଳ ସେ କି ଲୁବ୍ଧ ଗୃଧ୍ରଟିଏ ?
ମନ୍ତ୍ରଣା ବିରଚି ବୁଲେ ବିବରୁଁ ବିବରେ କେତେ
ଆଦିମ ଦର୍ଶନେ ଯେତେ ଖିଙ୍କାରି କୌତୁକେ ପୁଣି
ଆଧୁନିକ ଚେତନାର ବାଲୁକା ପ୍ରାନ୍ତର ପରେ ଡିଏଁ ଖାଲି ଡିଏଁ !
ନିଷ୍ଫଳ ଆମେ ରେ ଯେବେ ବିମୂଢ଼, ବିମୂର୍ତ୍ତ ସବୁ
ସତତ, ଉତ୍ପଦ୍ୟମାନ,—ଜିଜ୍ଞାସାରେ ପିଏ— ?
ସେ କିରେ ଆକର୍ଷି ଆମ ନିରକ୍ତ ଧମନୀମାନ କରେ ଖିଏ ଖିଏ ?

ଅଛି କି ତା ବହୁ ବୃତ୍ତି ସହସ୍ର ପ୍ରାସାଦ ?
ପାଇଛି କି କ୍ଷମତାର ମଦିର ଆସ୍ୱାଦ
ସୌଦାଗରୀ ସଭ୍ୟତାର ସେ କି ତେବେ ତୁଲୁ ତୁଲୁ
ଅନ୍ନରେ ମିଶାଇ ଗୋଡ଼ି—ପୁଣ୍ୟ ପରମାର୍ଥ ଲୋଡ଼ି—

ଲୌହରେ ମୃତ୍ତିକା ଯୋଡ଼ି—ସମାଜର ଭିତ୍ତିମାନ ଧୀରେ ଭୁଷୁଡ଼ାଇ
ବିଷାକ୍ତ ନିଶ୍ୱାସେ ତାର କୋଟି କୋଟି ଜୀବାଙ୍କୁର ଦର୍ପେ ଉଜୁଡ଼ାଇ,
ମୁଦ୍ରା-ଚକ୍ରବାଳେ ମେଲି ଅନାସକ୍ତି-ଖାତା
ପୁରସ୍କାର ବୁଣି ବୁଣି ବଟସ୍କର ହାତୁଁ ହାତେ, ବୋଲାଇଛି ଦାତା !
ଉକ୍ରୋଚେ ଧରଣୀ ଲୁଟି, ନଥିରେ ଚାଲିଚି ଛୁଟି,
ଆଃ କି ନିର୍ମଳ ସତେ ! ମନ୍ତ୍ରୀରେ ନଚାଇ କେତେ
ଲଭିଚି ପଦବୀ ପଦ, ବୋଲାଇଚି ଦେଶସେବୀ, ବୋଲାଇଚି ତ୍ରାତା !
ସେ କି ବଳୀୟାନ ଏଡ଼େ ? ଉଧାର-ପୁଞ୍ଜିରେ ଚୁଷି ଯଶସ୍ୱୀ ମହାନ !
ମୃଦୁହାସେ ଦଳିପାରେ ଜାତିର ସମ୍ମାନ !

ବିଳାସ ଆଳୟେ ଖାଇ ସନ୍ତୋଷର ଦାନା—
କେଉଁ ଦଳଭୁକ୍ତି ନୋହି ସବୁରି ସଙ୍କେତ ସାଜି
ନିର୍ଭୟେ ଉଡ଼ାଇ ଯାଏ ନିଜ ଅର୍ଥ-ବାନା
କି ଧର୍ମ-କୂଟରେ ସତେ ଅକାୟ ପୁଟରେ—
କିଏ ସେ ଯେ କିଏ ?
ପ୍ରଳୟ-ତାଣ୍ଡବେ କେବେ ନୁହେଁ ତ ରାଗିଣୀ ମାୟା, ଗୁଣ୍ଡକିରୀଟିଏ ?

ହେଇ, ଆମେ ଖୋଜୁଁ ତାକୁ ପ୍ରାର୍ଥୀ-ତାଲିକାରେ—
ନିରକ୍ଷର ବାତୁଳଟା ? ଏ ଯୁଗର ବେଠି ସେ କି ? ମାଂସର ବେଭାରୀ ।
ପୋତିଛୁ ତଡ଼ାଗ, ହ୍ରଦ, ପ୍ରଭୁତ୍ୱେ ଉନ୍ମାଦ ଅବା
କୋଟି ପ୍ରାଣ—ପ୍ରପଞ୍ଚର ପ୍ରଭୁ, କ୍ଷେତ୍ର ଅଧିକାରୀ
ନିର୍ଲୋଭ ମମତା ଘେନି ଗରଳ ଉଦ୍‌ଗାରି,
ଜନ୍ମାଏ କଳହ ଲୀଳା ନିଜେ ସେ ନିଜର ମିତ୍ର, ନୁହେଁ କା ଭଗାରି !
ନୁହେଁ ସେ ତ ଅନ୍ୟାୟର ତୀବ୍ର ପ୍ରତିବାଦ ?
ନୁହେଁ ସେ ତ ଶ୍ରମିକର ଶୋଷଣେ ବିବାଦ,
ଦୁର୍ନୀତିର ପ୍ରତିଶୋଧ, ସ୍ୱୈରତ୍ୱର ପ୍ରତିରୋଧ
ନୁହେଁ ତ ନିର୍ଜୀବ ସ୍ଥାଣୁ—
ଉଜ୍ଜ୍ୱଳା ବାଣୀ ସେକି
ଆମକୁ ତା' ସମର୍ଥନେ ତେଣୁ ନେଲା ଟାଣି ?

ହେଇ, ଆମେ ଖୋଜୁ ତାକୁ...ଶୂନ୍ୟ ମାଳିକାରେ ପୁଣି,
ଆକାଶ ଦି'ଭାଗ ଯେବେ, ଧରଣୀ ଦି'ଭାଗ !
ଫାଲ୍‌ଗୁନ ବୀଥିରେ ଯେବେ
ଝରି ପଡ଼େ ଯୌବନର ମୁମୂର୍ଷୁ ସରାଗ,
ଜ୍ୱଳନ୍ତ କାଳର ସେ କି ଅମଳିନ ବେଦନାର ସୃଜନୀ କରାଳ—
ବେହିସାବୀ ଜୀବନର ଉଡ଼ନ୍ତ ଚିରାଳ !

ନୁହେଁ ସେ ତ ପ୍ରତାରଣା ମୈତ୍ରୀ ପତାକାର, ମୁଖେ ରଟି ସାମ୍ୟର ଭା
ରଚେ ନାହିଁ ସୁଚତୁରେ ଅସାମ୍ୟ ଆରତି !
ହାରେ ନାହିଁ, ଜିତେ ନାହିଁ, ନିଃସ୍ୱାର୍ଥୀ ସତ୍ତମ ! ପ୍ରୀତିର ଆତତି—
ମାଗେ ନାହିଁ, କିଛି କାହିଁ ରଖେ ନାହିଁ ଦାବୀ,
ଲୋଡ଼େ ନାହିଁ ବିଜୟ-ମାଲ୍ୟ ଶାସନର ଶୋଷଣର କଳୁଷାକ୍ତ ଚାବି ?
ପ୍ରତ୍ୟହର ଫୁଲଫଳେ ଲୁଣରୁ ଲୁଆଏ ?
ଆମେ ଯେବେ ଭାସୁ ବୁଡୁ ତମିସ୍ରା ପ୍ରଳୟେ ନିତି
ଆଲୋକ କଣିକା ସେ କି
ଆଗାମୀର ଶାବକରେ ଆଦରେ ଖୁଆଏ ?
କିଏ ସେ ଯେ କିଏ ?
ସକଳ ଯନ୍ତ୍ରଣା ପରେ କି ମହାଯନ୍ତ୍ରଣା ସତେ !
ଯନ୍ତ୍ରଣା ଅକ୍ଷୟେ ତାର ହୃଦୟର ଆଲୋଡ଼ନେ ହୃଦୟ କି ବିହେ ?

ବେତାର ବୀକ୍ଷଣେ ପଛେ ନ ଦିଶୁ ତା ଛବି !
ଆକାଶ-ଭାଷଣେ ପଛେ ନ ହେଉ ସୁକବି !
ଅଘୋଷିତ ବେଦନାର ମହାକାବ୍ୟକାର ସେ କି
ମୂର୍ଖ କାଳିଦାସ କୋଟି, ଅଗ୍ୟାନୀ ସାରଳା ଅବା
ରୋମାଞ୍ଚିତ ବାସ୍ତବର ଭୀମା ଭୋଇଟିଏ..

ଭୋଟ ନେଇ ଚାଲିଯାଏ, ଚାଲିଗଲା ସେ ତ,
କି ମହା ବିଭ୍ରାଟ ସତେ
କିଏ ସେ ଯେ, କିଏ ନୁହେଁ ! ତୁମେ ମୁଁ ସିଏ ?
ଜୀଇଁଲେ ସେ, ଜୀଉଁ ଆମେ,
ଜୀଏଁରେ ଆକାଶେ ତାରା, ଜୀଏଁ ଧରା, ଜୀଏଁ ?



# ଭିକ୍ଷାର ଆଉ ଦୀକ୍ଷାର

ଭିକ୍ଷାର ଆଉ ଦୀକ୍ଷାର ଯେତେ ବୈକଲ୍ୟର !
ପ୍ରଦର୍ଶନୀର କକ୍ଷରେ କେତେ
ବିକ୍ରୟକାରିଣୀ ତୃଷ୍ଣାର ଅମୋକ୍ଷ ସ୍ମିତି କ'ଣ ଆମେ
ପ୍ରତ୍ୟାବୃତ୍ତ କ୍ରିୟାର ଏକ ଚର୍ଯ୍ୟା ?

ଆସ ଥରେ, ଆସ,
ନୂତନତମ ପ୍ରୀତିର ପ୍ରକଳ୍ପ ଆମେ
ବସିବା ଟିକେ ବସିବା !
ନିଶ୍ଚଳ ନିଃଶ୍ୱାସରେ ନିଃଶ୍ୱାସ ମିଶାଇ ଇତିହାସର
ଭିଏତ୍‌ନାମୀ ବୁକୁରେ, ରକ୍ତିମ
ପ୍ଲାବନ ଆଣି ଅପ୍ଲାବନ ବିଶ୍ୱାସର
ଲୌକିକ ମୁକ୍ତିରେ ଅଲୌକିକରେ ଆସ୍ୱାଦି
ଆସ, ଥରେ ବସିବା ସାଧୁ ! ବସିବା ।

ବିମୂର୍ତ୍ତତାର ବିଭ୍ରମକୁ ତୁଟାଇ
ଉତପ୍ତ ଯେତେ ଶ୍ରାବଣର ଗର୍ଭରେ,
ପ୍ରଜ୍ୱଳିତ କୋଇଲାର କାହାଣୀରେ
ହିମାନୀର ସ୍ତୂପ ରଚି, ଅନର୍ଗଳ,

ହତାଶର ?
ନା, ନା !
ଅତୃପ୍ତିର ଉଚ୍ଛ୍ୱାସରେ ବିନ୍ଧାଣୀର
ମାୟାମୟ ଦର୍ଶନର ଶଯ୍ୟାରେ ବାଲୁକାର
ଆସ, ବନ୍ଧୁ, ବସିବା ବସି ଗଢ଼ିବା ଟିକେ ଗଢ଼ିବା

/ ୨୭୮ /

ଲୌହର ଅରଣ୍ୟରେ
ରସାଳର ମଞ୍ଜରୀ ମୋର ଝରେ !
ଆପ୍ଲଫ୍ଲର ଗୁଚ୍ଛରେ ତୁମର
ତେଜସ୍କ୍ରିୟ ଭୃଙ୍ଗର ଲୀଳା ଯେ !

ଆଜି ପରା ଜନ୍ମ ଆମର, କ୍ରୀଡ଼ା ଆମର,
ନିର୍ଦ୍ଦୟ ଯେତେ ନିର୍ଯ୍ୟାତନା ଉତ୍ସବରେ
ନୃତ୍ୟ ଆମର !

ବଲ୍ଲକୀର ବ୍ୟଥା ମୋର କ'ଣ ଥରୁନି,
ବିତର୍କିତ ସ୍ୱପ୍ନର ଆଉ ବାସ୍ତବର ଦ୍ୱନ୍ଦରେ ?
ଥରୁନି କ'ଣ ଆକର୍ଡ଼ିଅନ୍ କି ତାରାରେ ଯେତେ ତୁମର ?
ଦୋଳୁନି–
ବ୍ରଜମଲ୍ଲୀର ଶୁଭ୍ରତମ ଗଳାରେ ମୋର
ରକ୍ତ-ଜବାର ଭୁଜବଲ୍ଲରୀ ତୁମର ?

ନିଶ୍ଚେତନ ବେଦନାର ବାର୍ତ୍ତା ସତେ
ବିଲୁପ୍ତ ଏବେ ଧରାରୁ !
ଅକ୍ରୁରର କ୍ରୁରତାରେ
ସ୍ରସ୍ତବାସ ଗୋପିକା କି
ବିଳାପରେ ବିହ୍ୱଳ ବା– !
କଂସର ମଞ୍ଚ ତଳେ କାଳର କୃଷ୍ଣ ତ ?
ପବିତ୍ରତମ କ୍ରୋଧରେ ଉନ୍ମାଦ ଆମେ
ଆସ ଟିକେ ଗଢ଼ିବା ବନ୍ଧୁ ଗଢ଼ିବା–

ଜୀବନ୍ତ କେତେ ପ୍ରେତ ବୁଲେ–ନାଜୀର ?
ରକ୍ତମୟ ଦୁକୂଳରେ ବାଂଲାଦେଶୀ ବଧୂର
ସ୍ୱପ୍ନର ଲିପି ମୂର୍ତ୍ତ ପରା ଆମରି !!
ଈର୍ଷାରେ ଜଳେ ଯିଏ, ଜଳୁ !
ହିଂସାରେ ସଢ଼େ ଯିଏ, ସଢୁ !

ଦର୍ଶନର ମରୁରେ—
ସ୍ୱଳଦଶ୍ରୁର ଦୁଇଟି ବିନ୍ଦୁ ଆମେ,— ଏକ !
ମର୍ମରେ ବସୁଧାର—
ହାହାର ଉଲ୍ଲାସ ଆମେ,
ଦେହର ଶୃଙ୍ଗାରରେ ନାଦବ୍ରହ୍ମର ଧ୍ୱନି !
କେତେବେଳେ କେତକୀର କୁନ୍ତ ପୁଣି
କେତେବେଳେ ସେବତୀର ସୌରଭ ବା !

ହେମନ୍ତିନୀ କପାଳରୁ ତୁମର
ଘର୍ମାକ୍ତ ଦିବସକୁ ଚୁମ୍ବନ କରେ ମୁଁ, କରେ ।
ବୈଶାଖର ଧୂମାଳରୁ ମୋର,
ସଂଶୟକୁ ଶୋଷଣ କର ତୁମେ— ନିର୍ବୀଜ କର ତୁମେ ।

ନୂତନରୁ ନୂତନ କେତେ ସୌରଲୋକର ଯାତ୍ରୀ ଆମେ !
ଆମେଇ କ'ଣ ସଜୀବ ଯେତେ, ଶହୀଦ ନୋହୁଁ ବନ୍ଧୁ !
ଆତ୍ମାର ସଂଭୂତିରେ ଅନାତ୍ମର ବୋଧନ—

ଖୋଲ, ଖୋଲ ! ଟି.ଭି.କି ଖୋଲ ତୁମର
ଜର୍ଜିଆର ପଥରେ ଦ୍ରାକ୍ଷାର କୁଞ୍ଜରେ
ମତେଇ କ'ଣ ଦେଖୁନ ତୁମେ ?
ଅଶ୍ୱତ୍ଥର ଛାୟାରେ
ଦିଲ୍ଲୀର କଣ୍ଠରେ
ତୁମକୁ କ'ଣ ଭେଟୁନି ମୁଁ ?

ଆସ, ଟିକେ ବସିବା ଥରେ ବସିବା !
ଭିକ୍ଷାର ଆଉ ଦୀକ୍ଷାର ପ୍ରଗଲ୍ଭତା ହଟାଇ
ଆସ, ଟିକେ ବସିବା !—

ବର୍ତ୍ତମାନର
ହସ୍‌ପିଟାଲର ଯେଉଁଠି ପ୍ରେମ କରେ ମୃତ୍ୟୁ !
ଖୁନିର ସ୍ତନ୍ୟ ପିଇ
ଖୁଲ୍ ଖୁଲ୍ ମାନୁଷୀର ଶିଶୁ !

କିଏ ଜାଣେ—
ନୈଶ ତାରାର ସ୍ୱପ୍ନରେ କାଲି
ଆମେଇ ପୁଣି ଛୁଟିବାନି—
ଦିଗନ୍ତର ପଥରେ !



# ରାସ୍ତାର ପିଲାଏ

ତୁମଠୁ ବିଲଗ ସବୁ, ନିଜଠୁ ବିଲଗ,
ଆମେ ସବୁ ରାସ୍ତାର ପିଲାଏ ତୁମ !
ଦିନକୁ ଅନ୍ଧାରି ନିତି, ସ୍ୱପ୍ନକୁ ଉଝାଳି ଯେତେ
ରାତିକୁ ଉଛାଳି ସୁଖେ,
ଓଲି ତଳେ ତଳେ ତୁମ, ପୋର୍ଟିକୋ ଧାରରେ
ଆମେ ସବୁ ରାସ୍ତାର ପିଲାଏ—
ନା' ହେ ଛେଉଣ୍ଡ ନୋହୁଁ !

ଛାଇରୁ ଖରାକୁ କେତେ ଖରାରୁ ଛାଇକୁ ନିତି,
ଘୁଞ୍ଚିଯାଉ, ଘୁଞ୍ଚିଆସୁ, ଋତୁ ଅଋତୁରେ—
ଖୁଞ୍ଚି ହୁଏ ଆଖି ଆମ !
ଭ୍ରୂଧନୁରେ ଆମଞ୍ଚି ଆମଞ୍ଚି
ତୀର ଯୋଖୁ, ତୀଖ ତୀଖ ପଞ୍ଚ-ପ୍ରପଞ୍ଚର
ଲାଖ କରୁ ପଥୁକିନୀ ପଥୁକୀର ମାୟାର କାୟାକୁ କେତେ-
ଚମକାଇ ହୋ-କିନି କୁରୁଳା କୁହାଟେ ପଚ୍ଛୁଁ !

ରୁକ୍ଷାରୁକ୍ଷି ରସାଳିଆ ମୁହଁ ଫୁଲାଫୁଲିମାନ
ନିଜନେ ସଜନେ ଦେଖି
ଯୋଡ଼ି ଯୋଡ଼ି ବୁଲାବୁଲି, ଅବେଳ ବେଳାରେ
ଫିଙ୍ଗି ଦେଇ ଚିକ୍‌କଣ ଚିକ୍‌କଣ ଚାରୁ
ଫୁଙ୍ଗୁଳା ମନର ତ୍ୱକ୍—
ଖସଡ଼ାର ଯୁଗ ଯେତେ ଉନ୍ମତ୍ତ ଚାଲିର, ତୁମ
ଛୁଇଁ ଛୁଇଁ ନିଃଶବ୍ଦେ ତୁମକୁ
ଛୁଆଁରେ ଅଛୁଆଁ ଆମେ
ତୁମଠୁ ବିଲଗ ସବୁ, ନିଜଠୁ ବିଲଗ,
ନିସ୍ୱପ୍ନ ସ୍ୱାର୍ଥରେ—

କାକୁସ୍ଥ କୈଶୋର ଶୋଷ
ତାଳି ମାରୁ କରେ କରେ ସମ୍ମୁଖେ ପଶ୍ଚାତେ ତୁମ,
ଉଦ୍ଧତ ଖୁସିରେ !
ବିକୃତ ପ୍ରୀତିର କୃତି—ଅଧୀର ବିଜ୍ଞପ୍ତି ତୁମ
ପ୍ରତାରିତ ତାରୁଣ୍ୟର ନିଃସାର ବସନ୍ତେ ବ୍ୟସ୍ତ, ବେକାରୀ ଉତ୍ସବ,
ନିଧନ ଧନିକ ଆମେ କ୍ଷରାକ୍ଷର ବିଦ୍ୟାରୁ ବଞ୍ଚିତ
ନା, ହିପ୍‌ପିକି ବୈରାଗୀ ନୋହୁଁ
ମହତ୍ ସଂସାରୀ ।

(୨)

ଆମେ ସବୁ ରାସ୍ତାର ପିଲାଏ ତୁମ
ଗଡୁ ସେଠି ବଢୁ ସେଠି, ଝଡୁ ତ ଅକାଳେ !
ସେ କି ରାସ୍ତା ପଚାର ନା, ନା, ପଚାରନା !
ହେ ଜାଣିସିଆଣା ତୁମେ,
ନୁହେଁ ତାହା ଶସ୍ତା ପ୍ରଶସ୍ତିର,
ଦେହେ ଦେହେ ଢଳାଢଳି ବିଦେହୀ ବ୍ୟଥାରେ—
ଉତ୍କଟ କୌତୁକେ କେତେ
କ୍ଲବରେ କୋଠିରେ କାହିଁ କକ୍‌ଟେଲ ପାର୍ଟିରେ
ତୀର୍ଯ୍ୟକ୍ ଦୃଷ୍ଟିରେ ଆହା ଗୋଲାପି ଗନ୍ଧରେ ।

ନୁହେଁ କଙ୍କରିଳ ନୁହେଁ କୁହୁର କଙ୍କାଳ-କୋଳେ
କାମାର୍ତ୍ତି-କାବ୍ୟର
ଶ୍ଳୀଳ ଆଉ ଅଶ୍ଳୀଳର ବିଭକ୍ତ ବ୍ୟକ୍ତିତ୍ୱେ
ନିର୍ବିବେକେ ହିମନ୍ତ ନିର୍ମୋକ ତଳେ
ବିବେକ ବିଳାସ !
ସେ କେଉଁ କୁମେରୁ ଗର୍ଭେ
ନୀଳ ନୀଳ ନିଶ୍ଚଳିତ ଅଶ୍ରୁର ଶୃଙ୍ଗାର ସେ ଯେ,
ସରୀସୃପ ଚେତନାର ନିରୁଷ୍ମ ବୀଥିକା ଅବା !
ଧର୍ମର ସନ୍ତାପେ-ପାପେ ଅଧର୍ମୀର ସାତ୍ତ୍ୱିକ ବିକାର !

ମତାନ୍ଧ ମଦିରା ପିଇ ମୁଦ୍ରାରେ ମୁଦ୍ରାରେ ତୁମ
ଦଳବିଦଳର ଧ୍ୱଜା ଉଡ଼ାଇ ସଗର୍ବେ ତୁମ
ପ୍ରଦୂଷିତ ବିବର୍ଣ୍ଣ ନଭରେ–
ତୁମରି ମନ୍ତ୍ରିତ୍ୱ ରକ୍ଷୀ
ତନ୍ତ୍ରୀ ଅମଲାର ଯେତେ, ଦୌରାତ୍ମ୍ୟ-ପୋଷକ,
ଦସ୍ୟୁ ଆତତାୟୀ ଆମେ, କଣ୍ଟ୍ରାକ୍ଟ-ଘାତକ–
କେତେ ସଖ୍ୟ ସାଧନାର ରାଷ୍ଟ୍ରରେ ଉତ୍ପାଟି ଆମେ
ଗୁପ୍ତ ଧୂର୍ତ୍ତତାରେ ଜ୍ୱଳନ୍ତ କମାଣ୍ଡୋ ତୁମ,
ରାସ୍ତାର ପିଲାଏ ଯେତେ–

ଲୋଡ଼ି ବୁଲୁ ଅହରହ ଚାଖଣ୍ଡେ ଆଗୁଳେ ଜାଗା
ମତ୍ତତାର ପାହାଭାଗେ
ଧୂଷ୍ଟତାର ଫୁଟ୍‌ପାଥ୍ ଚଟାଣେ ଟିକେ
ମର୍କତ ରଶ୍ମିର ରେଖା ପଡ଼େ ଯେବେ ବାତାୟନୁ ବାତାୟନୁ
ପଶ୍ ପ୍ରାସାଦାରୁ।
ଶିହରିତ ଷ୍ଟ୍ରିପ୍-ଟିଜ, ନଟୀର ସିଲ୍‌ହୁଟ୍ ଦେଖି
କ୍ଷୁଧାର୍ତ୍ତ ଶ୍ୱାନର ସମ ଲୋଟୁ ଆମେ ବିନିଦ୍ର ଶାନ୍ତିରେ।
ଦଦରା ମାଦଳ ଶୁଭେ ଆଦିମ ସତ୍ତାର ତୁମ, ଦୂରରୁ ନିକଟେ ପୁଣି।।

ଆମେ ଯାଉ ମହାକାଶ-ନକ୍ଷତ୍ରେ ବିହରି କ୍ଷଣେ
ସେ କି ମୂର୍ତ୍ତ କଳ୍ପନାରେ–
ରଚୁ ହେ ସଂଗୀତ ରଚୁ ଚକ୍ରକେଳି ବୃତ୍ତେ ଦ୍ରୁତେ
ରକ୍‌ରେ, ପପ୍‌ରେ।
ଭଙ୍ଗାରେ ଅଭଙ୍ଗା ସ୍ୱରେ, ଠୁମୁକି ବଜାଇ–
ଜାନୁରେ ଜଙ୍ଘରେ ନୂଆ ବେତାଳ ତାଳରେ
ସ୍ୱାଗତି ସୁଠାମ–

କିଏ ଅଛ, କାହିଁ ଅଛ, ଶିଳ୍ପର ଉଚ୍ଛିଷ୍ଟ, ଆରେ।
ଅନ୍ଧ ଉତ୍ପୀଡ଼ିତ ଯେତେ ବିଷାକ୍ତ ଗ୍ୟାସରେ–
ତ୍ୟକ୍ତ ସଭ୍ୟତାର।

ଆସ ରେ ସୁର୍ଭାଗା, ଆସ, ପ୍ରାଣର ବିପ୍ଳବେ ଆଜି—
ନାଡ଼ହୀନ, ନାଡ଼ିହୀନ-ପ୍ରେମର କପ୍‌ରେ ଆମ
ଲଗାଅ ଲଗାଅ ଓଠ !
ବିଶୁଦ୍ଧ ସନ୍ନ୍ୟାସେ ଭାଷା ଉଠୁ ହେ ଉଜ୍ଜ୍ୱଳି ଉଠୁ,
ଦିକୁ ଅନ୍ଧାରି ଯେତେ, ରାତିକୁ ଉଚ୍ଛାଳି...
ଜୀବନ ଉଝାଳି ଆଜି
ନିର୍ଦ୍ଧୟିତ୍ୱେ ପିତୃତ୍ୱର-ମାତୃତ୍ୱର ଅପୂର୍ବ ଆହ୍ୱାନେ ଅବା
ସଲଜ ମାଦକତାରେ ମମତ୍ୱ-ଚାହାଁରେ ।

କି ଆନନ୍ଦେ ଦେଖୁ ଆଃ, ରାସ୍ତାର ପିଲାଏ ଆମେ,
ଯାଚି ହୁଅ ଦେହଗୁଞ୍ଜା-ମୁନାଫା ହାକିମ ପାଶେ,
ସଚିବ କି ନିର୍ଦ୍ଦେଶକ, ମନ୍ତ୍ରୀର ସେବାରେ,
ତରିକି ତରିକି ଥାଇ, ଚକ ଚକ ଚାତୁର୍ଯ୍ୟର
ଛୁରିକା-ବୁଲାଇ
ଚିରି ଚିରି ପର୍ଦ୍ଧମାନ ରୂପ-ବୈଭବର ଯେତେ,
ଛତ୍ରାମି-ଛାୟାରେ ଆମ—
କ୍ରୀଡ଼ାର ବନ୍ଧୁକ ସହ
ବିଦ୍ରୂପର ଗୁଳି ଲାଛି ପ୍ରସ୍ତର ବୁକୁରେ ତୁମ,
ମୂର୍ଦ୍ଧାର କାନ୍ଧେଇ ଚାଲୁ, ଜୀଅନ୍ତା ମୁର୍ଦ୍ଧାର !!
ସଂତ୍ରାସି ତୁମକୁ ସବୁ, ସୁଭଦ୍ର ବର୍ବର, ଆହେ
ସାଉଁଟି ଗୋଟାଇ କୋଳେ
ଅରକ୍ଷ ଶିଶୁର ଡୋଳା
ଧର୍ଷିତା ମାଆର ସ୍ତନ,
—କୃତିତ୍ୱ ଆଲେଖ୍ୟ ତୁମ ?

ରାସ୍ତାର ପିଲାଏ ଆମେ,
ଓଲିଆ ଝଞ୍ଜଟ ତୁମ ଘରର ଘରର,
ନିସ୍ପୃହ ଧନରେ ତୁମ, ସମ୍ମାନ-ମାନରେ
ଦୁର୍ଦ୍ଦଣ୍ଡ ଦୁଷ୍ଟ ହେ ସବୁ—
ରାସ୍ତାର ତୋଫାନ୍ !

ମୁକ୍ତ ଆମେ ଐତିହ୍ୟର ଜୀବାଣୁ ପୂଜାରୁ ଯେତେ
ଡିଣ୍ଡିମ ବଜାଉଁ
ନିର୍ମମ ନିର୍ଦ୍ଦେଶ ତୁମ, ସ୍ବାର୍ଥ ଆଦେଶରୁ;
ମୁକ୍ତ ଆମେ ଭବିଷ୍ୟର ଭ୍ରୂଣର ଶିରାରୁ !
ମୁକ୍ତ ବର୍ତ୍ତମାନୁ ଆମେ–
ସନ୍ଧି ଓ ସମାସୁଁ ସବୁ–ରାଗ ଅରାଗରୁ,
ସମସ୍ୟା କୂଟରେ
ତୁମରି ବିଜ୍ଞାନ-ସୃଷ୍ଟ, ବିଶ୍ୱ-ବିନାଶରୁ !
ସଂସ୍କୃତିର ମାର୍କାମରା ଦୁଷ୍କୃତି ବୃତ୍ତିରୁ
ମୁକ୍ତ-ବିମୁକ୍ତିରୁ ଆମେ, ମୋକ୍ଷ କାମନାରୁ ଯେତେ,
ଅମୁକ୍ତ ମୁକ୍ତରୁ– ।

ରାସ୍ତାର ପିଲାଏ ତୁମ
କମ୍ପ୍ୟୁଟର କାରୁଣ୍ୟର ପ୍ରଯୁକ୍ତି-ରୀତିରେ
ତୁମଠୁ ବିଲଗ ଆମେ,
ଦୂରରେ ବିଲଗ ଯେତେ, ନିଜଠୁଁ, ନିଜଠୁଁ ।



/ ୨୮୬ /

# ମହାରଥୀ

ମାୟାରେ ମୁଁ
ଚିତ୍ରାଳି ଚିଲିକାର ଚିତ୍ରୋପଳାର,
ମସ୍ଣୋଭାର କୂଳରେ—

ନେଭାର ହେମାଳ ଉଷ୍ମତାରେ,
ଥରି ଥରି ଆସି ଦେଖେଁ—
ବିଦ୍ୟୁନ୍ମୟ ଅଙ୍ଗୁଳି କେତୋଟି
ଦ୍ୟୁତିମାନ ହାତ ଦୁଇଟିର,
ଛୁଇଁ ଛୁଇଁ ଗୁଚ୍ଛରୁ ଗୁଚ୍ଛ କେଶର,
ବର୍ତ୍ତିଳ କେତେ ଗ୍ରହଗ୍ରହାଣ୍ଡରେ
ମହାଶୂନ୍ୟର ମହାକାଳରେ—
ସେ କି ଅଶ୍ୱ ଦୁଇଟି,—ଅଲକ୍ଷ୍ୟରେ ଲକ୍ଷ୍ୟ !—

ଛୁଟାଏ, ଛୁଟାଏ—
ମରଣଜୟୀ, ଯାନକୁ ଜୀବନର
ମୃଦୁଳ ଆଳାପରେ !
ପ୍ରାଣର ପର୍ଦ୍ଧମାନରେ
ପ୍ରୀତିଳ ପିଆନୋର—
କେଉଁ ସୋନାଟା କି ଭୈରବୀର,
ଆଶାବରୀର...
କାର୍ଣ୍ଣେଶନ୍ କି ଲିଲିର କିଆରୀରେ
ସରୋଦ୍‌ର ସମାଜ ସୃଜି !

ଛୁଟାଏ ସେ ଛୁଟାଏ—
ମୁଠାଇ ମୁଠାଇ ଗ୍ରୀବା ଦୁଇଟି—
ଦୁର୍ନିବାର ସେ କି ବେଗରେ,
ବେଦନାମୟ ଶୀତ୍‌କୃତିକୁ ସ୍ୱୀକୃତିରେ
ଅମରତ୍ୱର !

ନିମେଷହୀନ ନିମେଷଟିଏ
ମଥା ନୁଆଁଇ ଦେଖେ,
ଶବ୍ଦ ଶୁଭେ ଅଜାତ ଜାତ ଶତ୍ରୁର, ଜନତାର।
ଶବ୍ଦ ଶୁଭେ ମିତ୍ରର– !
ଦରଦର ପୋଡ଼ା କାମନାର କାର୍ତ୍ତୁଜ୍ ଗଡ଼ାଇ କେତେ
ଯୁଗାନ୍ତର ରାସ୍ତାରେ–
ବୁର୍ଜୋୟାର ପରାଜୟରେ–

ଶବ୍ଦ ଶୁଭେ,
ଦୁର୍ଭାବନାର ଅରଣ୍ୟର–ପୃଥ୍ୱୀର !
ଶାନ୍ତିର ସମ୍ମୋହରେ ସିତାଂଶୁର..
ଚୂର୍ଣ୍ଣୀଭୂତ ହୀମାଦ୍ରିର ଚୂଡ଼ା ଉପରେ–ଅତୀତର
ବାଙ୍କୁର କଙ୍କେଶସ୍‌କୁ ନଚାଇ ବର୍ତ୍ତମାନର
ହାତ ଦୁଇଟି।
ଛୁଟାଏ, ମତ୍ତତାରେ ଶାନ୍ତ !
ଚକ୍ରବାଳରୁ ଚକ୍ରବାଳକୁ,
ମୁହୂର୍ତ୍ତର ମର୍ମରେ କୋଟିକୁ କୋଟି,
ଆଲୋକ ବର୍ଷ ଅତିକ୍ରମାଇ–
ରଶ୍ମିଳ !
ଅଗ୍ନିରେ ଲେଖା ଭଳି ଲାଲ୍‌ଲାଲ୍ ଅଧିରର ସ୍ମିତିରେ।

ଶିଶୁ ସେ !
ବରଫର ବଲ୍ ପିଙ୍ଗ କେଉଁ ସୂର୍ଯ୍ୟର ଗହ୍ୱରକୁ
ଚେରୀର ଚିକ୍କୁରରେ ଅଶୋକର କି ଆମ୍ରର ବଲ୍ଲରୀରେ ବ୍ୟାକୁଳତାର ଆମ
ଉଷାର ଆଶ୍ୱାସ ଆଣି–ସ୍ୱପ୍ନର,
ଏଇ ଏ ସୌର ଦେଶରୁ ଆମର
ବିଲୋପ ଆଣି
ବର୍ବର କେତେ ମତାନ୍ଧର ଧର୍ମର–
ସାଧନାର କାତରତାରେ ଉଲଗ୍ନ–
ଲାଳସାରେ ଲୀଳାକୁ
ଭସାଇ ନେଇ କୁଞ୍ଜରେ କେତେ ତୃଷ୍ଣାର
ଗ୍ରୀବା ଢଳାଇ ଛୁଟେ ଏଣୁ ଛୁଟେ !

/ ୨୮୮ /

ଏ କ'ଣ, ଦେଖେ ମୁଁ, ଦେଖେଁ–
କେଜାଣି କେତେ ପୁଷନ୍‌ର, ତୁଷାର ଆଉ ବର୍ଷାର
ଆବର୍ତ୍ତରେ ସୁଚଞ୍ଚଳ
ତାରୁଣ୍ୟର ସେ କି ଉଦ୍ଦାମ ନୃତ୍ୟରେ–
ପୈଶାଚିକ ଦୃପ୍ତିର ସଜାକୁ,
ସାମରିକ
ନ୍ୟୁକ୍ଲିୟାର–
ସ୍ନେହାଂଶୁର ସ୍ରୋତରେ ଭସାଏ କିଏ
ଅନାହତ ସଂଗୀତର ମୂର୍ଚ୍ଛନାରେ–
ଥରେ, ଥରେ, ନିର୍ମାୟାରେ,
ସେ କି ମୈତ୍ରୀ–
ନିମଜ୍ଜାଇ ନିଜକୁ ତୃପ୍ତିରେ ତା'ର
ସୃଷ୍ଟିରେ

ଦେଖେ ମୁଁ, ଦେଖେ,
ମସ୍କୋଭାର କୂଳରେ
ସମ୍ମୁଖରେ ପାଶ୍ଚାତରେ ଚତୁର୍ଦ୍ଦିଗରେ
ସ୍ୱପ୍ନାତୀତ ଯାନରେ–
କୃଷ୍ଣ ଆଉ ଧବଳ
କାଳ ଆଉ ଶୂନ୍ୟର !

ଛୁଟାଇ, ଛୁଟାଇ ଅଶ୍ୱଟିକୁ
ସ୍ମୃତିର ମନ୍ଦିରରେ
ଉଦ୍‌ବେଳ ଉଦ୍‌ବେଳ ମୋ
ଚିଲିକାର ଚିତ୍ରାଳିରେ
ଚିତ୍ରୋତ୍ପଳା ଆଜିର !



# ଖାଲୋଇ ମୋ ଖାଲି...

ଆଜି ମାଛ ପଡ଼ି ନାହିଁ, ଖାଲୋଇ ମୋ ଖାଲି !
ଅରୂପେ ରୂପେଲି ଢେଉ ନାଚି ନାଚି ଡିଏଁ,
ଆଜି ମାଛ ପଡ଼ି ନାହିଁ ସମୁଦ୍ରଟା ବାଲି !
ତଥାପି ଏ ଆକାଶଟା ଶୋଇ ଶୋଇ ଚିଏଁ !

ଛାଇ ଲୋଡ଼ି ଆପଣାର, ଝୋଲାମରା ଝାଉଁ,
ବିଳାସୁଣୀ ବଜାରରେ ଗୋଳ କେତେ ଗୋଳ,
ଚଢ଼େ ଦେହ ଦେଉଳରେ ଅବରାର ଭାଉ,
ନଖେଇ ମୁଁ ଖୋଲି ବସେ ଶାମୁକାର ଖୋଳ ।

ଛଇ କାଢୁ ବୁଡ଼ିଗଲା ଦିନମଣି ବୁଢ଼ା !
ଅଲାଜୁକୀ ତାରାଟିଏ ଓଲଟାଏ ଛାତି !
ମୁକୁଳାଇ ବସେ କିଏ କଳାମୟୀ ଜୁଡ଼ା,
ଶୀତୁଳିଆ ଜିଭତଳେ ପିତୁଳିଆ ତାତି !

ଆଜି ମାଛ ପଡ଼ି ନାହିଁ, ସିଆଣିଆ ଏଡ଼େ !—
ଶିରାର ମୋ ଜାଲୁଁ ଚାଟି ରକତର ଲିପି,
ପୁଳାଏ କି ପ୍ରୀତି ନେଇ ମୋ ଜାନୁରୁ କେଡ଼େ,
ଗାଲି ପାରି ରହିଗଲେ ନାଲି ଓଠ ଚିପି !

ସାତଫେଣୀ ଫୁଲେ ହସେ ଗରବିଣୀ ଏକା !
ଧୀବରୁଣୀ ପିଠିରେ କି ବ୍ୟାସ କାହିଁ ନାଉ !
କେଉଁ ମହାଭାରତର ପୋଥି ହୁଏ ଲେଖା,
ଶିଉଳିଆ ପାଛିଆରେ ଅମନର ଦାଉ !

/ ୨୯୦ /

ଆଉ ମାଛ ହେବେ ନି କି ଶହୀଦ୍ ମୋ ଲାଗି,
ଝୁଲିବେନି ବାଟଘାଟେ କାମନା ଲଟାରେ,
କେତେ ଜୁଇ ନିଆଁ ପାଶେ ସତୀପଣ ମାଗି
କାଉଁଳେଇ ହେବେ ନାହିଁ ଗୁଗୁଚି ଛଟାରେ।

କଲେ କି ବିଦ୍ରୋହ ସବୁ ବିମନା ଏ କାଳେ ?
ଆଦ୍ୟ ଅବତାର ରୂପ ଭୁଲିଯିବେ ସତେ !
ପାତାଳରେ ଦୋଳୁଥିବେ କି ପ୍ରେମ-ପ୍ରବାଳେ,
କଲକୀ ହୋଇ ଘୋଟିବାକୁ ପ୍ରଳୟର ପଥେ !

ଗଲେନି କି ଲାଖି ସତେ ରେଶମୀ ଶାଢ଼ୀରେ,
ଆଖିରେ ମୋ ମିଶିବନି ନୀଳ ନୀଳ ଆଖି !
ଅସାତ୍ତ୍ୱିକ ବିକାରରେ ଅଦ୍ରୋହୀ ବାଢ଼ିରେ
ଜହ୍ନର ପାଉଁଶ ହେବେ ନିଜ ମୁହେଁ ମାଖି।

ଆଜି ମାଛ ପଡ଼ି ନାହିଁ, ଖାଲୋଇ ମୋ ଖାଲି !
ଢାଉଳା କଥାରେ ମୋର କେଶରିଆ ଧୂଆଁ !
ହସ ନଇଁ ବିଷାଦର ବରଷିଲେ କାଲି,
ପପ୍-ଗୀତେ ଦେବେନି କି ପୁଣି ଧରାଛୁଆଁ ।।



# ଖଣିର ମାୟାରେ

ମୁଁ ବି ରାତ୍ରିର ଚିରଗୁ
ଚିଡ୍ ହୋଇ ପିଉଥାଏ ଟୋପାକୁ ଟୋପା ତାରା !
ମୁଁ ଯେ ପୃଥ୍ୱୀକି ଛାତିରେ ବହି ନଥାଏ, ନୁହେଁ !

ଅମାନ୍ୟ କରି ଟ୍ରାଫିକ୍‌ର ଆଇନ୍ ଯେତେ ପ୍ରଥାର,–
ଏଇ ଯେମିତି ବୋହୂ ବୋହୂକା ଖେଳ,
କ୍ଲବ୍ କି ହୋଟେଲ୍‌ରେ ସ୍ୱୟଂକ୍ରିୟ କିତ୍‌କିତ୍ !
ମାଡ଼ି ଆସିଲେ ପ୍ରଜ୍ୱଳିତ କଡ଼ିଗୁଡ଼ିଏ, କୋଇଲାର !
ଫୁଟି ପଡ଼ିଲେ ରୋମାଞ୍ଚିତ ଗୋଲାପର ଗୁମର ବା !
ମୁଁ ଯେ ଆକାଶକୁ ଖୋଳୁ ନଥାଏ, ନୁହେଁ !
ମୁଁ ବି ଏଉଡ଼ି ମାରି ଗଡ଼ୁଥାଏ
                ଫୁଲାକୁ ଫୁଲା ପବନ ଚୋବାଇ
                ଗରମ୍ ଗରମ୍ ମୁହଁରୁ ପୁଣି ମୁହଁକୁ !

ଅବାଧ ହୋଇ ସିଗ୍‌ନାଲ ପ୍ରତି ସାବଧାନୀ ବୃଦ୍ଧର,
ଡବାକୁ ଡବା ଐତିହ୍ୟର ଅଙ୍ଗାର ଢାଳି ଦେହର ଟ୍ରେନ୍‌ରୁ,
ଉଜାଡ଼ି ଦେଲେ ଯୁଗ ଯୁଗର ଜିଗର୍‌କୁ, ଜହ୍ନର–ସେମାନେ !
ନାଗଫେଣୀ ହସର ସୌଖୀନ ପିକ୍‌ନିକ୍‌ରେ ମୁଁ–
ସେ କି ଦୁର୍ଘଟଣା ହେଲେ ସତେ !
ବିଦ୍ଧ ହୋଇ ନିଷ୍କାମ ଅନିସାର କଣ୍ଟକରେ
ସ୍ୱାମିନୀ ତାପିନୀ, ତାପସିନୀ, ଶୃଙ୍ଗାରିଣୀଗୁଡ଼ିକ–
ନରମିଗଲେ ନିଃସ୍ୱତାର ଅଭିମାନ ତ ମୋର ?
ବାଲିର ବନ୍ୟାରେ ପହଁରି
ପଳାଇବାକୁ ବାହାରିଲି ମୁଁ !

ଗୋଳେଇ ହୋଇ ନିସ୍ପୃହ ମମତାର ତତ୍ପରତାରେ
ସେ କି ସ୍ୱର୍ଣ୍ଣିମ ସ୍ତମ୍ଭ ହେଲେ ସାମ୍ନାରେ ସେମାନେ !
ରୋକିଦେଇ ଛକିଦେଇ ଭୟାର୍ତ୍ତ ଭାବନାର ପଳାଉଣିକୁ ମୋର !—
ଦର୍ଶନକୁ ଦର୍ଶନ, କେତେ ବିଦ୍ରୂପର
ବାଜି ଉଠିଲା ନ୍ୟୁମାଟିକ୍ ହାତୁଡ଼ିର ଘନ ଘନ ଉଚ୍ଛ୍ୱାସ
ମରଣର ନିଶାରେ ବେଜାର ମୁଁ
ଦାୟିତ୍ୱର ମଳରାରେ ଉଗାଳି ପକେଇ
ଝଲକାଏ ଲେଖାଁ ହେମାଳରୁ ହେମାଳ ଯେତେ ନୀହାରିକା
ଘଡ଼ିକି ଘଡ଼ି, ।——
ମୁଁ ବି ଆପଣାର କରି ଧରିଲି, ଆଉ ଛାଡ଼ିଲି ।
କୋଟିଏ କୋଟି ବିଶ୍ୱର ସତ୍ତାକୁ !
ଛୋଟବଡ଼ ଟୋକେଇଟିମାନ ବହି
ଧାଡ଼ିକି ଧାଡ଼ି ଆଗେଇଗଲେ ସେମାନେ !

ଖଣିର ଆବରଣୀ ଉପରେ,
ଜୀବନର ଜାଲେଣି ଗୋଟେଇ—
କଳା କଳା ପିମ୍ପୁଡ଼ିର ଧାର !
ନିଜଠି ନିଜେ ରୁଛି ହୋଇ ଫିମ୍ପି ମାରିଲି ମୁଁ,
ଖୁଣ୍ଟି ଲାଗିଲି ପୋକରା ଦାନ୍ତ କେତୋଟି, ନିର୍ଜଳ ସନ୍ତୋଷରେ ?

ଲେଉଟି ପଡ଼ି ମତେଇ କ'ଣ ଖୋଳିବା ପାଇଁ
ଭୂମାର ପ୍ରହେଳିକାରେ—
କେଞ୍ଚିଲେ ସବୁ କେତକୀର ଚଞ୍ଚୁରେ ଅତନ୍ଦ୍ରର ?
ଗଡ଼େଇ ନେଇ ତମାଳନୀଳ ପାତାଳକୁ ସ୍ୱପ୍ନର ?
ଖୁମ୍ପି ଲାଗିଲେ ମାର୍କେଟ୍‌ର ମୀନାକ୍ଷିମାନେ
ଜୀଅନ୍ତା ମୋର ଲହୁଣୀର ଶବ,—
ଅଜନ୍ତାର କୁଡ଼ା ନଚେଇ
ଅକଳ୍ପିତ ବେଦନାରେ ମନ୍ମଥାହତ ଶିଳ୍ପୀର— !

ଇସ୍ ! ସେ କି ମଧୁର ବିଷର୍ଣ୍ଣତାରେ ଉଲୁସି ଉଠିଲି ମୁଁ ?
ମତେଇ କ'ଣ ମୁକୁଳେଇବାକୁ ନିର୍ମମ ଅନୁକମ୍ପାରୁ ମୋର
ଯୌବନକୁ ଡିଆଇଁ ଡିଆଇଁ
ବାରବୁଲା ଗୁଡ଼ୁକଙ୍କର କଙ୍କାଳରେ—

ଧାଇଁଲେ ସବୁ ବିଧୁର,
ଉନ୍ମାଦନାରେ—
ଉଲଗ୍ନା ବାଲିହରିଣୀ କୋଣାର୍କର,
ନା, ନିମ୍ନଗା ଚନ୍ଦ୍ରଭାଗାଗୁଡ଼ିକ ?—
ସମୟର ଆକାଶରେ ଆଙ୍କି ହୋଇଗଲେ—
ରଙ୍କୁଣୀର ନିଃଶ୍ୱାସ ! ଆଃ ।

ପ୍ରୀତିର ଗଣତନ୍ତ୍ରରେ ଷୋଳସହସ୍ର ଗୋପୀ କ'ଣ ସେମାନେ ?
ଗୋଟିଏ ବୋଲି ରାଧା,
ସ୍ୱୈରିଣୀ ହୋଇ ରଶ୍ମିର ବାରଣୀ, ପୁଣି ଧାରୟିତ୍ରୀ ରଶ୍ମିର,
ହ୍ଲାଦିନୀର ମୂର୍ଚ୍ଛନା—
ଛେଚି ହେଲେ ଛନକାଭରା ଜ୍ଞାନର କାମୁକତାରେ,
ଅପ୍ରାକୃତ ମୁରଲୀର ମହକ—
ପ୍ରଗାଢ଼ କେତେ କୃଷ୍ଣତାର ସାଲୋକ୍ୟ ପାଇ
ମୋକ୍ଷରୁ ଟିକେ ଚଖେଇବା ଲାଗି ମତେ ?

ନାଃ, କେସୁରର କୋଳରେ
ବୈଧବ୍ୟ-ରୋଧୀ କଳରବ ନୁହନ୍ତି ତ ସେମାନେ ପଦ୍ମିନୀର !
ବାରୁଦର ସୁଗନ୍ଧିରେ
ଅନଙ୍ଗର ଜ୍ୱଳନ୍ତଣି ନୁହନ୍ତି ତ,
ମୁକ୍ତିର କାମିନୀ ସବୁ ?
ଗୋଟିକି ଗୋଟି ମଲ୍ଲୀ ହୋଇ ଝୁଲିଲେ ଯେ
ଗହମର 'କେଦାର୍' କି 'କାହାରବା' ଟପ୍‌ପା କି ଠୁମ୍ରି,
ମତେଇ ବେଢ଼ି ହଲ୍ଲୀଷକୀରେ କେମିତି !

ଆରାମରେ ଗେଲ କଲି ମୁଁ ରାସ୍ତାରେ
ରୋଗଣା ରୋଗଣା କୁତ୍ତା ଆଉ କୁତ୍ତିଙ୍କୁ
ଲଜେନ୍ସ୍ କି ବିସ୍କୁଟ ଦେଖେଇ ଖେଳେଇଲି ବସି
ଗୁଲୁଗୁଲିଆ ଘୁଷୁରି ଛୁଆ ଯେତେ !

/ ୨୯୪ /

ଚିକ୍‌କଣ କରି କାଟିକୁଟି ନିରୀହ ପକ୍ଷୀଗୁଡ଼ିଏ
ସାମରିକ ସୌହାର୍ଦ୍ଦ୍ୟର କାଇଦାରେ
ଓକିଲାତିର ସତ୍ୟପାଠରେ ବା
ଉଡ଼ାଇ ଦେଲି ମହିମାର ପର ସବୁ
ଯାଚିବୁଲିଲି ଘରକୁ ଘର, ମୋ ପରି ଭାଗ୍ୟବାନ୍‌ର !

ସୂର୍ଯ୍ୟ କେତେ କାକର ହୋଇ ବର୍ଷିଥିବେ କେଜାଣି !
ରକ୍ତର ସମୁଦ୍ରରେ—
ମାଂସର ଦ୍ୱୀପଟି, ଗଢ଼ି ଉଠିଲି ଛାଏଁ ମୁଁ !

ଦିଗହୁଡ଼ା ଟେଣ୍ଟେଇର କାନ୍ଦଣାରେ କେଉଁଠି
ରକେଟ୍ କି ଜେଟ୍‌ର ଗୁଞ୍ଜନ କି ?

ବିଳାସର ବାଡ଼ବାଗ୍ନିରେ ଓଲଟିଲା ଜଳକନ୍ୟା ଗୋଟିଏ—ନର୍ସ ?
ଥରିଲା କ'ଣ ଶୁକ୍ଳ ପ୍ରଜାପତିଟିଏ ମାର୍ବଲର ?
ଉନ୍ମୋଚିତ ଗର୍ଭରେ ଲାଲ କଇଁର
ମୁହୂର୍ତ୍ତର କାଛ-ଖୁରାରେ ମୋର—
ପାଟକୁ ପାଟ ଲୁହରେ ଲମ୍ଫ ଦେଲି ମୁଁ,
ଉଦ୍ଧରିବା ପାଇଁ ସେମାନଙ୍କୁ, ନା ମତେ ?

ଗ୍ରନ୍ଥି ହୋଇଗଲେ ସେମାନେ
ଝିନ୍ ଝିନ୍ ବେତାରରେ କୁହୁର ପକ୍ଷ ବା !
ମୁଁ କ'ଣ ଛନ୍ଦି ହେଲି
କବରୀର ଜାଲିରେ ସେମାନଙ୍କର !
ଚୈତ୍ରର ଝଡ଼ରେ
କାହିଁ କେବେ ଗୋଡ଼େଇ ନ ଥିଲି ତ
ଫ୍ଲାଶ୍ ଲାଇଟରେ ଫଟୋ ଉଠାଇ
ମାଳିନୀ କି ପ୍ରହର୍ଷିଣୀରେ, ହାର୍ମୋନିକାରେ ସେମାନଙ୍କୁ !
ଚୁମ୍ବନର ମୁଦ୍ରା ଲାଗି ପତ୍ନୀର ବିନିମୟରେ
ପ୍ରବଜ୍ୟାର ନାୟିକାଗୁଡ଼ିକୁ ସେଇ !

ସୂର୍ଯ୍ୟମୁଖୀ ହସର ପିକନିକ୍‌ରେ ମୁଁ
ହଲିହକ୍‌ର ଛଟା
ତାଙ୍କୁଇ କ'ଣ ଡାକୁଥିଲି ମଇଚିବା ପାଇଁ
ଉଦଗ୍ର ଅସ୍ମିତାରେ ମୋର ?

ଏଃ ! ବୃତ୍ତ ପରେ ବୃତ୍ତର ଭଉଁରୀ ଯେ ଖାଲି !
ଦେହର ଦିଗ୍‌ବଳୟରେ ଦେହର ଛବି ସବୁ—କ୍ରସ୍ !
କେନ୍ଦ୍ରରେ କେନ୍ଦ୍ରରେ କାହିଁ, ପଡ଼ିତାଳ କାହିଁ, କେଉଁଠି ?
ଦାରୁବ୍ରହ୍ମର ଡୋଳାରେ ଦୁଃଖର ସୁଢ଼ଳ ଗୋଲକ, ମୁଁ ତେବେ !
ମୁଁ କ'ଣ ନିର୍ଦ୍ଵନ୍ଦରେ ଦ୍ଵନ୍ଦ ନୁହେଁ କାହାରି,

ଝାଡ଼ିଝୁଡ଼ି ହୋଇ ଉଠି ପଡ଼ିଲି—
କେତେବେଳେ ଯେ ହଜିଯାଇଥିଲା ତୃତୀୟ ନେତ୍ରଟି,
ନୃତତ୍ତ୍ଵକୁ ନିଭାଇ ଦେଇ !
ଖିଲି ଖିଲି ହୋଇ ହସୁଥିଲା
କାଲି ରାତିର ପାଲଟା ଶାଢ଼ୀର ଧଡ଼ିଟା
ଅଲଗୁଣିରେ ଓହଳି— ! କାହାର ?—
ଘରବାଲି ଝିଅର ନା ସ୍ତ୍ରୀର ମୋର ?

ବସ୍ତର ଅନ୍ଧାରିଆ ବଖୁରିରେ ଦିନର ଦିପହର ଯେ !
ଅଧାଅଧି ଜଳା—ଅଜଳା ବିଡ଼ିର ନିଆଁରେ
ପୁଣି ଥରେ ମାଡ଼ିଦେଲି ଛଟେଇର, ନୋଟିସ୍‌ଟା !

ପୁଣି କ'ଣ ପିଇଲି ମୁଁ ଟୋପାକୁ ଟୋପା ତାରା—
ଖଣିର ଶ୍ରମିକ ମୁଁ ଖଣିଜ ମୁଁ କାବ୍ୟର—
ପୁଣି କ'ଣ ଗିଳିଲି ମୁଁ
—ପୁଳାକୁ ପୁଳା ପବନ !



/ ୨୯୬ /

# ତୁମେ କ'ଣ

ତୁମେ କ'ଣ ଆହିତାଗ୍ନି
ଗୋଟିଏ ଶିବିରର ମାତ୍ର,
ତୁମେ କ'ଣ ମନ୍ତ୍ରାହୂତି
ଗୋଟିଏ ଯଜ୍ଞରେ ?

ତୁମେ କ'ଣ ଦିକ୍ ଦିକ୍ ବିଶ୍ୱାସ ନୁହଁ
ସଂଶୟାଗ୍ନିର—
ଆସ୍ତରଣ ତଳେ ତଳେ ଝରାପତ୍ରର, ଝକ୍ ଝକ୍,
ଆଉ ଏକ ଶିବିରରେ !

ସଂଗୁପ୍ତ କେତେ ସାଧନାର ସ୍ରୁବରେ
ରୁଧିରର ଝରଣାରେ ହୃଦୟର
ଗତ ନୁହଁ—
ଉଦଗ୍ର,
ଯନ୍ତ୍ରଣାର !

ତମକୁ ତ ଦେଖିଚି ମୁଁ,
ଦେଖିନି —?
ସମୟର କାରଖାନାରେ
ନିଜର ନିର୍ମାଣରେ ମଗ୍ନ—
ବିହ୍ୱଳିତ ବିଭାସର
ସୁରଟିଏ ସଂଯୋଜି
ସନ୍ତପ୍ତ— !

ତାରୁଣ୍ୟର ବିସ୍ତାର ତୁମେ ଅତୃପ୍ତିର
ଲୟର ଦ୍ରୁତିରେ ତ୍ରିଭୁବନର
ସ୍ନେହାଶ୍ରିତ ମୁହୂର୍ତ୍ତରେ ଚଞ୍ଚରୀକ ତ୍ରିକାଳରେ—

ତମକୁ ତ ଦେଖିଚି ମୁଁ—
ଦେଖିନି ?
ପ୍ରସ୍ତରୀଭୂତ ସ୍ୱପ୍ନର ସୁଡ଼ଙ୍ଗରେ ବା,
ମରୁ ଦ୍ୱୀପର ମାଳଞ୍ଚରେ
ଯେଉଁଠି ଗନ୍ଧଗ

କାମନାର କାରାଭାନ୍ ଶତାବ୍ଦୀର
ଅଚେତନ ଲାସ୍ୟ ପରେ ଲାସ୍ୟରେ
ବିଲୁଣ୍ଠିତ ଜ୍ୟୋତ୍ସ୍ନା— !

ନିଜର ବାଷ୍ପରେ—ପ୍ରତାରଣାର ବଞ୍ଚନାରେ
ସ୍ୱର୍ଣ୍ଣ-ଛତ୍ରର ଆବରଣରେ
ରୁନ୍ଧି ହୋଇ କାନ୍ଦୁଥିଲା ଧରିତ୍ରୀ
ସେ କି ଉପପ୍ଲବର ଅନ୍ତର୍ଦାହର
ଖେଳିଥିଲ ନଖାଗ୍ରରେ ନରସିଂହର
ବିଦାରି ବିଦାରି ହୀରାର ହିରଣ୍ୟ ରାଜତ୍ୱକୁ—
ଅନ୍ଧୀଭୂତ ପରମ୍ପରାର ଯନ୍ତ୍ରାରେ
ଅଙ୍କୁରାଇ ଇତିହାସର ସିସୃକ୍ଷା

ତୁମକୁ ତ ଦେଖିଚି !— ଦେଖିନି ?
ପୈଶାଚିକତାର ଶିବିରରେ ସେଦିନ
ମଞ୍ଛିତ କୋଟି ଜନନୀର ଜ୍ୱଳନ୍ତ ଭ୍ରୂଣରେ,
ସହସ୍ର ରକ୍ତର ଅକୂପାରରେ,
ଲକ୍ଷ ଲକ୍ଷ ଛିନ୍ନ ସ୍ତନର ଭେଳାରେ—
ନାଚିଥିଲି ନାଚିଥିଲ ତୁମେ
ଜଟାଜୁଟ ମେଲି ସପ୍ତବର୍ଣ୍ଣୀ ଶିଖାର
ପ୍ରତିରୋଧର ପୁଣ୍ୟତମ ବିସ୍ଫୋରଣ
ହୃଦ୍-ବହ୍ନିର— !

ଦେଖି ନ ଦେଖି
ଦେଖିଚି ମୁଁ ପୁଣି !
ଶ୍ୟାମଳିମ ଆକାଶରେ
ଶସ୍ୟର ଚିତ୍ରାଳି ତୁମେ— !
ପୋଛିଦେଇ ଉଚ୍ଛ୍ୱାସକୁ
ସାଇକେଲିକ୍—
କାପଟ୍ୟକୁ କାମାତୁର ସଭ୍ୟତାର,
ମୁମୂର୍ଷୁ !—
ଲାମ୍ପଟ୍ୟକୁ ଡିସ୍କୋର !

ଆଘାତରେ ଆଘାତରେ ତୁମର—
ଝନ୍ ଝନ୍ ଭାଜିଯାଇଛି ଶୃଙ୍ଖଳ
ଦ୍ୱୀପରୁ ଦ୍ୱୀପାନ୍ତରରେ, ବିଶାଳ !

/ ୨୯୮ /

ସେ କି ଜିଘାଂସୁ ଦର୍ପରେ
କୂଟତାର ଯାଦୁରେ—
ଗଣତନ୍ତ୍ରୀ ବେଶରେ ସ୍ୱୈରାଚାରୀ—
ଧାଇଁଚି, ଧାଇଁଚି କ୍ଷମତାର ଉନ୍ମାଦ ଯେତେବେଳେ

ଦେଖୁଚି ଆଜି ଦେଖୁନି ?—
ନିୟୁକ୍ଲିଆର ଭୂରୁର ନର୍ତ୍ତନ ତୁମର
କୁଞ୍ଚିତ ଅଧରରେ—ସ୍ମିତି ଟିକେ—ଅତନ୍ଦ୍ର
ମଧୁର ସମ୍ଭାଷଣରେ ଶାନ୍ତିର—
ନୁହେଁ, ନୁହେଁ ଶୀତଳତାର ନୁହେଁ—
ରଶ୍ମିଳ ଆବେଶରେ ଆଶ୍ଳେଷର !
ସଙ୍ଖଳା ଘେନି ସଖ୍ୟର ଏଣୁ
ଦେଖୁଚି ମୁଁ ଏବେ—ଦେଖୁନି ?
ହସଟିଏ ଘର୍ମିଳ ପ୍ରିୟର
ଝରିପଡ଼େ—ଅଧରରେ ଯାଇ ପ୍ରିୟାର !!

ଶ୍ରମିଳ ଚତେନାର—ବାଙ୍ମୟୀ ଶାନ୍ତିର—
ତୁମେ କ'ଣ ଆହିତାଗ୍ନି ନୁହଁ—
ମନ୍ତ୍ର ନୁହଁ—
ପ୍ରଚ୍ଛନ୍ନରେ, ପ୍ରତ୍ୟକ୍ଷରେ ବା
ପ୍ରତ୍ୟେକ ଶିବିରରେ ଏଣୁ—
ଜୀବନର ଯଜ୍ଞରେ !!



# ଦୁର୍ଜୟ ତାର ଡାକ !

ଯୁଗ ପରେ ଯୁଗ ଯେ ହାତ ଗଢୁଛି ଶିଶୁ,
ଯେ ହାତେ ନିୟତ ଜୀବନର ପରିପାକ ।
ଯେ ହାତେ ମମତା, ମଧୁର ମୈତ୍ରୀ ଲେଖା
ମୁକ୍ତିର ଲାଗି ଦୁର୍ଜୟ ତାର ଡାକ !

ଯେ ହାତେ ଥରୁଛି କେତେ ତନ୍ତ୍ରୀର ମାୟା
ଭସ୍ମ ଗହଳୁ ଆଗ୍ନେୟ ଶିଖା ସେ ତ !
ନବ ସଂକେତ ଆଜି କ୍ରାନ୍ତିର କାୟା ?
ଅଦୃଶ୍ୟେ ସେହି ବହିଛି ପତାକା
ସକଳ ସଭ୍ୟତାର
ଜୀବନପୃଷ୍ଠ ଧୋଉଛି ତାହାରି
ଉଷ୍ଣ ନୟନ ଧାର !

ସେହି ସେ ନୃତ୍ୟ, ନର୍ତ୍ତକୀ ସେହି !
ଚିତ୍ର-ଚେତନା, ଭାସ୍କରକୃତି ଲୀଳା—
ସ୍ପର୍ଶେ ତାହାର ବାଙ୍ମୟୀ ସିନା
ଯେତେ ଯେତେ ଅକର୍ମା ନିର୍ଜୀବ ଶିଳା ।

ଛିନ୍ନ କରି ସେ ବନ୍ଧନ ନିଜ,
ମୁକ୍ତ କରୁ ରେ ଆଜି ତା ମଣିଷ ଜାତି
ହତ୍ୟା ବିପାକ ଦଳି ଗଉରବେ, ପ୍ରୀତି ସଉରଭେ—
ଶାନ୍ତି ଆମୋଦ ଉଠୁରେ ସରସେ,
ଉଠୁରେ ସୁରସେ ମାତି !



# ଆଃ, ଶ୍ୱାସଟିଏ, ଆଃ !

ନିଜକୁ ନିଜେ ପ୍ରସରାଇ ଦିଏ ଯେତେବେଳେ ତୁମକୁ—
ସେ କି ବିଚିତ୍ର ସମାରୋହରେ
ଅଶ୍ରୁର ଆଉ ପୁଲକର,
ଯୁଗ ପରେ ଯୁଗ
ଯାଏ, ଭାସିଯାଏ ଉଲ୍ଲାସର ଉତ୍ସବରେ !
ରହ, ତୁମେ ରହ, ମକ୍ଚି ହୋଇ ନିଶ୍ଚଳ !!

ନିଜର ଆବରଣ ତଳେ, ନିଜେ ମୁଁ ପଶେ ଯେତେବେଳେ,
ବ୍ୟାହତ ବିଭ୍ରମରେ
ଅନୁଭବ କର ମୋତେ ଛୁଇଁ ଛୁଇଁ—
'ଅନୁଭବ କର ମୋତେ—
ବିଦ୍ୟୁନ୍ମୟ ଚେତନାର ଶୃଙ୍ଗରେ, ଆଣ୍ଟିନାରେ, ତୁମର !
ନହେଲେ ମେରୁରେ ମୋ, ଖେଳନ୍ତା ବା କମ୍ପନ କାହିଁକି ?

ମୁହୂର୍ତ୍ତକରେ ଶାନ୍ତ ସମାହିତ ହୁଏ ମୁଁ—
କରୁଣାରେ ଆର୍ଦ୍ର ହୋଇ ଉଠେ ଅନ୍ତର ମୋ ସମସ୍ତଙ୍କ ପ୍ରତି !
ଦେଖେଁ ପତିତ ମଥିତକୁ ଦେଖେଁ
ଦୟାର ଦୃଷ୍ଟିରେ,
ମଧୁର ଔଦ୍ଧତ୍ୟରେ—
ପ୍ରଳାପମୟ ସ୍ୱପ୍ନରେ ବିହ୍ୱଳ ।

ବଜାଏ ମୁଁ, ସୁସୁରିଟିଏ ବଜାଏ—
ଟେଲିଗ୍ରାଫ୍ ସ୍ତମ୍ଭରେ ତେଣେ ଝଟ୍‌କି ଉଠେ ବ୍ରୁଚ୍ କି କଙ୍କଣ ।
ନିଜର ଔଜ୍ଜଲ୍ୟ ରେ ଅନ୍ଧ ହୋଇ,
ନିଜେ ମୁଁ ବର୍ଷିଯାଏ ଗ୍ରହାଣୁ ଅସରାକୁ ଅସରା !!

ହୃଦୟରେ ସ୍ଫୀତ ମୁଁ ସ୍ପନ୍ଦନରେ, ରୁଦ୍ଧ ମୁଁ ସ୍ୱପ୍ନରେ
ବିଭବ ଆଉ କ୍ଷମତାର କାରଖାନାରେ—
ବିଭଗ୍ନ ଆଉ ଚୂର୍ଣ୍ଣବିଚୂର୍ଣ୍ଣ ଲୌହର ଖଣ୍ଡ ସବୁ !
ଠିକ୍ ଯେତେବେଳେ କ୍ରୁଶବିଦ୍ଧ ପୁରୁଷର ରକ୍ତରାଗରୁ
ରେଖାଙ୍କନକୁ ବାରି ବାରି କରେ, ଅନୁସରଣ କରେ—
ଲୌହଖଣ୍ଡଗୁଡ଼ିକ—ହୁଅନ୍ତି, କଥା ହୁଅନ୍ତି—
ତାପାନୁତାପରେ ଜର୍ଜ୍ଜର ଆତ୍ମାଗୁଡ଼ିକ ସହିତ !!

ନିଜକୁ କେନ୍ଦ୍ରୀଭୂତ କରେ, ନିଜକୁ ମୁଁ, ନିଜେ, ତୁମଠି !

ଚିତ୍କାରି ଉଠେ ଇଞ୍ଜିନ୍‌ମାନ, ଝିନ୍ ଝିନ୍—
କୁଜ୍‌ଝଟିକା ଭେଦ କରି ଝଲମଲ କର ତୁମେ,
ଛାୟାର ବିନ୍ଦୁ ଏକ, ରହସ୍ୟମୟ ନୀଳର !

ଶୁଣେ, ଫର୍‌ଫରେଇ, କୁର୍‌କୁରେଇ, କୁହୁରେଇ ଉଠ ତୁମେ !
ଯାଅ, ପକ୍ଷ ମେଲି ଯାଅ, ଉଡ଼ି ଉଡ଼ି ଯାଅ କପୋତୀ ମୋର !

ସାହସ ଧରି, ମାରେ ବୁଡ଼ ମାରେ, ମୁଁ ଖସେ !
ନିଜକୁ ନିଜେ ଭରଣ କରେ ତୁମଠି, ବିକ୍ରମରେ ମୋର !!

ଶକ୍ତ ଆଉ କୋମଳ—ନାଳି—ନାରିକେଳର ଶସ ଭଳି ତୁମଠିଁ
ଭେଦ କରି ତୁମକୁ—ସୂଚ୍ୟଗ୍ରରେ ସୂଚାଇ ଦିଏ ତୁମକୁ ହିଁ !
ଶକ୍ତ ଆଉ, ଅବାରିତ ସୃଷ୍ଟିର ପ୍ରବାହରେ ବିଦ୍ଧ୍ୟୁତର,
ଘୂର ତୁମେ ଘୂର, ଶଙ୍ଖିଳ ଗତିରେ ତୁମର,
ଆଗ୍ନେୟ ପିଣ୍ଡ ଏକ ତୁମେ—ନଟୁ !

ନିବିଡ଼ ଆଲିଙ୍ଗନରେ ତୁମର
ଯାଇ ଲାଜେଇ ଯାଇ,
ଉଶ୍ୱାସିଆ ନିଃଶ୍ୱାସରେ—ତୁହାକୁତୁହା
ପ୍ରାଣୋର୍ମିର ତଳେ ତଳେ
ରୁଦ୍ଧ ମୁଁ, କ୍ରୋଧରେ ସଦ୍ ମୁଁ ସୁପାବନ ।

ଉତ୍ପୀଡ଼ିତ ସୁତୀବ୍ର ଯନ୍ତ୍ରଣାରେ ମୁହୂର୍ତ୍ତେ—
ସ୍ପନ୍ଦରେ, ଏକ ପରେ ଆରେକ!
ଉଷ୍ଣ ଆଉ ଶୀତଳ
ଥରେ ମୁଁ, ଥରେ, ଆନନ୍ଦରେ ରୋମାଞ୍ଚିତ ହୋଇ ଥରେ!
ଝଂକୃତିରେ ତୁମର—
ମୁଁ କଣ ହଜାଏ, ହଜାଇ ଦିଏ ନିଜକୁ!
ମର୍ଚ୍ଛିତ ହୋଇ ବେଦନାରେ—
ନଇଁ ନଇଁ, ଧାଏଁ ଯେତେବେଳେ—ଧରିବାକୁ, ଧରିବାକୁ ତୁମକୁ?

ତୁମେ କ'ଣ ନଷ୍ଟ କର, ଅପବିତ୍ର କର ମତେ,
ପ୍ରିୟା ମୋର?
କାହିଁକି ତେବେ—
ସିନ୍ଦୁର ରାଗରେ, ରଞ୍ଜିତ ହୋଇ ଉଠେ, ଉଦଧି ପରେ ଉଦଧି,
ଜ୍ୟୋତିର୍ମାଳାରେ ବିଭୂଷିତ ହୋଇ ଉଷାର
ଆଘାତ କରେ, ଦୀର୍ଣ୍ଣ କରେ ତମିସ୍ରା
ରୁଧିରାକ୍ତ ହୁଏ, ତରୁ ତୃଣ, ବ୍ରତତୀ!
କେଜାଣି କେତେ ଉତ୍ପ୍ରେକ୍ଷାରୁ ବିରହିତ ନିର୍ମଳ ପ୍ରତିମାନର,
ସ୍ୱରର ସଂଘାତରେ ରହି ରହି, ବିଭଙ୍ଗ!
ସେ କି ମୁଦ୍ରାରେ ନିବଦ୍ଧ ବେଳ ବେଳେ ଅଧରୋଷ୍ଠରେ ତୁମର!!
ବିଦ୍ରୂପ କର ମୋତେ, ଝଙ୍କାସିଆ ଆନନ୍ଦରେ—
ଘୃଣାରେ ଶୋଷଣ କରି ପ୍ରାଣର ନିର୍ଯ୍ୟାସକୁ ତୁମର,
ତୁମକୁ ହିଁ କାମନା କରି, ପ୍ରାଣର ଉଲ୍ଲାସରେ,
ଦଳେ ମୁଁ, ଦଳିଦିଏ,
ଚିପୁଡ଼ି ଚିପୁଡ଼ି
ସୁରସରେ ଢଳ ଢଳ କମଳ—କମଳା ତୁମେ ନିଶ୍ଚୟ।

ସ୍ମୃତିର ଚାରଣରେ ଅତୀତର
ବିତେ, ଯୁଗ ପରେ ଯୁଗ—ମଧୁର ବିସ୍ମୃତିରେ ପୁଣି
'ଲେଜର୍' ରଶ୍ମିରେ କେଉଁଠି,
ପ୍ରଚ୍ଛନ୍ନରେ ଚମକେ, ଝଲକେ ଭବିଷ୍ୟତ।

ନର୍ତ୍ତିତ ହୋଇ ଲୌହଶାଳାରେ
ସୁଦକ୍ଷ ହାତରେ ବା କେତେ
ଆତ୍ମାରେ ପଶିଆସି ହସି ଉଠେ କେଜାଣି କେତେ ଚନ୍ଦ୍ର !

ବୃଥା ବୃଥାରେ, ଆହା ଜଳେ—ଜଳା ହୁଏ ଦୀପ
ବିଲଗ୍ନ ହୋଇ, ବିଚ୍ଛିନ୍ନ ହୋଇ ତୁମଠୁ !

ପୁଷ୍ପିତାର ଶଯ୍ୟାରୁ କେତେ,
ଖସେ ମୁଁ ଖସେ, ମିଥ୍ୟାରୁ ପଙ୍କରେ ଏ କାଳର !
ସେ କି ଉନ୍ମେଷର ଯନ୍ତ୍ରଣା ସେ କି ବେଦନା ମୋର !
ଦିବସକୁ ପୂର୍ଣ୍ଣ କର ମୋର
ବିଚିତ୍ର କେତେ ବିପୁଳ କେତେ ଘଟଣାର ସମ୍ଭାରରେ ।

ଘୂରେ ମୁଁ ଘୂରେ, ଚଉପାଶରେ ଘୂରେ ତୁମର,
ସ୍ପୁଟନିକ ନୁହେଁ, ମୁଁ ନା, ନୁହେଁ,
ନାଚେ ମୁଁ, ନାଚେ—
ବୈଦେଶିକ ନୃତ୍ୟରେ ଫକ୍ସଟ୍ରଟର ତାଳେ ତାଳେ,
ସପ୍ତକନ୍ୟାର ସହ ସପ୍ତର୍ଷିର କ୍ରୀଡ଼ାର ମଣ୍ଡତାରେ—
ଓହ୍ଲାଏ ମୁଁ ଯେତେବେଳେ ଧରିତ୍ରୀକୁ
ତତ୍ତ୍ୱରେ ଆଶାର—
ଚେତନାରେ ଉଦ୍ଦୀପ୍ତ ।
ନିଜର ଶବାଧାରକୁ, କଫିନ୍‌କୁ ନିଜେଇ କ'ଣ ବହେନା ମୁଁ ?
ରଚି, ସଂଚାର ରଚି, ମର୍ମ ପଥରେ ତାହାରି ହିଁ!
ଯାଏ ନା ମୁଁ ? ଯାଏ ।
ମହାକାଶର ମହାଗର୍ଭକୁ ?

ନିହତ କରି କାଳକୁ, ମହାକାଳକୁ
ପ୍ରସୂକ୍ଷ୍ମା ଗୋ, ପ୍ରତିମାଟି ମୋର !
ଛାୟାମୟୀ ମାୟାମୟୀ ଗୋ ମୂର୍ତ୍ତିଟି ମୋର !
ସୃଜନଶୀଳ ମୃତ୍ୟୁରେ, ଆଳାପ ରଚି ଝୁନ୍ ଝୁନ୍
ବହ୍ଲକୀରେ ମୋର— !
ଚିରନ୍ତନ ଆର୍ତ୍ତିର ଝଟିକାରେ—
ବିକ୍ଷୋଭ କଣ ଆଣେନା ମୁଁ ?

ଚିହ୍ନେ ନାହିଁ ତୁମକୁ ?
ଫୁଟାଏନି, ଫୁଟାଏନି ଭାସ୍କର୍ଯ୍ୟରେ ତୁମକୁ।
ଭାସେ, ମୁଁ ଭାସେ ଯେତେବେଳେ–
ପ୍ରଗାଢ଼ ଉଲ୍ଲାସରେ, ଉଦ୍‌ବେଳ !

ଗମ୍ଭୀର ଆଉ ଶାନ୍ତ–
ଶ୍ୱାସଟିଏ, ଆଃ ଶ୍ୱାସଟି, ମୁଁ !
ତୁମେ ?
ହସ ! ହସି ଉଠ, ହସି ଉଠ ତୁମେ–
ଚିରକୁଟ୍ ଟିକେ, କାଗଜର
ଟୁକୁରାଟିଏ ପଥରର !!
ଟେବୁଲର ଉପରେ ମୋର,

ଏଃ ! ତୁଚ୍ଛ ଅତି–ତ୍ରାଶ୍ !!



# ମୃତ୍ୟୁ ବିନାଶି ଧାଏଁ ରେ ଧାଏଁ

ତୁମରି ପତାକା
କୋଟି କୋଟି ହାତେ ?
ଘାତ ପ୍ରତିଘାତେ, ଶତ ସଂଘାତେ !!

ନୂତନ ଉଷାର ପ୍ରୀତି ସମ୍ପାତେ
ପ୍ରାଣ-ବିପ୍ଳବେ ଯାଏ 'ଆଗୁସାରୀ' !
ଯାଏ ସଂକେତି ଯାଏ ରେ ଯାଏ !

ତୁମ୍ ନିଃଶ୍ୱାସେ
କେଉଁ ସୁପାବନ ରୋଷେ ଜର୍ଜର
ସେ କି ସୃଜନୀର ଭାଷା-ମର୍ମର ।
ଦୃଢ଼ ବିଶ୍ୱାସେ
ଯୁଗ ବିଦ୍ରୋହୀ ପାଏ କି ପାଏ ?

ଆଜି ଯେବେ ସାଥୀ,
ସମତା-ମାର୍କା ବାର୍ତ୍ତା ତଳେ—
ଚତୁରୁଁ ଚତୁର ରକ୍ତଶୋଷଣ !
ମିତ୍ରପଣରେ ଶତ୍ରୁ-ତୋଷଣ !
ସ୍ୱର୍ଣ୍ଣଭୂଷଣେ ସ୍ୱାର୍ଥୀ ପୋଷଣ—
ପାଷ୍ଟିକ୍ ବେଡ଼ି-ଶ୍ରମିକ ଗଳେ,

ଇଏ କି ତୁମର
ବେଦନାବିଦ୍ଧ ହୃଦୟ କଳି ଉଜଳି ଝଳି !
ଆଗାମୀ ରସରେ ହସି ଉତ୍ଥଳି
କମ୍ରଆନନେ ଚାହେଁ ଢଳି ଢଳି
ଚାହେଁ ରେ ଚାହେଁ ।

/ ୩୦୬ /

ଗୁଳିରେ ଗୁଳିରେ

ଗଡ଼େ ଗିରିଜନ, ଗଡ଼େ ହରିଜନ !
ଧର୍ମର ନାମେ, ବିଦ୍ୱେଷୀ ରଣ !
ଅନ୍ୟାୟ ପାଶେ ଦୁଃଖୀ ଶରଣ—
ତୁମରି ପତାକା
ନବ ଜୀବନର ନବ ସଂବାଦେ
କୋଟି କଣ୍ଠର ସିଂହ ନିନାଦେ—
ମୃତ୍ୟୁ ବିନାଶି ଧାଏଁ ଆଗୁସରୀ ଧାଏଁ କି ଧାଏଁ ।



# ଫେରିବ ନାହିଁରେ ଫେରିବ ନାହିଁ

ଅମଳି ହସରେ ଛଳି ଛଳି ନିତି
ଖଳପଣ ଖେଳ ପାଇଁ ରେ–
ଆଉ ନାହିଁ ସେହି ବେଳ, ନାହିଁରେ ।

ଲୁହ ଢାଳି କିଏ ପଖାଳିଲା ବାଟ,
ଲହୁ ଢାଳି କିଏ ଚଳାଇଲା କାହିଁ ମୁକତିର ଥାଟ ।
ଉଷାର ମହୁଡ଼େ ଏଣୁ ନାଲି ପାଟ,
ଉଡ଼େ ନୀଳାକାଶେ
ଦେଖ, ନିରିମଳେ ଚାହିଁରେ !

କାଲିର ଅମଳ ଆଜି ଦରମଳା
କାଲିର ଅଚଳା ଆଜି ଖର ଚଳା,
ଯମ ହାତୁଁ ଖସେ ଜୀବନର ପଳା !
ଆଉ, ବାହୁଲେ କି କଥା-ଚାଇଁରେ ।

ବହୁ-ଜାତିଆଏ ବିଦେଶୀ ବେପାରୀ
ନିଜ ଦେଶେ ଦେଇ ସୁନାର ସୁପାରି,
ପକାଇଲେ ଆସି, ବିଷ-ତରବାରୀ !
ଲୋଡ଼ି ଆମ ଘରେ ଠାଇଁରେ
ଦେଖି କି, ଦେଖୁଚ, ନାହିଁରେ !

ଶାସନର ଶିଖ ଲୁଚି ଦୋହଲାଇ
ମୂଳଦୁଆ ତଳୁ ଚତୁରେ ଖୋଲାଇ
ପୁଣ୍ୟ ଏ ଭୂଇଁ ରକତେ ଗୋଳାଇ
ସାଜିବେ ପାଜିଏ
ନୂଆ କଲୋନିଆ–ସାଇଁରେ
ଦେଖି କି ଦେଖୁନ
ଆଉ ରହିବେ କି ସେହି ଚାଇଁରେ ।

କ୍ଷମତାଖୋରିର ମହିମାର ରଥେ,
ଆଉ ନ ପାରିବ କୁଟ କପଟରେ
ଛଇ ଛଟକରେ,
ଲୁଟ୍‌ପାଟ୍ ସାରି ନିଜ କଟକକୁ ଧାଇଁରେ !

କୃଷ୍ଣ କେଶରୀ କେଶର ଝାଡୁଛି !
ଆଫ୍ରିକାପୁରେ ଥରୁଚି ନାଜୀ !
ପୋଡ଼ା ଛାତି ତଳେ ଭିଏତ୍‌ନାମର
କଅଁଳୁଛି ନୂଆ କୁସୁମ ରାଜି ।

ବୁଣି ବୁଣି ଯିଏ ଫୁଜି-ଚୁଟୁକି
ଫୁଟାଉଚି କେତେ ମରଣ-ଫୁଟୁକି !
ଅଭିଯାନେ ଆମ ରହିବ କି ସେହି
ନିଃସ୍ୱ ରୁଧିରପାୟୀରେ ।
ମୁକୁଳିବେ ତାର ଲୁହାର କବଳୁଁ—
ମୂର୍ଚ୍ଛିତ ଚେତା ପାଇରେ !

ଆଉ, କ୍ଷମତା-ମତ୍ତ ହେବ କି ମନ୍ତ୍ରୀ ?
ମମତା-ରିକ୍ତ ହେବେ କି ଯନ୍ତ୍ରୀ ?
ଶୁଣ, ଘନ ଘନ ବାଜିଲା, ବାଜୁଚି !
ଖିଳ ଜନତାର ଜୀବନ-ତନ୍ତ୍ରୀ !!
ମଣି-ମାଣିକରୁ ଶୁଳ୍କ ଖସୁଛି,
ଚଳଣିର ଭାଉ ବଢ଼ୁଛି ସତ—

ତଥାପି, ଖେଳୁଚି
ସମବିଷମରେ ଜୀବନ-ପଥ !

ଧ୍ୱନି ବଢ଼ିମାରେ, ସୁଫଳ-ଜଡ଼ିମା
ଶ୍ରମିକ-ମାରଣେ, ଧନିକ-ତାରଣେ
ଫିତା-ଅରମାରେ, ଗୀତା-ପରମାରେ
ଆଉ ନ ରହିବେ, ଗଣର ମୃତ୍ୟୁବାହୀରେ ।

ଆମେ ରେ ଦଳିତ, ମଥିତ କାଲିର
ଐକ୍ୟରେ ଦୃଢ଼ ପୃଥିବୀ ସରା !
ହସି ହସି ଉଠୁ ଗଗନୁ ଗଗନେ
ନୂଆ ସୃଜନର ଶାନ୍ତି-ପାରା !
ଇତିହାସ ଗତି ଫେରେ ନା ଫେରେ ନା
ଆଉ ତ ଫେରିବ ନାହିଁରେ !

ଥରେ ଅଧେ ଅବା ରହିଲେ ଅଟକି,
ପ୍ରାଣର ଆଘାତେ ଉଠିବ ଝଟକି
ଧସାଇ ଭସାଇ ବିଘ୍ନବିଧାୟୀ
ଚଳିବ ଚଳିବ ସାମ୍ୟର ସୁରେ ଆଲୋକର ଗୀତ ଗାଇ ରେ !
ଇତିହାସ ଧାରା ଫେରେ ନାହିଁ ଆରେ
ଆଉ ତ ଫେରିବ ନାହିଁ।



# ସକାଳଟିଏ ଚାହେଁ ମୁଁ

ସକାଳ ! ସକାଳଟିଏ ଚାହେଁ ମୁଁ,
ଆଜିର ନୁହେଁ, କାଲିର ନୁହେଁ,
ସକାଳଟିଏ ଚାହଁ ମୁଁ !

କାଳର ଘୂର୍ଣ୍ଣନରେ ସ୍ତବ୍ଧ ଯିଏ, ଶୁଣ !
ହଳୀର କର୍ଷଣରେ ମୃତ୍ତିକାର ମର୍ମରଣ ମୁଁ, ଶୁଣ !
ଚାହେଁ ମୁଁ ସକାଳ ସେମିତି ଗୋଟିଏ ସକାଳ,
ଶ୍ରମର ବିଳାସରେ ହସିବାର ଦାୟିତ୍ୱ ନେଇ ଆସିବ ଯିଏ,
ବଲ୍‌ଗା-ଛାଡ଼ ସୃଜନୀର ବାର୍ତ୍ତାରେ
ବସନ୍ତର ବ୍ୟାକୁଳତା ଭଳି—
ନିଷ୍କାମ କାମନାରେ ଓଲଟ ପଦ୍ମର ପାଖୁଡ଼ାରେ
ଆସିବ ଯିଏ
ପେଚକକଣ୍ଠର ଫୁର୍ତ୍ତିରେ, ଗଇଁଠିର ଗୀତରେ—
ଆଗ୍ନେୟ ବାସନାରେ ବିହ୍ୱଳ କରି ନୁହେଁ,
ସଚେତ କରି ସତେଜ କରି ଯୁଗକୁ,
ଚାହେଁ, ମୁଁ ସେମିତି ଗୋଟିଏ ସକାଳ !
ମୁଁ ଚାହେଁ ସେମିତି ଗୋଟିଏ ସକାଳ—
ଯାହାପାଇଁ ଆତ୍ମଘାତି କି ଶହୀଦ ହେବାକୁ ହେବ ନାହିଁ,
ଖ୍ୟାତ କି ଅଖ୍ୟାତ କେତେ ଗାନ୍ଧୀ କି କିଙ୍ଗ୍‌କୁ,
ଘୃଣ୍ୟ ଯେତେ ଧର୍ମାନ୍ଧତାର ଚୋଟରେ
ଲୋଟିବ ନାହିଁ ରକ୍ତରେ—ଲୋଟିବ ନାହିଁ
ଇନ୍ଦିରାର ଇନ୍ଦୁ !
ଶଙ୍କିତ ଭାବନାରେ ଯାହା ପାଇଁ
ନିଦ୍ରିତ ମୁହୂର୍ତ୍ତରେ ନିତି,
ହିଂସାର ଶୃଙ୍ଗାରରେ ବୀଭତ୍ସ
ଛାଡ଼ିବ ନାହିଁ ଥୋଲାକୁ ଥୋଲା
ମୈତ୍ରୀର ମାଂସ—
ଗଡ଼ିବ ନାହିଁ ଗୋଟାକୁ ଗୋଟା
ବର୍ଣ୍ଣିଳ ଯେତେ ବାରୁଦମୟ ଆକାଶ
ଜନୟତ୍ରୀ ଧରିତ୍ରୀ ଆମର—ଆଃ
ନା, ହେବ ନାହିଁ—ଧର୍ଷିତା !

ଚାହଁ ମୁଁ ସେମିତି ଗୋଟିଏ ସକାଳ !
ନିର୍ମାଣର ଚରମତମ ବିନ୍ଦୁରେ
ମୀମାଂସିତ ସମସ୍ୟାର ପ୍ରହେଳି !
ରୋମାଞ୍ଚିତ କରିବ ଆତ୍ମାକୁ ଯାହା ତୁମର ଆଉ ମୋର–
ଚମତ୍କୃତ କରିବ
ଗ୍ରହ ଆଉ ଗ୍ରହାଣୁର ପୁଞ୍ଜକୁ !

ଚାହେଁ ମୁଁ ସେମିତି ଗୋଟିଏ ସକାଳ !
ବିଦ୍ୟୁନ୍ମୟ ଚୁମ୍ବକର ଅଧରରେ ଯାହାର
ଥରିବି ମୁଁ ସଜାଗ ହୋଇ ବିହ୍ୱଳ ତାର ଚୁମ୍ବନରେ
ପ୍ରୀତିର ପଲ୍ଲବମୟ ଶଯ୍ୟାରେ ପ୍ରଗାଢ଼–
ପ୍ରଳୟଙ୍କର ଆଣବିକ ବକ୍ଷରେ ଯାହାର
ଝରିବି ମୁଁ ଶୀକରିଳ ସ୍ମୃତିରେ
ରାତ୍ରିର
ଉଷାର ଉଲ୍ଲାସ ।

ଚାହେଁ ମୁଁ, ନୂତନତମ ସକାଳ–
ବର୍ତ୍ତମାନର ଆବର୍ତ୍ତରେ–
ଭବିଷ୍ୟର ବିବର୍ତ୍ତମାନ କୃତି ମୁଁ ନିଜର–
ଅଣୁର ଅରଣ୍ୟରେ
ରଶ୍ମିର,
ଲତା ପତ୍ରର ଉତ୍ସବ ହେବ ଯାହା,
ନା, ନିଭିବ ନାହିଁ, ନିଭିବ ନାହିଁ
କୁସୁମର କ୍ରାନ୍ତିରେ
ଆମର ଅଶ୍ଳେଷରେ, ବନ୍ଧୁ !

ପ୍ରାଣ କନ୍ଦରରେ ଆମର– !
ଚାହେଁ ମୁଁ ସକାଳଟିଏ,
ତୁମେ କ'ଣ ଚାହଁନା ?
ଚାହଁ ନିଶ୍ଚୟ ସେମିତି !!



/ ୩୧୨ /

# ଭୂମିକା

କାହୁଁ, ଦେବି କି କବିତା, ଦେବି ତତେ
ଆଜି କବିତା ଯେ କିବା ବେଶ ଜଣା
ତତେ ବେଶ୍ ଜଣା !
ଏ ଯେ ଖେଦି ଆସୁଅଛି କାଳ ଢେଉ,
ଆମେ ଦେଖୁ ଦେଖୁ ହେବା ବାଟବଣା ?

ଆରେ ସତ କଥା, ଏ କି ସତ ନୁହେଁ ?
ଘରେ ଘରଣୀର କେତେ ଶାଢ଼ୀ ନାହିଁ !
ପିଲା ମୂରୁଖ ହେଲେଣି ପାଠ ବିନା,
ସାରା ଦୁନିଆରେ କଳା କଳା ଛାଇ !

କାହିଁ କାହା ପୁଆଣିର ନହବତ,
କାହିଁ ଝିଅ ଅଭିଆଡ଼ୀ ରହେ ପରା,
କିଏ ପ୍ଲେନ୍‌ରେ ଛୁଟେ ବିଲାତକୁ,
କହିଁ ରାସ୍ତାରେ କିଏ ଦରମରା !

ଆଜି ଚିଲ ଶାଗୁଣା ତ ଭେଳା ଭେଳା
ଖାଲି ଆଖିରେ ଆଖିରେ ହଣାହଣି !
କେତେ ପଚା ପ୍ରଣୟର ପିଆଲାରେ
କେତେ ମାର୍କିନ୍ ରସ ଛଣାଛଣି ।

ମୁଁ ତ ଦେଖୁଛି କବିତା, ଦେଖୁନୁ କି ?
କେତେ ବହି ଦୋକାନରେ ଗଡ଼ାଗଡ଼ି !;
ଆହା, ଆପଣାର ପ୍ରୁଫ୍ ଆପେ ଦେଖି
କବି ବେପାରୀ ଲେଖାରେ ଜଡ଼ାଜଡ଼ି !

ତୁ ତ କବିତା ଲେଖୁଛୁ, ପଢ଼ିଛି ମୁଁ,
ମୋର କବିତା ପଢୁଛୁ ତୁଇ ଏକା !
ଆମେ ଆସନର ନୋହୁ ବିଚାରକ !
କହ, କେଉଁ ମରମୀରେ ଆମେ ଲେଖା ?

ପଥେ ଫମ୍ପା ଢୋଲ୍‌କି ସ୍ୱର ତୋଳି
କରେ ଜୀର୍ଣ୍ଣ ସମାଜ ବାହା ବାହା,
କହେ, ''କବିତା ଫସଲ ହେଲାଣିରେ
ଏବେ ରୁଦ୍ଧ ତାହାର ପ୍ରୀତି-ରାହା ।''

କହ କବିତା କି କେବେ ମରି ପାରେ ?
କେବେ ମାଟି ହୋଇଯାଏ ମାଟି ତଳେ ?
ଆଶଃ ନିଶ୍ୱାସେ ସେ ତ ଥରି ଥରି
କେତେ ଜଡ଼ ଅନ୍ତରେ ଝଡ଼ ଭରେ !!

ନୂଆ ଭେଳିକି ଆଣିଛି ସ୍ୱାଧୀନତା,
ଘରେ ନାଲିସ୍ ନିଲାମ କରାମତି,
ରୋଗ ଶେଯରେ ପ୍ରିୟାର ଚେତା ବୁଡ଼େ,
କାହିଁ ସୁଖ ଶିରୀ କାହିଁ ଏକ ରତି ?

ତୁଇ ଦେଖୁଚୁ ବନ୍ଧୁ, ଦେଖୁଚୁ ତ !
ଆଜି ଘରେ ଘରେ ଖାଲି ହାଡ଼ମାଳ,
କାହିଁ ମୁକ୍ତିର ନୂଆ ପରିବେଶ ?
ଖାଲି ଦୁର୍ନୀତି, ଖାଲି ଭିକଥାଳ !

ଆମେ ଅନାଇ ଥିବା କି ବସି ବସି
ଶୁଣି ମାଇକ୍‌ରେ ଡାକ ରାଉ ରାଉ ।
ଏବେ ଶାସନ-କଳରେ ଏକାଡ଼େମୀ,
ଦେଖି ଆସନ-ତଳରେ କଳା-ଭାଉ ।

ଏଇ ଛତ୍ର, ଚାମର, ଖସି ପଡ଼େ
ଏଇ କୃଷ୍ଣ ନିଶାରେ ଅଭିସାର
ଆମ କବିତା ତହିଁର ଚିତା ଜାଳି,
ଖୋଲା ରାସ୍ତାରେ ରଚୁ ପଟୁଆର !

କହ ଆମଠାରୁ କିଏ ଅଛି ବଡ଼ ?
ମରି ଜୀବନ ଦେଉଛି ତେଜୀୟାନ,
ନିତି ସଳିତା ପରାଏ ଜଳି ଜଳି
ଲାଭ କରୁଅଛି ନେଳି ଆସମାନ

ସଦା ସଜାଗ ରହିଛି ସେଇ ଶିଖା
ପ୍ରାଣ ଭିତରୁ ଫୁଟିବ ଛାଏଁ ଛାଏଁ।
ଏ ତ କବିତା ନୁହେଁ ରେ ନୁହେଁ, ସାଥି !
ଆମ ସେଇ କବିତାର ଭୂମିକା ଏ !



# ନୁହେଁ ଅଞ୍ଜଳି ନୁହେଁ ଶ୍ରଦ୍ଧାର

ତିଳେ ତିଳେ ଆତ୍ମବଳି, ମୁହୂର୍ତ୍ତେ ଉତ୍‌ଥଳି–
ଯୂପ ଅବା ଫାଶିକାଠେ–
ନୁହେଁ ସିନା ଚମତ୍କୃତିମୟ।
ସୁନୀରବ ସାଧନାର ବୃଦ୍ଧି ପରିପାକେ
ଚିତ୍ତ ପାଖେ ପାଖେ।
ସ୍ନିଗ୍‌ଧ ମହିମାରେ ସେତ
ସୁକୃତିରେ ଲୟ।

ତରୁ ସମ ବିତରାଏ
ନୂଆ ନୂଆ ସୁମନୁ ସୁବାସ!
ଭୁଞ୍ଜାଏ ଆହାର ଆଣି
ବଢ଼ାଇ ଉଡ଼ାଏ କେତେ ଶିଶୁର ସୁହାସ!

ଲଢ଼ିଯାଏ ଖରା-ବର୍ଷା-କରକା-ପତନେ–
ସେ କି କେବେ ଲୋଡ଼ିଯାଏ ଆତ୍ମ-ପ୍ରଖ୍ୟାପନେ
ସଜ୍ଜା-ପ୍ରକରଣେ
ମଞ୍ଚେ କରତାଳି,
ଚିତ୍ତ୍ରରେ ବିବୃତି ଅବା ଅର୍ଥର ମାଳଞ୍ଚେ–
ରନ୍ଧ୍ରେ ଅନର୍ଥର ମାଳି!

ବାଦେ ବାଦେ ସେ ତ ତତ୍ତ୍ୱବୋଧ!
ତଥ୍ୟର ଗହଳେ ନିତ୍ୟ,
ଅତତ୍ତ୍ୱ-ବିରୋଧ!
ପ୍ରାକୃତିକ ଦାନବିକ ଦୁର୍ନୟ ବିପାକେ,
ପୁଣ୍ୟ ପ୍ରତିରୋଧ!
ଛନ୍ଦ୍ମତାରେ ଛେଦି
ଧରାର ବହ୍ନିଳ ବାଣୀ ଧ୍ରୁବ ଅଭ୍ରଭେଦୀ!

/ ୩୧୬ /

ଗୃହହୀନ ଗୃହୀ ସେ ତ ଜନାରଣ୍ୟେ
                    ଭିକ୍ଷୁ ସୁକୁମାର !
ଆନନ୍ଦର ଆର୍ଦ୍ରି ଘୋଳି ଉଦ୍‌ବେଳାଏ
ବିଭଳିତ ପ୍ରୀତି-ଅକୂପାର ।

ଯୁଗର ସ୍ପନ୍ଦନ ସେ କି ଯାଏ ଅପସରି କେବେ
                              ଯାଏ ଅପସରି ?
ସାଥୀର ହୃଦୟ ଶୋକେ ସ୍ପନ୍ଦମାନ କରି ଅବା
                              ମୁହ୍ୟମାନ କରି !
ତାହା ଲାଗି ନୁହେଁ ନୁହେଁ କୃତ୍ରିମ ଶପଥ
                              ଶ୍ୱେତାଭ ନିରକ୍ତ !
ତାହା ନାମେ ଯାତ୍ରା ଲାଗି ପନ୍ଥା ରେ ତା
                              ଛନ୍ଦେ ଅନୁସରି,
                              ବାର୍ତ୍ତାରେ ତା ଢଳି ।
ନୁହେଁ ଲୋଡ଼ା ଶ୍ରଦ୍ଧାର ଅଞ୍ଜଳି,
ଶୂନ୍ୟ ପଥେ ଟେକି ଦେଇ ଅଶ୍ରଦ୍ଧାର କଳି !
ସ୍ୱପ୍ନ ଦେହେଁ ଫୁଲାପଣେ ଭସ୍ମ ରେ ସଂଚଳି ।

ତାହା ଲାଗି, ସାଥି ! ସିନା
                    କ୍ଷଣେ ଆକୁଳତା–
ସେ ତ ଚିରନ୍ତନୀ, ସେ ତ !

ରକ୍ତିମ ପତାକା ତଳେ
                    ମର୍ମରିତ ବ୍ୟଥା !

ଯେ କବିତା ହଜିଯାଏ
ଆସେନି କି ଆସେ ନି ସେ ଛାଏ
ସକଳ ବିଷାଦ ମେଳେ ଆନନ୍ଦରେ ଫେରି
                              ମଳୟ ହିଲ୍ଲୋଳ ଖେଳି
                    ଆଷାଢ଼ର ନୀପରାଗେ ଘେରି ।



# ଜ୍ୱଳନ୍ତ

ମମତାର ମନ୍ଥରା ହସ ମୁଠିଏ
ଛାଟି ଦେଲି, ଛନ ଛନ ହୋଇ
ଶରତ୍ ସକାଳର ଗଙ୍ଗଶିଉଳିରେ–
ଜୀବିକାର ଜଞ୍ଜାଳରେ ଧରିଲା କିଏ ଧରିଲା ଭଲା,–

ବରଫର ଦୁର୍ଗକୁ ହିମାଦ୍ରିର
ତରଳାଇ ସେ କି ସ୍ନେହର
ଉତ୍ତାପରେ, ହସ ମୁଠିକ–
ଚିହ୍ନି ଦେଇ ଲାଲ ଲାଲ ଦ୍ୟୁତିରେ ଦ୍ୟୁତିରେ–
ଲେଉଟି ଆସିଲା ଶୁକ୍ଲିମ ଅନୁରାଗରେ
ଶୃଙ୍ଗରୁ ଶୃଙ୍ଗକୁ ସେତୁ ରଚି, ସୁରମ୍ୟ !
ବାଲୁକାର ସମୁଦ୍ରରେ ହାବୁକେଇ ଲହର ଢେଉ...
ମର୍ମରେଇ ଖର୍ଜ୍ଜୁର ବନବୀଥିକୁ କେତେ,
ଘର୍ମେଇ ଦେଇ ଶ୍ରମର ଆର୍ଦ୍ରତାରେ ନିଶୂନ୍ ମୁହୂର୍ତ୍ତକୁ–
ଚିଆଁଇ ଦେଇ ସୁପ୍ତର ଶିଶୁକୁ
କେନ୍ଦରାର କାନ୍ଦଣାରେ ଆନନ୍ଦର ଜୀବନ ।....

ଛାଟିଦେଲି ଅଞ୍ଜଳ ହସ ମୁଠିକ ନିର୍ମମ !
ସେ କି ହିଂସା, ଅସୂୟାର ଲକ୍ଷ୍ୟ ହେଲି ମୁଁ,
ପ୍ରୀତିର ପ୍ରଚାରପତ୍ରରେ ବିଷାକ୍ତ,
ଅସହ୍ୟ ଯନ୍ତ୍ରଣାରେ ବିଜ୍ଞାନର ଆକୃତି ଘେନି
ରକ୍ତରେ ଗୋଳି ଗୋଳି, ଛାଟିଦେଲି ପୁଣି ଛାଟିଦେଲି,
ଦୁର୍ନିବାର କ୍ରୋଧରେ ମୋ'ର ହସ ମୁଠିକ ସେହି !

/ ୩୧୮ /

ଶତ୍ରୁର ବ୍ୟୂହରେ ପଶୁତ୍ୱର ବିକ୍ରିୟକୁ ଶ୍ୱସାଇ–
କେତେ କିଏ ଦୁହିଁଲେ ରାଶି ରାଶି ସୃଷ୍ଟିର ଶିରା ମୋର ?

ଛାଟି ଲାଗିଲି ମୁଠାକୁ ମୁଠା ହସ ମୋର, ଜ୍ୱଳନ୍ତ
ଦେଖିଲି, ଆକାଶରେ ତାରାଏ ଖସିଆସିଲେ କାକୁସ୍ଥରେ
ନିର୍ଜଳ ନୟନକୁ–
ଅସ୍ତ୍ର ଯେତେ ଆଣବିକ–
ଜୀବନ ଶସ୍ୟର ସାର ହୋଇଥିଲା ତ ସେତେବେଳକୁ
ଶରତର ଗଙ୍ଗଶିଉଳି ମୋର
ହସୁଥିଲା ତ ବି ବସନ୍ତର ପଥରେ ??



# ମୁଁ ଯେବେ ଯିବି ସରି

ମୁଁ ଯେବେ ଯିବି ସରି— !
ମନରୁ ମନେ ଉଡ଼ି
ଅକାମୀ ଭାରତୀରେ ଅଶୁଝା ଭୋକଶୋଷେ,
ଅଲଣା ଆରତିରେ ଅବୁଝା ରାଗରୋଷେ,
ନିଜକୁ ବିତରାଇ ତିମିରୁ ଅତିମିରେ—
ଅଭୁଲା ପଥ ହୁଡ଼ି

ଲୁହର ଶିଶିରରେ
ପୂରାଇ ପ୍ରାଣ ଝରି !!

ମଣିବ ନାହିଁ ମତେ, ତେଜିଲି ଦେହ-ଭୂଇଁ !
ବୁଲିଲି ମୁହୁଁ ମୁହେଁ ଓଠକୁ ଓଠ ଛୁଇଁ—
ବାରଣେ, ଅବାରଣେ, ଅକାରଣେ, କାରଣେ—
ନେଲି ବା କାହାର ମୁଁ
ଜୀବନ ମଧୁ ହରି— ।
ମୁଁ ଯେବେ ଯିବି ସରି !
ବାଜିବ ନାହିଁ ଆଉ ଗୀତର ଆଭୋଗରେ
କା ଭୂରୁ-ନିଯୋଗରେ
ଅକଥା ଘୋଷା ସମ—
ଅପୋଷା ପୋଷାରେ କି ଅଖୋଲା ଖୋସାରେ କି,
ରୂପରେ ଅରୂପର ଉପମେ ନିରୂପମ
ମୁକୁଟ ଥରି ଥରି—

ମୋ ଲାଗି ଯଦି କେବେ—ଟୋପିଏ ଶ୍ରମ ଜଳ !
ଯାହାର ହେଉ ପଛେ— ମରମୀ ମାୟା ରଚେ
ହେବ ତ ପାଥେୟ ମୋ ଓଷାର ଆଶା-ଫଳ !

/ ୩୨୦ /

କାକର-ବରଷାରେ ଜଳିଲା କୁହୁରବେ—
ମଳୟେ-ସରସାରେ-ଗଣିବ ନାହିଁ ମତେ
ଅଫୁଲା-ଗଉରବେ—
ଅରସେ ରସଲେଖା ମଉନେ ପଢ଼ି ଏକା—
କିଏ ତ କାହିଁ ଥିବ ନିଜନେ ସଜନେ ବା
ହୃଦରେ ମତେ ଧରି !—

ଚକିତେ ଅଚକିତେ—
ହିମାଳ ତାତିରେ କି ଖରାର ଖର-ଶୀତେ
ଅଋତୁ-ଋତୁରେ -ମୁଁ ନିଜକୁ ନିଜେ ବୁଣି
ସରାଗେ ଅସରାଗେ, ଅମନ-ମନ-ଭାଗେ—
କାହାକୁ ହେଲେ ତିଳେ ନ ରଖି ପ୍ରୀତି-ଋଣୀ
ଜାଣେ ଗୋ, କ୍ଷଣୁ କ୍ଷଣ ମରଣେ ଅମରଣ—
ଅରତି ରତିରେ ମୁଁ
ଅସରା ଥିବି ଭରି—

ମୁଁ ଯେବେ ଯିବି ସରି— !



# ଯୋଡ଼ିଏ ଧାରା ଆମେ

ଯୋଡ଼ିଏ ଧାରା ଆମେ ଧରାର ବୁକେ ବହୁ
ଯୋଡ଼ିଏ ରୂପଧରି ଗୋଟିଏ କଥା କହୁ ।

ଗୋଟିଏ କଥା କହୁ - ମୈତ୍ରୀ ପୀରତିର
ଜୀବନ ପଥେ ଗୀତି - ଅତୁଳ କୀରତିର ।

ଗୋଟିଏ କଥା କହୁ ଆମ୍ର ମୁକୁଳରେ;
ଝୁଲି କି ଝୁଲି ସତେ ଦ୍ରାକ୍ଷା-ଦୁକୂଳରେ ।

ଦ୍ରାକ୍ଷା ରସେ ଲୋଳି - ସେଓର ଓଠ ପାଖେ
ଶ୍ରୀଫଳ ରସାଳ କି ସରମି ସୋଗେ ଲାଖେ ।

ଜୀବନ ଅନୁରାଗେ ମରଣ ଟପି ଯାଉ–
ଭୁଜରେ ଭୁଜ ଭିଡ଼ି ଗୋଟିଏ ଗୀତ ଗାଉ ।

ଗୋଟିଏ ଗୀତ ଗାଉ ପାଗଳ ସମଖାଲି
ସ୍ୱରର ଦୀପ ଶିଖା ହୃଦରୁ ହୃଦେ ଜାଳି ।

ଯୋଡ଼ିଏ ଧାରା ଆମେ ଧରାର ବୁକେ ବହୁ
ଗୋଟିଏ ସ୍ୱର ଲୟେ ବିଲୀନ ଲୁହ ଲହୁ ।

ଗୋଟିକ ମୁରଲୀରେ ଉଚ୍ଛୁଳି ପଡ଼େ ଆଜି
କି ବାଲେ ଲାଇକାର ସଲୀଳ ଶୋହା ରାଜି ।

ଗୋଟିକ ସେତାରରେ ଭିଓଲା ମିଶେ ଆସି
ତରୁଣ ପ୍ରାଣେ ଆଣି କି ରସ - ରୂପ ରାଶି,-

ଭିନ୍ନ ହୁଏ କାହିଁ ପ୍ରାଣରୁ ଆରେ ପ୍ରାଣ
ଛିନ୍ନ ହୁଏ କିରେ ରାଣରୁ ପ୍ରତି ରାଣ ?

ଯୋଡ଼ିଏ ଧାରା ଆମେ ଧରାର ବୁକେ ବନ୍ଧୁ—
ପ୍ରାଣରୁ ପ୍ରାଣେ ଢାଳି ଅସରା ଫୁଲ ମହୁ।

କି ଘନ ତିମିରରେ ଯାତ୍ରା କଲୁ ଥରେ—
ଆଲୋକ ଆଶେ ସେ କି ବିକଳ ସ୍ୱପନରେ

ଆଲୋକ ରୋଧୀ କେତେ ଲୌହ ଶିଳା ଠେଲି
ଜୀବନ-ନଉକା କି ଅନଳ-ହ୍ରଦେ ମେଲି।

ଖସାଇ ଦେଲୁ କେତେ ସୁନାର ପାଗ କାହିଁ
ହସାଇ ଆକାଶରେ ଆମେରେ ପୁରୋଯାୟୀ

ଥରିଲେ ଆତତାୟୀ ଥରିଲା ଘାତକି ଯେ-
ସରିଲା ପୁରପଥେ ମରଣ ଘାତକ ଯେ।

ପ୍ରଜାରେ କଲୁ ରାଜା ରାଜାରେ କଲୁ ପ୍ରଜା
ସବୁଜ ରାସ ଭରି ସ୍ୱରଗ ଦିଗ ହଜା
କଷଣ ସହି କେତେ ସେ କିବା ଅଭିଯାନେ।
ମାତିଲୁ ଆକୁଳରେ ଜୀବନ ଜୟଗାନେ।

ଆଜି ତା ଇତିହାସ ମସ୍କୋଭା ନଦୀ ତୀରେ
ଶୋଇଚି ଯହିଁ ତୋଷେ ଲେନିନ୍ ଜୀଇଁ ଧୀରେ
ପଦ୍ମ ଫୁଟେ ଯେବେ ଗାନ୍ଧୀ ରୁଧିରରେ
ଯମୁନା ଜଳେ ଭାସେ ସ୍ୱପନେ ସୁଧୀର ରେ

କି କଥା ଚଲେ ଆଜି ଯୁଗଳ ମନେ ମନେ
ବାଜେ କି ତୁନି ତୁନି ସମୀର ସନ ସନେ-

ସ୍ନେହର ଶ୍ରାବଣ କି ମରୁରେ ଏଣୁ ନୁଁଏ
ପ୍ରୀତିର ବସନ୍ତ କି ତୁଷାର ଶେଯ ଛୁଏଁ—
ଗାନ୍ଧୀ ଲେନିନ୍‌ର ଯୋଡ଼ିଏ ଧାରା ଆହା
ଗୋଟିଏ ଲେଖା ଆମେ ଗୋଟିଏ ଆମ ରାହା!

ଗୋଟିଏ ଖେଳାମେଳା  ଗଗନୁ ଗଗନରେ
ଗ୍ରହର ପଥେ କେତେ  ସପନେ ମଗନରେ
ଧୂଳିରେ ଏଣେ କେତେ  ନଅର ନୂଆ ତୋଳୁ
କୋଟିକ ଲାଗି ହସି  ଖଣିରୁ ମଣି ଖୋଳୁ

ହେଇ ତ ବୁଲୁଚିରେ  ପୃଥ୍ୱୀ ଚଉପାଶେ–
କେତେ ଯେ ଉପଗ୍ରହ  ମଧୁର ବଧୂ-ହାସେ ।

ଦିବସ ହୁଏ ନିଶି ନିଶି ଯେ ଦିବସ ତ ।
କାଲିରେ ହଜେ ଆଜି, ଅତୀତ କି ବଶତ ।

ଦୁହେଁ ତ ବିହ୍ୱଳ ଯେ ଜୀବନ ଗଢ଼ିବାରେ–
ଆକୁଳ ଆକୁଳିତ ଦ୍ୱନ୍ଦ୍ୱ ହାହାକାରେ ।

ସେ କିରେ କଉଶଳେ ମଣିଷ ମନେ ପଶି–
ହିଂସା-ନାଶୀ ଭାଷା ଝୁମୁରେ ହସି ହସି !

ଉଷର ଦିବସର ଜ୍ୱଳନ ଶୀତଳାଇ
ଉଷାରେ ହିମାନୀର - ବ୍ୟଥାରେ ବିଗଳାଇ

ଊର୍ଦ୍ଧ୍ୱ ଜୀବନର ମାର୍ଗ ସୂଚାଉରେ
ରଶ୍ମି ଅଭିଯାନେ ମୃତ୍ୟୁ ଲୁଚାଉରେ

ପ୍ରାଣରୁ ପ୍ରାଣେ ଢାଳି ପ୍ରୀତିର ବାରିଧାର
ସରଜୁ ଦିଶେ ଦିଶେ ସ୍ନେହର ପାରାବାର

ଯୋଡ଼ିଏ ଧାରା ଆମେ ଧରାର ବୁକେ ବହୁ
ଆକାଶୁଁ ଝରିଝରି ଗୋଟିଏ କଥା କହୁ ।

ଗୋଟିଏ କଥା କହୁ ଗଭୀର ଅନୁରାଗେ
ଉଜ୍ଜ୍ୱଳୁଁ ଉଜ୍ଜ୍ୱଳ ଯେ ଅନାଇ ପଥେ ଆଗେ

ଗୋଟିଏ କଥା କହୁ - ମୈତ୍ରୀ ମମତାର
ମରମ ଆକୁତି ଯା ନିଖିଳ ଜନତାର–



# ମରୁଡ଼ି ବଢ଼ି ପରେ...

ମରୁଡ଼ି ବଢ଼ି ପରେ ପ୍ରକୋପ ହଇଜାର
କେତେ ଯେ ଗଲେଣିରେ କାହିଁ ତା ପରବାର।

ଶୂନ୍ୟ ଗାଁ ପଥ ନୀରବ ତୋଟାତଳ
ଫାଟଳ ବିଲ ସତେ ଦେଖୁନି ଥରେ ହଳ।

ବତାସ ନୂଆଁ ତାଳ ନଡ଼ିଆ ଗଛ କାହିଁ
ପ୍ରେତର ସାକ୍ଷୀ ସମ ମହୀରେ ଅଛି ଚାହିଁ।

ଘରୁଆ ଥିଲେ ଯେତେ ମଡ଼କ ମାଡ଼ ସହି
ଉଧୁରି ଥିଲେ ଟିକେ ପଡ଼ିଲେ ଆଜି ନଇଁ।

କିଏ ସେ ଦେବ ପାଣି କିଏ ସେ ଦେବ ପଣା
ହଇଜା ମାଲେରିଆ କାହାର ନୋହେ ଜଣା।

କିଏ ସେ କହ ଆଜି ଶୁଣିବ କାହାଡାକ
ଦୁଆର ଘର ପୂରି ମରିଚି ମଡ଼ା ଥାକ।

ବଇଦ ଡାକତର ସେବକ ଜନ ଯେତେ
ରୋଗରୁ କହ କିଏ ବରତି ଗଲେ କେତେ।

ଗାଆଁର ବୁଢ଼ା ଜଣେ ପୁରୁଣା କାଳ କବି
ଛାତିର ରକତରେ ଲେଖଇ ବସି ଛବି।

ଆସୁଛି ଭାଲୁ ଜର　　ଥରୁଛି ଦେହମନ
ନିମିଷୁଁ ନିମିଷକେ　　ଜୀଇଁଚି କରି ରଣ ।

ମଣିଷ ମଥା ଖୋଲେ　　ନିଛାଟ ଶମଶାନେ
ପବନ ସାଇଁ ସାଇଁ　　ମାତିଛି ଗୀତଗାନେ ।

ଲେଖୁଚି କବି ବୁଢ଼ା　　ଶୁଣିଚି ସାଥୀଜନ
ବିଷାୟୀ ଘରେ ଥିଲେ　　କୁଟୁମ ଦଶଜଣ ।

ଖାଇବା ବିନୁ ଚାରି　　ଶୋଥରେ ପଚି ସଢ଼ି
ବିଗତ ଅଶିଣରେ　　ପଡ଼ିଲେ ଶୁଖି ଝଡ଼ି ।
ଆଉ ଯେ ଅବଶେଷ　　ଏଥର ଅନଶନେ
କଳମ ମୁଥା ମୁଳେ　　ରହିଲେ ଘର କଣେ ।

ଆସିଲା ହଇଜା ତ　　ବିକଟ ରୂପଧରି
ଦିନକେ ତିନିଜଣ　　ଭୂଇଁରେ ଗଲେ ଢଳି ।

କାହାର ମଳସ୍ରାବ　　ପାଗଳ ପରି ଖାଇ
ଘରଣୀ ଶାମା ବୋହୂ　　ମରଣ ଜୟଗାଇଁ ।

ପୋଷୁକୁ ପୋଷ ହସି　　ଚଳିଲା ଶୋଷି ସୁଖେ
ଦୁଃଖେ ପାଗଳନୀ　　ବିକାର ହୀନ ମୁଖେ ।

ସେ ଦିନ ପୁଅ ବୋହୂ　　ସୁଆମୀ ଗଲେ ତାର
ଖୁସି ସେ ତୁଟିଗଲା　　ଜୀବନୁ ହାହାକାର ।

ଗାଆଁରେ ଚଳାଚଳ　　କରିଚି ଏତେ ଦିନ
ଶୁଣିନି କଥା ଯାର　　ଦେଖିନି ଛାଇ କ୍ଷୀଣ ।

/ ୩୨୮ /

ଢେଙ୍କି ଟଙ୍କି ଟଙ୍କି ପ୍ରେତିନୀ ପରି ନାଚି
　　　　　　ହଲକା ମଲ୍ମଲ ଝୁଲୁଚି ଯାଚି ଯାଚି
କି କଥା ଲେଖିବି ବା ଆରକେ ଘରେ ପଶି
　　　　　　ଦେଖିଲି ଆଚମିତ ଲେଖନୀ ପଡ଼େ ଖସି
ଭାସୁଚି କୁଡ଼ିଆର ଚଟାଣ ବହି ପାଣି
　　　　　　　କୁକୁର ପଲ ପରି ଶତେକ ଜିଭ ଟାଣି ।
ମଣିଷ ଶିଶୁ ଆସି ଚାଟୁଚି ଅବିରଳ
ନ ପାରେ ଆଉ ଲେଖି ଭବିଷ୍ୟ କ୍ଷମାକର
ଆସିଚି ଜର ଏଣେ ପେଟରେ ନାହିଁ ଦାନା
　　　　　　କେତେ ଯେ ଉଡ଼ାଇବି କବିତା କଳାବାନା ।
ମାଳତି ଫୁଲ ଆଉ କବିର ଶିର ଚୁମି
　　　　　କରେ ନା ଆମୋଦିତ ଜୀବନ ବନଭୂମି
ଧୁତୁରା ଗରବିଣୀ ରୂପରେ ପାଉଁଶିଆ
ହସୁଚି ଖାଲି ଚାହିଁ ଦେଖିଏ ଜୁଇ ନିଆଁ

ଜର ବା କାହିଁ କହ ମଢ଼ ତ କୁଢ଼ କୁଢ଼
　　　　　　ମରଣ ସାଗରରେ ବାରୁଣୀ ଯୋଗ ବୁଡ଼ !



## ଖୋଲ ଖୋଲ ରୁଦ୍ଧଦ୍ୱାର

ଖୋଲ ଖୋଲ ରୁଦ୍ଧଦ୍ୱାର ଖୋଲି ଦିଅହେ ମୂକ ଜନତା
ଆକାଶ ଭସାଇ ବାରେ ମେଲିଦିଅ ତୁମ ଆକୁଳତା ।

ଅନଳ ବରଷି ବ୍ୟୋମଯାନ-ଆରବୁ ମୁଖରି
ଅନଳୁ ଦହନଶୀଳ ଦିଅ ତୁମ ବାରତା ବିତରି

ବିପୁଳ ପ୍ରଳୟ କୋଳେ ମିଳିଯାଉ ସେ ହୀନ ଅନଳ
ଘୃଣାରୁ ଜନମି ଯାହା ମନୁଷ୍ୟ ପରାଣେ କେବଳ ।

ଢାଳିଛି ଗରଳ ଗୀତି ଲଲାଟେ ତା' ବୋଳିଛି କାଳିମା
ଯାହାର ଇଙ୍ଗିତ ହେଳି ପ୍ରତ୍ୟୁଷର ମଧୁର ଶୋଣିମା ।

ମୃତ୍ୟୁରେ ପୂଜିବି ବସି, ବିକୃତିର ମଞ୍ଜାଳି ପୟର
ଶ୍ମଶାନେ ଧୂଳିରେ ଲୋଡ଼ି ମୁକ୍ତି ଫୁଲ ମଧୁ ପରିମଳ

ଆସବାରେ ଝଞ୍ଜା ସମ କହ କଥା ଆସରେ ଧସାଇ
କାଳର ବିଦ୍ୟୁତ ହାଣି ଅଶନିର ଆସନ ଖସାଇ
ଆସରେ ସରଜି ପୁନଃ ନବରୂପେ ମଳୟ ଆହବେ

ଲିଭାଇ ପ୍ରଳୟ ଶିଖା ଶ୍ରାବଣର ଗଭୀର ଗୌରବେ ।
ବାଜାଅ ବିଜୟ ତୂରୀ ଶେଷ ହେଉ ମୃତ୍ୟୁର ଶାସନ
ସାଜୁରେ ଦଳିତ ମନେ ନିଖିଳର ହୃଦୟ ତୋଷଣ
ଶସ୍ୟର ସବୁଜଦଳେ ଖେଳିଯାଉ ଫେନିଳ ସୁହାସ
ସବୁଜ ଜୀବନ ଶିରୁ ଖସୁରେ କାଳ ଭ୍ରୂକୁଟି ବିଳାସ ।

ଖୋଲରେ କେ ଅଛ କାହିଁ ଦେଶ ଦେଶେ ହେ ମହାମାନବ
ହୃଦୟ ସଂପୁଟେ ରଖା ଆରକ୍ତିମ କେତନ ବିଭବ ।

/ ୩୩୦./

ଉଠାଇ ଗଗନେ ତ୍ୱରା ଅନା ଆଜି ଯୁଝୁଛି ଏକାକୀ
ବଂଧୁ ତୋର ପୁରୋଯାୟୀ ଆଳସ୍ୟର କହ ଏବେଳା କି
ଆଜି ଏ ବେଳାରେ ତୁ କି ମାନୁଥିବୁ ଧନୀର ନିର୍ଦ୍ଦେଶ
ଦେଖିବୁ ନିର୍ବାକ - ବସି ରକ୍ତ ସେନା ଅନ୍ତିମ ଆଦେଶ
ସାହସ ଶିଖର ତୋର ଚାହଁ ଚାହଁ ଚୁମିବ ଧରଣୀ
ଉନ୍ମେଷମୟ ଜୀବନରେ କୀରତି କରଣୀ।

ତୁହିକି ରହିବୁ ଥିର-ମଜ୍ଜିବାକୁ ବିଫଳ ବିଳାପେ
ସମ୍ମୁଖେ ନିରେଖ ଏଇ ପ୍ରଳୟର କୌଶଳ ପାତେ
ଉଠାରେ ନିର୍ଜିତ ଜନ ଜାଗ ଆରେ ଦଳିତ ଶକତି
ସକଳ ଦେଶରେ ତୋ'ର ଜଳିଉଠୁ ଜୀବନ ଆରତି
କାରାରେ ପ୍ରାଚୀରେ ବାଜି ତୋର ଲୌହ ମୁଠିର ଆଘାତ
ଫୁଟାଇ ମୁକତି ନଭେ—ଶରତର ଅରୁଣ ପ୍ରଭାତ।



ଛିନ୍ନପୃଷ୍ଠା....

## ଆଜିରେ ବରଷା ଧାରା...

ଝର ଝର ଝରେ ଯେବେ
ଆଜିରେ ବରଷାଧାରା
ଥର ଥର ଥର ଯେବେ
ଉଦାସେ ଆକାଶ ସାରା
ନାହିଁ ମାନି ମନା ମୋର
ଝରି ଯାଏ ଆଖି ଲୋର
ସରଜି ଜଳରେ ସୁଏ
ଅନଳ ଜହର ଜାଳା ।

କୁଳର ଗଉରବେ
ପାରିନି ଯାହାରେ ଚିହ୍ନି
ମାଳତୀର ସଉରଭେ
ସେ ନିଏ ନୀରବେ କିଣି
ଶିଞ୍ଜନୀ ତାର ଜାଗେ
ଆଜି ଗୋ ଝରଣ ରାଗେ
ଅଜଣାର ପରିଚୟେ
ଥରେ ମୁଁ ଯେ ମତୁଆଲା ।

ଲୀଳାୟିତ ଜୀବନରୁ
ଯେତେ ଗୋ ଲଳିତ କୃତି
ଅତୀତର ପୂରେ ଯେତେ
ପାସୋରା ଫଗୁଣ ସ୍ମୃତି
କାହୁଁ ଏ ମାନର କୂଳେ
ଗଭୀର ଆବେଶେ ଫୁଲେ

[ଅନୁଗୁଳ ଜେଲ୍‌ରୁ]



/ ୩୩୨ /

# ମେଲାଣି କବିତା...

ମେଲାଣି କବିତା ମେଲାଣି ଦିଅ ଗୋ ରାଣି
ତୋ ପାଟ ପଣତେ ରଖ ନା ଲୋ ଲବେ ଟାଣି

ବନ୍ଧୂଲି ଅଧରେ ଲୁଳାଇ ତରଳ ହାସ
ଭିଡ଼ ନାହିଁ ଆଉ ଭିଡ଼ ନାହିଁ ବାହୁ ପାଶ।

ଆଉ ନାହିଁ ବେଳ ଆଉ ନାହିଁ ବେଳ ସହି
ତୋ କୋଳେ ଲୋଟିବି ବିହ୍ୱଳ ନୟନେ ଲଇଁ।

ଏଇ ଯେ ସମୀପୁ ଏଇ ଯେ ଆସଇ ଦୂରୁଁ
ନୀଳିମ ମରଣ କୂଳୁଁ
ଜୀବନର ଲାଗି ମଧୁର ମୋହନ ଡାକ

ଅବସର ନାହିଁ - ବସିବି ତୋହରି ପାଖ,-
ତୋଳିବ ସପନ ଗୀତି
ସପନ ଯେତେ ଗୋ ପାଇ ଆସୁଥିଲା ରୂପ
ସବୁ ଯେ ସଜନି ସବୁ ତୁମି ଆସେ କ୍ଷିତି।

ଆଜି ଗୋ ମିନତି କର ନାହିଁ ଅନୁନୟ
ସମର ବେଳାରେ ପ୍ରଣୟୀର ନାହିଁ ଥୟ
ଲୁହରୁ ସରିତେ କହଲୋ ସଜନି କହ
ସେନେହ ଲୁହର ଅଛି କିଲୋ ପରିଚୟ?

ସବୁଜ ଜୀବନ ଭସାଇ ପ୍ରଳୟ ସୁଏ
ଏଇ ଯେ କାଳର ଅନଳ ଝଟିକା ନୁଏଁ।

ଜାଳିଯାଏ ଆଜି କେତେ ଫୁଲ ଉପବନ
କେତେ ବ୍ୟଥାମୟୀ-କାହାଣୀ ତରୁଣ ଜହ୍ନ
ତିମିର–ଗରଭେ– ଲୀନ ହୋ ଆସେ ପରା,
ଲିଭିଯାଏ ଯେତେ ଜ୍ୟୋତିର ଉଜ୍ଜ୍ୱଳ ତରା–

ଦେଶେ ଦେଶେ ସଖି – ତୋ ପୂଜା ଦେଉଳ ରାଜି
କୋଣାରକୁଁ ବଳି— ଶିଳିପୀ ତୋଳିବା ଆଜି

ଅତୀତ ମୁଁହରେ ଢଳିଥିଲା ଉପହାସ
ପାଛୋଟିବା ଲାଗି ଆଗାମୀ ଭବିଷ୍ୟ
ତୋଳି ଖୋଲାପଥେ ଶତେକ ଆଘାତ ତ୍ରସ

ତା ହିମ ପରଶେ ଝାଉଁଳି ଝରିବ ଯଦି
ପ୍ରୀତି- ଉପଚାର ମଂଜରୀ- ନିରବଧି
ଥରି ଥରି ଦୁଖେ ଶୁଖିବ ନାହିଁ କି କହ—
ତୋର ସୃଜନର ସରି ତାଳି ଅନାମୟ

ନଥିଲେ ମଳୟ ନଥିଲେ ସୁରର ଲୀଳା
ସୁରଭି- ଆସିବେ ଆବେଶ ଗୋ ପ୍ରୀତିଶୀଳା
ପ୍ରୀତିର ନିଳୟେ ନ ଥିଲେ ବିଳାସ ଦୀପ
ବିନା ମେଘାଗମେ - ନ ଫୁଟେ ଯେସନ ନୀପ
ଦେହରେ ତେସନେ ଦେହ
ସ୍ନେହରେ ତେସନେ ଦିଓଟି ପ୍ରାଣର ସ୍ନେହ
ପାଏ କି ଗୋ ପରିଚିତି
ଉଷରେ କି ଅବା ମେରୁର ତୁଷାରେ ରସେ
ପ୍ରେମରେ ଲଭେ କି ଉପୁଜଇ ପରିଣତି

ଆଜି ଯେ ଆସୁଚି କାଳ ଅହିମାନ ଖେପି
କୋମଳ କଳିରେ କୃଷ୍ଣ ଗରଳ ଲେପି
ନ ହେଲେ ତମେ ସେ କଳା ହେ କବିତା ସାଥି
କବି ଶଳିପୀର କଳପନା ପୁରୁଁ ମାତି
ଆଉ କି ଆସିବୁ ହସି
ନିଖିଳ-ବସୁଧା ତୋ ସୁର ସୁଧାରେ ଧୋଇ
ନୂଆ ଗୀତି-ବୀଥି ପଥରେ ଆଳସେ ରସି
ତୋ କଟି ରସନା ସ୍ୱନେ—
ଆଉ କି ଚମକି ଚପଳ ଚତୁରୀ ଡୋଳେ
ଚକିତେ ସଜାଉ ଚିକୁର ସେନେହ ଲୋଳେ
ସ୍ୱାଗତିବ ଯଉବନ

ପୋଛଲୋ ସଜନି - ପୋଛଲୋ ନୟନୁ ଆଁସୁ
ଆଜିର ପ୍ରଣୟୀ ଚାଲିଗଲେ ତୋର ପାଶୁଁ
କାଲି ଆଳାପର ଆୟାଜନ ଲାଗି ସେ ଯେ
ଶୋଇଯିବ ସିନା- ମରଣ ଧୂଳିର ଶେଯେ
ଯେ ଧୂଳିଶେଯରୁ କୋଟିଏ କବିରୂପେ ସାଜି
ଉଠିବ ଫୁଟାଇ ହସର ମଲ୍ଲିକା ରାଜି
ଶୋଚନା କରନା ରାଣୀ
ଜଣିଏ ମଣିଷ ଜୀଇଁଥିଲେ ଧରାତଳେ
ଝଳିବ ମୂକର ଝଳିବ ଜୀବନ ବାଣୀ— !



## କାରାବାସରୁ....

— ୧ —

ରହ କବି ରହ ସ୍ଥିର, ରହରେ ଅଟଳ
ଭୂଗର୍ଭ ଅନଳୁ ବଳି-ଜଠର ଅନଳ
ଲିଭେନି ଲିଭେନି କେବେ- ଲିଭିବନି ପ୍ରିୟ
ଯେବେ ନ ହୋଇଛି ଶାନ୍ତ ମୁଖଟି ସ୍ୱକୀୟ ।

— ୨ —

ଅମର ରଣ ଭୂଇଁରେ ଭାଇ- ଆମର ରଣ ଭୂଇଁ
ସକଳ ଦେଶେ ରହିଚି ଭାଇ ସକଳ ମନ ଛୁଇଁ

— ୩ —

ଉଷାରୁଣ ହାସ ଫୁଟିବ ଏଥର ନାହିଁ ଡେରି ନାହିଁ ଡେରି
ଏ ଯେ ନିଶି ଶେଷ ଯାମେ - ଆସଇ ଘନ ତିମିର ଘେରି
ଆଲୋକର କ୍ଷୀଣ ଲେଖା
ପ୍ରତୀପଟେ ଦିଏ ଦେଖା
ପ୍ରତୀଚୀର - କୋଳେ ଉଠେ ଦୁଃଖ ଭୟ ଉଠେ-

— ୪ —

ମଳୟର ମୃଦୁ ସଂଚାରେ - ପାରି ନାହିଁ ଯାରେ ଜାଣି
ଆସେ ବରଷାର ସଂସାରେ—ଅଭିସାରେ ଗୀତିରାଣୀ

— ୫ —

ବହୁଦିନ ପରେ ଗାଇ ବସେ ଯେତେ ଗୀତ
ଏକୁଟିଆ- ରାତିଟିରେ
ଜାଣ କେଉଁ ସପନ ଜାଗି ଉଠେ ଆରେ ମିତ
ଏ ମୋର ନୟନ ନୀରେ

— ୬ —

ମୁକ୍ତିର ଯୁଦ୍ଧେ ସେନା ଚାଲେ
ମୁକ୍ତିର ଲାଗି ରକ୍ତ ଢାଳେ

— ୭ —

ଲୁହ ଆସେ ଆଖି ନଇରେ ଉଚ୍ଛୁଳି ଉଚ୍ଛୁଳି ଫୁଲି ଫୁଲି
ପାରେନା ଝରି — ପାରେନା
ମେଘ ଆସେ ଢାଳିବାକୁ ପ୍ରାଣର ସବୁ ଦୁଃଖର ନୀର
ପାରେନା - ପାରେନା
ଯନ୍ତ୍ରଣା ତାର କେତେ ବଡ଼—କେତେ ଅସୀମ
ପାଇଛ କି ତାର ଆଭାସ - ଆଭାସ ଆରେ ସାଥୀ
ସନ୍ତାନର ମୃତ ଦେହ ପାଖରେ - ଦେଖିଛ ମାତାର ମୁଖକୁ
ପ୍ରଥମ ସେ ଯେତେବେଳେ ଚକ୍ଷୁ ଫେରାଏ ଶବ ଉପରେ-
ଦେଖିଛ କି ନୀରବ ଯାତ୍ରାରେ ପଥିକର ମୁଖଶ୍ରୀ
ମୁଖଶ୍ରୀ ସେ ସତ ତ - ମ୍ଳାନି, କରୁଣ, ନିର୍ବାକ୍ ଅଥଚ ସବାକ୍

— ୮ —

ସେହ୍ନ ଥିଲା ପ୍ରେମ ଥିଲା—ଏ ହୃଦୟ ସରି
ପଡୁଥିଲା ଯଉବନ ହୃଦୟୁ ତରଳି
ଜୀବନର ପଥ ପରେ - ଆଜି ଖୋଜେ କାହିଁ
ଟୋପାଏ ହେଲେ ତ କାହୁଁ ଝରି ଆସେ ନାହିଁ

ଗୋପନେ ସେ ଯେ ସ୍ୱପନେ କୁହ କଥା
ପାସୋରି ଦିଏ ସକଳ ମୁଁ ଯେ ଜାଗରଣରେ ବ୍ୟଥା

— ୧୦ —

ସେଇ ଦେଶର କହିବି କଥା ଶୁଣିବୁ କିରେ ଭାଇ
ଯେଉଁ ଦେଶର ତୁଳନା ଖୋଜି ପାଇବୁ ନାହିଁ କାହିଁ
ସେଇ ଦେଶର କାହାଣୀ ତୁହିଁ ଶୁଣିବୁ କିରେ କେତେ
କାହାଣୀ ନୋହେ ଇତିହାସର ଘଟଣା ରାଜି ଯେତେ,
ଶୁଣିବୁ ଯଦି କହିବି ତେବେ ସେଇ ଦେଶର କଥା
ଶୁଣିଲେ ଯା'କୁ ଆପଣାଛାଏଁ ଟେକିବୁ ତେବେ ମଥା ।
ନୁଆଁଇ ଦେଲେ ଆସିବେ ବେକ ଲୋଇଁବ ନାହିଁ ତିଳେ
ଅଟକ ହେବୁ, ସାହସୀ ହେବୁ — ଗଣାରେ ହେବୁ ବୀର
ସେଇ ଦେଶର ଘଟଣା ଯେତେ ରକତ ଗାରେ ଲେଖା

ସେଇ ରକତ ଯାହାର ତେଜ ତୋହରି ତହିଁ ଦେଖା
ତୋହରି ତହିଁ ଦେଖାରେ - ଭାଇ ପଡ଼ଇ ଅବିରଳ
ଝରିଲେ ଯେହୁ ଝରଣା ସମ ଟଳଇ ହିମାଚଳ
ଟଳଇ ହିମାଚଳରେ ସାଥୀ - ଜଳଇ ହୁତାଶନ
ଶୋଷଣ କୁଳେ ସୁମରେ ତାର—ମରଣ ଅନୁକ୍ଷଣ

ସେ ଦେଶେ ନାହିଁ ରାଜାରେ ଭାଇ ନାହିଁରେ, ଜମିଦାର
ନାହିଁରେ ତହିଁ ବିଦେଶୀ ଦଳେ ଗଠିତ ସରକାର ।
ସେ ଦେଶେ କିଏ ପରାଜଠାରୁ କରେନି ଦାବୀ ଋଣ
ଜଣିଏ ହେଲେ ମରେନା ଭୋକେ ନପାଇ ଭାତ ଲୁଣ
ସେଇ ଦେଶରେ ନାହିଁରେ ଧନୀ ନାହିଁରେ ତାର ବେତ
ନାହିଁ କେହି ଗରୀବ ସମ- ଉଡ଼ାଇ ଦୁଖ ନେତ ।

— ୧୧ —

ମୋହରି ପ୍ରଣୟ ?
ସେ ଯେ ସାରା ବିଶ୍ୱର ବିସ୍ମୟ
କାଳର କରାଳ ସୁରେ—
ତାର ଶିହରେ ଉଚ୍ଛୁଳେ ଲୀଳା ଲହରୀ ନିଚୟ

ତାର ନାହିଁ ଛଳନା ଚାତୁରୀ
ନାହିଁ ଚିର ଚିକ୍କୁର ରଚନା
ଚଳେ ନା ସେ ହୃଦୟ ଆତୁରୀ
ମୁଖେ ଆଣି ନୀରବ ଶୋଚନା
ଦାବୀ ତା ନୋହରେ ମଧୁର
ବିରହେ କରିବ ବିଧୁର

ବିନିମୟେ ବିଲୋଳ ନୟନେ
ଲୋଡ଼ିବ ମୋ ଜୀବନ-ଯାଚନା
ସମରର ଉଦ୍‌ବେଳ ଆବେଗେ
ଆସେ ଯେବେ ବାଷ୍ପର ସୁମେଘେ ।



## ଜନଯୁଦ୍ଧ

ଶତ୍ରୁ ଶିବିରେ ଆଜି ମନ୍ତ୍ରଣା ଗୁରୁତର
ପ୍ରଶ୍ନ ଜଟିଳ କିଏ ସେ ସୂତ୍ରଧର !
କିଏ ସେ ଆଗୁଆ ବ୍ରଜ ହାଣୁଚି ଖରେ
କାହାର ଶକ୍ତି ସମ୍ମୁଖ ପଥ ଭରେ !
ଚିନ୍ତା-ଆନତ ମନ୍ତ୍ରୀ ଗଣରେ ଆଖି
ଆଉ କି ଯନ୍ତ୍ର ପ୍ରୟୋଗ ରହିଲା ବାକି !

ଉର୍ଦ୍ଧ୍ୱେ-ଆକାଶ - ନିମ୍ନେ ଧରଣୀତଳ
ସପ୍ତ-ସାଗରେ- ବକ୍ଷ ପ୍ରଳୟାନଳ
ହତ୍ୟା ବିସାରୀ ମତ୍ତ ଚକିତ ଧାଇଁ
ତଥାପି - ବିଜୟ ଚିହ୍ନ କାହିଁ ?

ରାତ୍ରି ସରିଲା- ଗର୍ଜେ କମାଣ ରାଜି
ଧ୍ୱଂସ ରାଗିଣୀ ଛନ୍ଦେ ଉଠୁଚି ବାଜି
ପାଣ୍ଡୁ ଆନନ କଂପେ ଅରୁଣାଧାର
ପ୍ରଶ୍ନ ଜଟିଳ କିଏ ସେ ସୂତ୍ରଧର...!



# ଆକାଶର ପକ୍ଷୀ...

ଆକାଶର ପକ୍ଷୀ ଉଦାସେ ଅନାଏ - ଅନାଏ
ପରାଣର ଦୁଃଖ-ପରାଣର ଖାଲି ଜଣାଏ
ମାଟିର ଉପରେ ତୋଳି ଥିଲା ସୁନା ମହଲ
ସବୁଜ ଆଲୁଏ ଆଣିଥିଲା - ନୂଆ ଚହଲ
କେତେ ତରୁଣିରେ - ସମୀରେ ସମୀରେ
ସୃଜିଥିଲା — ପ୍ରାଣ ଗହଳ
ନିରାଶ ଆକୁଳେ — ଦେଖେ ଲୁହ କୂଳେ
ପଶୁର ଦଶନ ସବୁରି ମରଣ ଅଣାଏ
ଆକାଶର ପକ୍ଷୀ ଲୁହରେ ଭାସି ଅନାଏ
ଭାଳିଥିଲା ଅବା ଡେଣା ଦିଓଟି ମେଲାଇ
ନୀଳ ଆକାଶରେ ଜୀଇଁ ଯିବ - ସୁର ଖେଳାଇ
ସାଗର ସଲିଳେ ଭାସିଯିବ ଅବା ବିଳସି
ଜହ୍ନ ତାରକାର ତରଳ ସ୍ୱପନେ ଉଲସି

ସବୁ ବାଟ ଘାଟେ- ମରଣ କୁହାଟ
ମରଣ ଯେ ଥାଟ- ଟଣାଏ
ଆକାଶର ପକ୍ଷୀଟି କରୁଣ ଉଦାସ
ଚାହାଣିରେ ଖାଲି ଅନାଏ—

ଆଶାର ରାଗିଣୀ - ଗାଇଥିଲା ଯେବେ ପୁଲକେ
ବୁଦ୍ଧିର ଚମକ - ସରଜନେ ପ୍ରେମ ଝଲକେ
ଶୁଣିଲାନି କେହି—ଶୁଣିଲାନି ତିଳେ ମହୀରେ
ମରଣ ସମୀପେ - ଭୀରୁ ନେଲା ମଥା ଲଇଁରେ
ଯେଉଁ ଭୂଇଁପରେ- ଫୁଟିଲା ଫୁଲରେ
ଫୁଟିଥିଲା ହସ ସୋହାଗ ଜଳିରେ
ଝରିଲାନି ତହିଁ - ଜୀବନ ଝରଣେ
ସୁଶୀତଳ ନୀର କଣାଏ ।



# କେତେ କାଳଗଲା...

କେତେ କାଳ ଗଲା—କଳନା ତାର ନାହିଁରେ
କେତେ କୁଟା କାଠି—ମାଟି ଠୁଳ କଲି ଯାଇରେ
କେତେ ପାହାଡ଼ରୁ ଫିଟାଇ କେତେ ସେ ଝରଣା
କେତେ ନଈଧାରା ରୋକି ସୃଜି କେତେ କାନ୍ଦଣା
ପବନୁ ଆହରି— ପ୍ରଖର ଜୀବନ ଗତିରେ
ବିଜୁଳି ନାଚରେ ଚଳାଇଲି ପ୍ରେମ ରତିରେ
ଭୂଇଁ ତଳୁ କେତେ କଳାଧନ ସୁନା ବରଣ
ଓଟାରି ଆଣିଲି ଧରାତଳେ ପ୍ରୀତି ରତନ

ପୋଛି ଦେଲି କେତେ ମାଆ ମୁହୁଁ ଲୁହ କାଳିମା
କେତେ ବାପ ଭାଇ-ପରାଣୁ ଦୁଖର ଗାରିମା—
ମେଲି ଦେଲି କେତେ ହସରେ
ମଜିଲି ମଜାଇ ଦୁନିଆରେ ସୁଖର ସାଗରେ
ମୋ ହାତେ ଉଠିଲା ଭଂଗା କୋଣାରଖ ଜୀଇଁ
ମୋ ହାତେ ଧରାର ଶସ୍ୟ ଶାଢ଼ୀ ହେଲା ସୀଇଁରେ
ସବୁରି ଘର ମୁଁ ସାରୁ ନ ସାରୁଣୁ ଡୋଳିଟି
ଆସିଚି ମରଣ କଳା ତୂଳି ତାର ବୋଳିଟି
ହଜି ଯିବି ମୁଁଇ—
ଭାଜିଯିବ ମୋର ସାଧନା
ଲିଭିଯିବ ମୋ'ର —ଜୀବନ ବୁଦ୍ଧିର ବୋଧନା—

ଆକାଶୋ ବତାସେ— ରଚୁଥିଲି ଭସା ନିଳୟ
ଜଳେ ଥଳେ ଖାଲି ନହେବାରୁ ମନ ସଥୟ
ତାହାଲାଗି ନାହିଁ ଠାବରେ
ସୁଦୂରେ ସମୀପେ - ମରଣ ଶ୍ୟେନର
ଚିହ୍ନିଙ୍କଇ କଟୁ ରାବରେ
ଦେହରେ ମୋହରେ - ଥିବାଯାଏ ଶେଷ ଶକତି
ମୁହଁରୁ ମୋର୍‌ରେ — ଫୁଟୁଥିବା ଯାଏ ଭାରତୀ

ଆଖି କଣେ ମୋର ଜଳୁଥିବାଯାଏ ଅନଳ
ଲହୁରେ ଲହୁରେ ଥିବାଯାଏ ତାପ ତରଳ
ଯୁଝିବି ମରଣ ସହ ମୁଁ
ଯେ ଘର ତୋଳିଛି ତୋଳୁଛୁ ନିରତେ
ରଖିବି- ମରଣ ଦାହନୁ।



## ନରକର ଦୌବାରିକ...

ନରକର ଦୌବାରିକ— ଖୋଲିଦିଅ, ଖୋଲିଦିଅ ଦ୍ୱାର...
ସରଗର ପଥୁଁ ଫେରି ଆସିଅଛୁ ଆମେ ତମପୁରେ
ଆଣି ଅଛୁଁ ସହଚର ଜୀବନର ଯାତନା କରାଳ
ମେଲି ଦେବୁ ଧରାବୁକେ ଗରଳରେ ବିଗଳିତ ସୁରେ
ଲିଭାଇ ଜୀବନର ଜୁଇ— ଜୀବନର ରୁଧିର-ଝରଣେ

ଆଣିଛୁ - ଅଂଗାର ବହି - ଅଙ୍ଗାରରେ ବୋଳିଛୁ ପତାକା
ଏଇ ଦେଖ ଆମ ଦେହେ — ଆମର ଏ ବିକଟ ନୟେନ
ଥରୁଚି-ଉଆଁସ ଜ୍ୟୋତି, ନିର୍ବାପିତ ଜ୍ଞାନର ଶଳାକା
ଜନମୁଁ-ଜନମୁଁ -ଶିଶୁ- ତୋଳୁ ତୋଳୁ ସୃଜନ ଦରୋଟି
ପୋଛୁଁ ସେ ଧରଣୀର ଲୁହ —ରଚୁଁ - ବସି ଧୂଳିର କୁଟୀର
ଚୂରି ତା ଦେହ-କୋମଳ ଛାତି -ଆଣିଚୁରେ ତାହାର କୁରାଳି
ନରକର କୀଟ ମୁଖେ—ଦେବୁ ମୁଖେ—ଉପହାର
ଅଧରୁ ଜୁରି - ଜୀବନର ଗଭୀର ଶୋଣିମା
ଜନନୀ-ଛାତିରୁ କାଟି-ଜୀବନର କ୍ଷୀରାବ୍ଧ ଯୁଗଳ
କଜଳ-କାଳିମା ପଟେ - ରେଖି ଆମ ମରଣ ମହିମା
ଶିଶ୍ବୀର ପୋଡ଼ାଇ, ଏଇ ଆଣି ଅଛୁ ଆକୃତି ବିକଳ
ପଶୁଠୁ ଉପୁଜି ନର - ପାଶୋରି ସେ ପଶୁର ଶକତି
ଚଳୁଥିଲା ସୁଖେ— ଜୀବନର ଖୋଲା ରାଜ ପଥେ

ଫିଙ୍ଗିଲାନି ଜୀଅାଁଙ୍କ ସେ ଧରଣୀରେ ଦଂଶନ ବୀରତି
ତେଣୁରେ ଜୀଅାଁଙ୍କ ତାରେ ହୃଦୟର ଗହ୍ୱରେ ଗୁପତେ
ପଶୁର ପ୍ରଲାପ ବହି ମସ୍ତିଷ୍କରେ ଘେନି ତା ବିକାର
ମନୁଷ୍ୟ କଳ୍ପନାଲୀଳା- ଦଳି ଅଛୁଁ ଲୌହର ଚରଣେ
ଜୀବନର ଚଉପାଶେ- ତୋଳାଇଛୁ ପାଷାଣ ପ୍ରକାର

ଆସିଛୁ ନରକପୁରେ - ଉଷବର  ମଦିରା ସେବନେ
ଦିଅ ପେଇ ଖୋଲ ଦ୍ୱାର କର ନାହିଁ କର ନାହିଁ ଡେରି
ଆମର ଏ ତିମିର ଛେଦି  ଛୋଟ କାହିଁ ଗୋଟିଏ ଦୀପାଳି
ଆମରି ଶିବିରେ ପଶି - ବଜାଇବା ବିଜୟର ଭେରୀ
ଦେବ କାଳେ - ଆଗମନେ - ଦୁର୍ବଳତାର ସଂଦେହ ପ୍ରସାରି !...
ବିଶ୍ୱାସେ କରିଛୁ ହତ... ଲୁଚି ଲୁଚି ବଂଧୁର ପଶ୍ଚାତେ
ସଗର୍ବେ ବସାଇଛୁ ଛୁରୀ...।



## କାଳର ବୁକୁରେ...

କାଳର ବୁକୁରେ ହୃଦୟ ରୁଧିରେ ଗାର
ରଖିଗଲେ ଯେଉଁ ମରଣ- ବିଜୟୀ ଜନ-
ରଖିଗଲେ ସେକି ଜୀବନର ହାହାକାର
ରକତର ଖାଲି ରକତର ସହ ରଣ-

ପୋଛିବାକୁ ଯାଇ ମଣିଷର ଆଖି ଲୁହ
ଲାଛିଗଲେ ସେ କି ମଣିଷ ଛାତିରେ ଗୁଳି
ଲିଭାଇବା ଲାଗି ଯାତନାର ଜ୍ୱାଳା ସୁଅ
ରୋଇଗଲେ ସେ କି - ରାଗ ଅଭିମାନ ଛାଡ଼ି
ମଣିଷ ବୁଦ୍ଧିରେ - ଶାଣ ଦେଇ ଦେଇ ବଳ
ଦୁନିଆର ସବୁ - ରହସ୍ୟରେ ଖୋଲା
ଶିଖାଇଲେ ଯେଉଁ ବଂଚିବାର କଉଶଳ
ସେ କି ଖାଲି-ଏଇ ବଂଧୁକ ବାରୁଦ ଖେଳା

ଜଳ ଥଳ ନଭ   ମାପିଚୁପି ପୁଲକରେ
ମଣିଷ ଭିତରୁ   ତୁଟାଇଲେ ବ୍ୟବଧାନ,
ଖାଲି କି ବରଛା   ଗଳିବାକୁ ପଲକରେ
କଲିଜା ଫଟାଇ - କଳିବାକୁ ସୁଖ ପ୍ରାଣୀ- !



## ବନ୍ଦୀର ଜୀବନ୍ଟୁ...

ବନ୍ଦୀର ଜୀବନ୍ରୁ ବର୍ଷ ଆପଣାର ନୀରବେ ନିଶେଷି
ବଂଧେନ ବିଷାଦ ହର୍ଷେ ଚଳିଗଲା - ଗୋପନେ ପ୍ରବେଶି
କାଳର ନବର କୋଳେ କାହିଁ ଦୂରେ ଅତୀତ ଗହ୍ୱରେ
ବିଦାୟ - ବିଧୁର ବ୍ୟଥା ବନ୍ଦୀର ଅନ୍ତରେ
ମିଶିଗଲା ସେଇ ସ୍ରୋତେ   ସେଇ ଧୀର ଆକୁଳ ଉଲ୍ଲେଳେ
ହରାଇ ବିଶେଷ ରୂପ - ହରାଇ ତା ସ୍ୱାଧୀନ ଚେତନା
କାଳର ଚେତନା ପୁରେ - ରଖେ ମୃତ୍ୟୁ ରଖଇ ବୋଧନା
ଗୋଧୂଳି ଉଷାର ଭାଷା- ଲିଭିଯାଏ ଗୋଟିଏ ସୁରରେ
ଦିବସ ନିଶିର ହସ- ଲାଖିଯାଏ ଏକଇ କୂଳରେ
ଆନନ୍ଦରେ ଅଶ୍ରୁ ନାହିଁ—ବିଷାଦର ବେଦନା
ଗୋପନେ ହୁଅଇ ଏକ - ବ୍ୟବଧାନ ନାଶଇ ବନ୍ଧନ

ଚଳିଗଲା ବର୍ଷ ଆଜି ଚଳିଗଲା - ନ କରି ପ୍ରତୀକ୍ଷା
ଆଗାମୀ ନିଶେଷଲାଗି - ଉଜାଗରେ ଜଳାଇ...



## ସମୟର ଛକ ଉପରେ...

ସମୟର ଛକ ଉପରେ ଛୁଟି ଯାଇଚି କେତେ, ପଥର କଥା
ଗୋଟିଙ୍କ ପରେ ଗୋଟିଙ୍କୁ କାଟି
ସୁରର ଉପରେ ଭାସି ଯାଉଛି ନୂଆ ସୁରର ସୁଅ
ଅଦୁଆ ସୂତାର ଗଁଠି ତଳେ

ଖିଅର ସହ ମିଶି ଯାଇଛି କେତେ ଖିଅର
କରୁଣ କାନ୍ଦ ଭଜନ ହସ-ଛାଇ
ସାତ ଶତେକ ରଂଗ ଉଠିଚି ଆପେ ଝଲି
ଜୀବନଟିର ବୀକ୍ଷାଗାରୁ - ଅନାଇ ଏକ ଲୟେ
ବିଜ୍ଞାନର ତୀର୍ଥଚାରୀ କବି
ପଢୁଚି ବସି ରେଖାର ଲେଖାଗୁଡ଼ି
ଶୁଣୁଚି ହସି-ଗଲା ଆଇଲା ଗୀତିର ସୁରଖେଳା
କାଳର କୋଳେ- ତାହାର ନାହିଁ ଥାନ
ଅଲଗା ସେ ଯେ – ଦେଖାଣାହାରୀ ଖାଲି
ଭାଳୁଚି ହାୟ - କାତର ସାହସରେ
ସମୟ ଛବିର ଛାତିରେ ସେଇ ରହିବ ନିତିଛିଡ଼ା
ଦେଖିବ ଯେତେ- କାଳର କାରସାଦି
ତାହାର ଦେହେ ବାଜିବ ନାହିଁ ଢେଉ
ଚଳିବ ନାଇଁ ଚରଣ ଦୋଟି ତିଳେ
ହାୟରେ ହାୟ ଭାଳୁନ ଭାଳୁ ପଡୁଚି ସବୁ ଭାଜି
ବୀକ୍ଷାଗାର ଲେନ୍ସ ଗୋଟି - ହେଉଚି ଏଇ ଚୂନା
କକ୍ଷ ଛାଡ଼ି ଯାତ୍ରୀ କେତେ- ଏ ସମୟ ବିହାୟସେ
ନୂତନ ବ୍ୟୋମେ କରୁଚି ଖରଗତି
ସାଥିରେ ଟାଣି – ନିର୍ବୋଧ ଏ ବିଜ୍ଞାନର ଶିଶୁ
ପ୍ରୟୋଗ ଶାଳେ ଭୀରୁକେ ତିଳେ ଛପି
ସଇତାନିର ତିଆର କରେ ବୋମା
ଗରଳ ଗ୍ୟାସେ - ସଜାଇ ଧୂପ ଦାନି
ଜଣାଏ ଅରଚନା
ଗୋପନେ ଗଢ଼ି କଳାକୁ କଳା ପରେ
ମାରଣ ଶୈ୍ୟନ ଦଳ
ରେଖା ପରେ ପଡୁଚି ଆସି ରେଖା
ସୁରର ପରେ ଖେଳୁଚି ନୂଆସୁର

ଓଟାରି ସବୁ ରଖୁଚି ରୋଲେ ପଛେ
ଭାଳୁଚି ବସି ସବୁରି ସୁଖ ପଟେ
ବୋଳିବ ଖାଲି ମରଣଟିର ବୋଳ

ହାଇ ହାଇରେ
ଦୁନିଆ ଲୋକେ ହସୁଚି ଖଳଖଳ
ତାହାର ମୁଖେ ଦେଖି ସେ କଳା ଛାପ
ସମୟ ଛକେ
ଶୋଣିତ ବୋଳା ଉତ୍ତୁରେ ଧ୍ୱଜା ରାଜି
ଶାନ୍ତିଟିର ଶୁକ୍ଳ ହସେ ସରଜି ନୂଆ ତରା
କହୁଚି ହସି-
ଗୋଟିଏ ବୋଲି ଛବି
କାହିଁରେ କାହିଁ
ନାହିଁରେ ନାହିଁ
ସମୟଟିର ଆସ୍ତରଣେ ଖାଲି ଯେ ପଡ଼େ ଛକ—



## ଜୀବନର ଯାତ୍ରାପଥେ...

ଜୀବନର ଯାତ୍ରାପଥେ କିଏ ଯିବ ଆସ ଯାତ୍ରୀଦଳ
ଜଗତର ଦୁଃଖ ଘେନି, ଘେନି ବୁକେ ଯନ୍ତ୍ରଣା କେବଳ
କିଏ ଯିବ ଆସ ଆରେ ଶିରେ ବହି - ଦାରୁଣ ଲାଞ୍ଛନା
ଘୃଣାର ବିଦ୍ରୂପ ପ୍ରଣୟର ପ୍ରଣୟର ପ୍ରବଳ ବଂଚନା
ଜନନୀର ଚକ୍ଷୁ - ଅଶ୍ରୁ ଜଳେ ଗୁଂଥିରେ ମାଳିକା
ତାହାର ବିଶୀର୍ଣ୍ଣ ମୂର୍ତ୍ତି ଘେନି ସ୍ମୃତି ଦୁଃଖର ପାଳିକା

ଶିଶୁର କଂକାଳମାଳା ଦୁଇ କରେ କଂପନେ ଥରାଇ
ହୃତ୍‌ପିଣ୍ଡର ରକ୍ତ ଜବା କର୍ଣ୍ଣ ଯୁଗେ ଝୁଲାଇ ଝୁଲାଇ
ଅନାଦୃତ କବିତାର ଅନ୍ତର୍ଦାହୀ କାରୁଣ୍ୟ ବିଳାପେ
ସକଳ ତିକ୍ତତା ଘେନି - ବିହ୍ୱଳିତ ବିଷାକ୍ତ ପ୍ରଳାପେ—
ଆସ ଖରେ ଆସ କିଏ — ଯିବ ଆରେ ଆଲୋକ ସଂଧାନୀ
ମରଣର ଅସ୍ଥିମାନେ - କୋଣାରକ ରଚିବ ବଂଧାଣୀ
ନୋହେ ଆଜି ଗୃହ କଣେ ଜୀବନର ପୂଜା ଅଧିବାସ
ରମ୍ଭା ପ୍ରଣୟିନୀ କୋଳେ ପ୍ରଣୟର ବିକଳ ପ୍ରୟାସ

ଅସାଢ଼ ନିର୍ଜୀବ ପ୍ରାଣେ ନୋହେ ଆଜି ପ୍ରାଣର ବୋଧନ
ଆଜି ଯେ ଶ୍ମଶାନ-ପଥେ ଫାଟିପଡ଼େ ପ୍ରାଣର ରୋଦନ–
ତୁଚ୍ଛକରି କ୍ଷୁଦ୍ରତାର ବିରାଟର ସ୍ୱପ୍ନରେ ବିହ୍ୱଳ
ଆସ କିଏ ଯିବ ଯାତ୍ରୀ   ଘେନି ତୃଷା ଉଦ୍ଦାମ ତରଳ– !!



## ଜୀବନର ଶେଷ ଲଗ୍ନେ...

ଜୀବନର ଶେଷ ଲଗ୍ନେ, ଯାହା ସାଥେ ହେବ ମୋର ଦେଖା
ସେହି ମୋ ମରଣ ପଥେ ଜାଳି ଦେବ ପ୍ରୀତି ଦୀପ ଲେଖା
ଆଗେ ଯେତେ ଗଲେ ଆସି ଲିଭି ଗଲେ ଯାତ୍ରାର ଧୂଳିରେ
ପ୍ରଖର ଯାତ୍ରାର ବେଳେ ଜୀବନର ଉତ୍କଟ ଘୂର୍ଣ୍ଣୀରେ
ପଛେ ଯେ ଆସିବେ ସେହି ରହିଯିବ ଯାତ୍ରାର ଶେଷକାଳେ
ନୀରବ ଜୀବନ ପଥେ ହୃଦୟର ଏଇ ପାନ୍ଥ ଶାଳେ

କାନ୍ଦ ମାତା, କାନ୍ଦ ବନ୍ଧୁ, କାନ୍ଦ ଆଗୋ ବିଧୂରା ରୂପସି
ପାଂଶୁ ହେଉ ଗଣ୍ଡ ଆଗୋ, ଚକ୍ଷୁ-ଜ୍ୟୋତି ତାରକା   ତରସି -

ଚୁପ୍ କର ପ୍ରିୟତମା କହ ନାହିଁ କଥା
ନୀରବ ମୁହୂର୍ତ୍ତେ ଆଜି - ଲିଭିଯାଅ ବ୍ୟଥା

ବହୁଦୂରେ - ବହୁଦୂରେ - ପ୍ରିୟ
    ଲୋଭନୀୟ - ଅତି ରମଣୀୟ
    ଝଳି ଉଠେ ଛବିଳ ଆଲୋକ;
    ଅନାଗତ - ଦୂର ଭବିଷ୍ୟତ
    ଥରି ଉଠେ ଥିର ଅନ୍ତର୍ଲୋକ !



## ହେ କବି କାହିଁକି ଲେଖୁଚ କବିତା...

ହେ କବି କାହିଁକି ଲେଖୁଛ କବିତା
ଧରୁନ ତୀରେକ ଥୟ
ଏତେ ଲେଖି ଯଦି ଧରଣୀ ତୁମର
ରହିଲା ଲୋତକମୟ ।
କାଳ କାଳ ଧରି ଲେଖିଲି ପୁରାଣ ପୋଥି
କାହଣୀ ଗହଳେ ଆଣିଲ ସ୍ୱପନ ମୂର୍ତ୍ତି ।
ସରଗ ତୋଳିଲ ମଣିଷ ନୟନ ଆଗେ
ପାତାଳୁ କୁବେର ଆଣିଲ ବିଭବ ରାଗେ
ଇଂଗିତେ ତୁମ ଫୁଟି ପାରିଲେତ ଶତ
ଧରାର ଧୂଳିକୁ କରିଲା ପୁଲକିତ
ହେ ଚିର ତରୁଣ କବି
ଲେଖିଲ ତୂଳୀରେ କେତେ ଅଭିନବ ଛବି
ବ୍ୟଥାରେ ସଜଳ ନୟନ ଦିଓଟି ତୋଳି
ହୃଦୟ ରୁଦ୍ଧିରେ ଦଳିତ ଜୀବନ ଗୋଳି
ନିବିଡ଼ ବେଦନା କରିବାକୁ ତୁମେ ଦୂର
ନିରାଶାର ମେଳେ ରଚିଲ ଆଶାୟୀ ସୁର
ସ୍ୱାଗତ ଜଣାଇ ପ୍ରଣୟ ବିଲୋଳ ହାସେ
ସହିଲ ଯାତନା
ଗାଇଲେ ମିଳନଗୀତି
ବିରହେ ତୁମର ଫୁଟିଲା କନକପ୍ରୀତି



## ବନ୍ଦୀ ଶାଳେ ଭାଳଇ ବସି...

ବନ୍ଦୀଶାଳେ ଭାଳଇ ବସି ସହି
ମାନବଟିର ଅନ୍ତଃପୁରେ ଦୈତ୍ୟହେଲା ଜୟୀ
ନୃତ୍ୟ ଆଜି ରଚିଲା ସୁଖେ ମୃତ୍ୟୁ ବିଭୀଷିକା
ଚିତ୍କାରରେ ହଜିଲା କାହିଁ ମୁକ୍ତି ବ୍ୟାଲୋଳିକା

ଧରଣୀମୁଖେ କୃଷ୍ଣପଟ-ଆସିଲା ଏଇ ଲଇଁ
ବନ୍ଦୀଶାଳେ ଭାଳଇ ବସି ସହି-
ଚକ୍ଷୁ ତଳେ ଅଶ୍ରୁ ଝଳେ ବକ୍ଷ ଉଠେ ଥରି
ଗରଳ ସ୍ରୋତେ କଣ୍ଠତଟ ଉଠିଲା ଏ ଯେ ଭରି
ହେଲା ସତ୍ୟବାଣୀ - ମିଥ୍ୟା ତଳେ ରହି–
ବନ୍ଦୀଶାଳେ ଭାଳଇ ବସି ସହି–
ସାଧନା ରଚି ମାନବ କେତେ କଲାନି ତପଯାଗ
ମଙ୍ଗଳର ବାର୍ତ୍ତା, ରୋଳେ ପୂରାଇ ଦିଗଭାଗ
କଲ୍ୟାଣର ରୂପଟି ତାର ନିଜେଇ ଯାଏ ଦହି
ବନ୍ଦୀଶାଳେ ଭାଳଇଁ ବସି ସହି ।

ବିଦ୍ୟୁତ୍‌ର ଜୀବନ ପଥେ କରିଲା ପ୍ରୀତିସାଥୀ
ମାନିଲା ନାହିଁ ସିନ୍ଧୁଜଳ   ପ୍ରବଳ ଝଡ଼ରାତି-
ପାଷାଣଠାରୁ ବିପୁଳ ଭାର ଚଳିଲା ଯେହୁ ବହି-
ଆଜିରେ ତା'ର ଅନ୍ତଃପଥେ ଦାନବ ହେଲା ଜୟୀ–
ଶତେକ ଶତ ବଂଧନ ଯେ ବାହାରୁ ଦେଲା ଖୋଲି–
ପ୍ରକୃତିର ସ୍ୱପ୍ନ ନିଦ୍ରେ ଚଳିଲା ରେଣୁ ବୋଲି–
ଅନ୍ତରର ଗ୍ରନ୍ଥିକାଟି ପାରେନି କଥା କହି
ପୀୟୁଷଟିରେ ଗରଳ କରି ଭସ୍ମେ ଗଲା ଲଇଁ
ବନ୍ଦୀଶାଳେ ଭାଳଇ ବସି ସହି ।

ମନ୍ଦିରରେ ପୂଜିଲା ଦେବ ବିଦାୟ ଦେଲାମନୁଁ-
ତୋଳିଲା ଫୁଲ ପାଗଳସମ କଳ୍ପନାର ବନୁଁ–
ବୁଦ୍ଧଟିର ଇଙ୍ଗିତ ଗୋ ଶୂନ୍ୟେ ଗଲା ରହି
ବନ୍ଦୀଶାଳେ ଭାଳଇ ବସି ସହି ।
ବୁଦ୍ଧି ତା'ର ଖେଳାଇ କେତେ ବିଚାର କଲାନିତି–
ପୁରୁଣା ଚୁରି ଗଢ଼ିଲା କେତେ ନୂତନତାର ରୀତି
ଫିଟାଇଦେଲା ଗହନବନେ କେତେ ସେ ଖୋଲାବାଟ–
ତିମିର ମେଳେ ସୂରଜୁ ଦେଲା ସ୍ୱପନଗୋଲା ନାଟ-
ଗୋଟିଏ ପଥ ବନ୍ଦ ଗଲା ରହି–
ଖ୍ରୀଷ୍ଟ କେତେ ଗାନ୍ଧୀ କେତେ - ଡାକିଲେ ଖାଲି
''(ଖୋଲରେ) ଖୋଲରେ ମନ'' କହି–



## ମୁଗ୍ଧ କବି...

ମୁଗ୍ଧ କବି ଗାଏ ତୁମ ଜୟ
ହେ ମାନବ ବିଶ୍ୱର ବିସ୍ମୟ
ସକଳ ବୈଚିତ୍ର୍ୟ ଖେଳେ ହେ ବିଚିତ୍ର ତୁମରି ମୂରତି
ଏ ବିଶ୍ୱ ଦେଉଳେ ନିତି ଲଭେ ପୂଜା ଲଭଇ ଆରତି—
କେତେ ଶତ ପୂଜାରୀର ବ୍ୟାକୁଳ ବାସନା
ରଚଇ କଳ୍ପନା
ଯୁଗେ ଯୁଗେ କେତେ ନିଶି ଜାଗି
ତୁମ ଲାଗି
ପରାଣର ପ୍ରୀତିପୂରେ ସାଜି ତୁମ ସ୍ୱାଗତ ଅର୍ଚ୍ଚନା—

ମାଧବୀ ନିଶୀଥେ ଶୁଣି ନୂପୂର ନିକ୍ୱଣ
ଅନାଏ ଚକିତେ
ଅତି ଆଚମ୍ବିତେ-
ତେଜିଯାଏ ଆପଣାର ସ୍ୱର୍ଣ୍ଣ ସିଂହାସନ—
ବିଳାସ ବିଲୋଳ କାମେ କମଳ ଶୟନ
ବନାନୀର ଦୁଇ ଛାୟାପଥେ
ମିଳନ ଉଷତେ
ଆବେଗ ଶୋଷିତ ମନେ
ଭୟହୁଏ ସମାଧିର ପାଶେ....
ଅଶେଷ କାଳର ଯହିଁ ନିବିଡ଼ ମରଣ
ଥରେ ଅଟହାସେ
ନୟନୁ ଝରେ ତା ଅଶ୍ରୁ ବୈଶାଖ ଝଟିକା
ତାପିତ ତରଳବାରି କରି ବରଷଣ
ସନ୍ତାପର ଲେଖେ ବି ଲିପିକା
ଲୋଇଁ ନିଏ ଶିର

ଅସ୍ଫୁଟ ପକ୍ଷୀର ଭାଷେ କହେ ବିଳପିରେ
''ତୁମ ଲାଗି ଆଗୋ ପ୍ରିୟତମା
ତୋଳିବି ମୁଁ ମଣିର ମନ୍ଦିର
ସକଳ ଶିଳ୍ପୀର ପ୍ରାଣୁ ଆହରି ମୁଁ ସୁଧା
ତୁମ ଲାଗି ପ୍ରିୟା
ପାଷାଣୀ ଧରଣୀ ଆଗୋ ହେବ କମନୀୟ
ନୀରବେ ନା ନୁପୂର ଶବଦ

ସମ୍ରାଟର ଶାନ୍ତିର ସ୍ୱପନେ-ଅବିରଳ ଗ୍ରାସେ
ଯାହାଲାଗି ମର୍ମର ମହଲ
ହିମାଚଳେ କରେ
କୋଟିଶିଳା କଠିଣ ଭରରେ
ଜୀବନର ଚଳିଲା ବିନାଶ—
କେତେ କଥା ଆସେ ମନେ
କେତେ ସ୍ୱପ୍ନ ଖେଳଇ ନୟନେ..
କେତେଫୁଲ ଅକାରଣେ
ଲୋଟିଯାଏ ତରୁଣ ଅୟନେ
ସବୁକଥା ହୁଏ ବି କହି
ସବୁସ୍ୱପ୍ନ ହୁଏବି ସମ୍ଭବ
ପଥ ମଧ୍ୟୁଁ ସବୁଫୁଲ ଲଇଁ
ସାଇତେ କି କେହି ବୁକୁତଳେ

ଏଇ କଂକାଳ ତଳେ
ଜାଣୁକିରେ କବି କିବା ସଉରଭେ ଝରେ
ଏଇ ଯେ ତରୁଣୀ ଚଳେ ରାଜପଥେ
ମଳିନ ଛିନ୍ନ ବାସେ
ଏଇ କଂକାଳ ତଳେ
ଜାଣୁକିରେ କବି କିବା ସଉରଭ ଝରେ ।

ଗହଳ ତୋଟା ଛାଇତଳେ ଦିନେ
ଲାଜ ଲାଜ ଆଖି ତୋଳି
ଅଜଣା ସହିକି ରୂପର ପାଖୁଡ଼ା
ସମ୍ମୁଖେ ଧଇଲା ଖୋଲି:—

ହେ ମୋର ମାନସୀ ଏଇ ମୋର ମର୍ମକଥା
ତୋ ପାଶେ ସଜନୀ ସାଜେ ନାହିଁ ମୁଖରତା
ଛପି ଛପି ଆସି ପଛେ ପଟେ ହେଉ ଠିଆ
ଅଧିର ଆଦେଶେ ସରସ କରୁ ଏହିଆ
ପରଶିଲେ ତନୁ ପାଶୋରା ନିମେଷେ ପ୍ରିୟା
ଲଉଁ ଲାଜକୁଳି ଲତା

କେତେ ଲିପି ତୁଇ ଲେଖିଯାଉ ମନ ପଟେ
ଆକୁଳ ନିଶୀଥେ ଜୀବନ ତଟିନୀ ତଟେ
ପିବ ବଧୂ ଯେବେ ସ୍ୱପନ ନିଳୟେ ରଟେ
ପଢ଼େ ଖାଲି ନୀରବତା
ହେ ମୋର ମାନସୀ ତୋର ସେ ମର୍ମକଥା

ଶୋଣିତେ ପଖଳା ବେଶ ବହିକେବେ ଆସୁ
ଖୋଲାଅ ଶିଶିର ଥରେ ତୋନୟନ ଆସୁ
ସଲୀଳ ଅଳି ଯେ ରୂପ ତୋର ପରକାଶୁ
ସରଜୁ ଅଖିଳ ବ୍ୟଥା
ହେ ମୋର ପ୍ରେୟସୀ ମୋହରି ମର୍ମକଥା

ଯମୁନା ପୁଳିନେ ରାସ-କୌତୁକଲୀଳା
ଉଛୁଳାଉ କେତେ ଆଗୋ କୌତୁକଶୀଳା
ତୋ ଲାଗି ସବୁଜ ଉଷର ଧରଣୀ ଶୀଳା
ହେ ମୋର ପ୍ରଣୟରତା
ପୁଲକେ ବିଳାସ ମୋର ପୁରେ ମର୍ମକଥା !

ଅଟ୍ଟହାସେ ତୁ ଛୁଟିଆସୁ ବଇଶାଖୀ
ଝଡ଼ର ଆବେଗେ ଦୋହଲାଇ ଦେଉ ଡାକି
ଜଳେ ତୋର ତାପେ ଶ୍ୟାମଳ ଲତିକା ଶଶୀ
ନୋହୁତୁ ବେଦନାହତା
ନିର୍ମମ ତୁଇ ହେ ମୋର ମରମ କଥା

ଶାଣିତ ତୀରଟି ଛାତିତଳେ ଯେବେ ଚଳେ
ଚରଣ ସଜନି ତେବେ ତୋର ନାହିଁ ଟଳେ
ଛୋଟ ଅଭିମାନେ କେସନେ ଗୋ ଅବିରତେ
ଓଦା ହୁଏ ଆଖିପତା
ବିସ୍ମୟକୋଳେ ଖେଳୁ ତୁ ମର୍ମକଥା..
ଶେଫାଳିର ସମ ଶୋଣିମା-ପରଶ ବହି
ହାସରୋଳ ମୁଖେ ସରଶେ ପଡୁ ତୁ ଲଇଁ
ଶରସେଭାଳି ଗଲେ ସେହି କଥା କହି
ଅପମାନେ ପୋତୁ ମଥା
ସୁନ୍ଦରିକା ମୋର ବୁଝେ ତୋ ମରମ କଥା ।



## ମହିଷାସୁର....

ମହିଷାସୁରର ମହାତ୍ମ୍ୟ ଯୋଗୁଁ ତୁମର ମର୍ଯ୍ୟଦା
ଏଣୁ ଆଜି ରେଡ଼ିଓର ବାର୍ତ୍ତା ତୁମେ
ଖବରକାଗଜର ଚିତ୍ର
ମୃଣ୍ମୟୀ କି ଚିନ୍ମୟୀ ନୁହଁ
କେତେ ଆଶା-ବାଷ୍ପରେ ବିସ୍ଫାରିତ ବେଲୁନ୍
ପଣ୍ୟ ଜୀବନର ବିଜ୍ଞପ୍ତି ତୁମେ
ମାଆ:—
ନିରଭ୍ର ନେତ୍ରାକାଶରେ ଶରତର ନିଷ୍ପ୍ରଭ ନୀଳିମାରେ
ତିତିକ୍ଷାରେ ତାରକସିର ପ୍ଲାଷ୍ଟରିଭୂତ ବୁଭୁକ୍ଷା
ରାସ୍ତା କଡ଼ରେ କାରବାରର ଉଚ୍ଛିଷ୍ଟରେ
ଅର୍ଚ୍ଚିତା ତୁମକୁ
ନମସ୍କାର କରେ ଆଜି
ସ୍ୱପ୍ନର ମଥାନ ଉପରୁ ଖସି ଭସ୍ମ ବୋଳା ଦେହରେ
କାଳର କୁଷ୍ମାଣ୍ଡ ମୁଁ ନମସ୍କାର କରେ
ନିଃରକ୍ତ ହୃଦୟର ନିର୍ବାକ ଆତୁରତାରେ
କାରୁଣ୍ୟର ଭୋଜ୍ୟ ମୁଁ ବଳି

/ ୩୫୨ /

ସ୍ନେହର ଯୂପ କାଠିରେ ମୁଁ
ଦୂରରେ ଜେଟ୍ ପ୍ଲେନ୍‌ର ଯାତାୟତକରେ—
ପ୍ଲାଷ୍ଟିକ୍ ପ୍ରୀତି
ଲକ୍ଷ ପଦ୍ମରେ ସଜ୍ଜିତ ଯନ୍ତ୍ରଯାନରେ ବସି
ଅଗ୍ନିର ଧଉଳି ପାଖରେ
ସ୍ୱୈରାଚାରର କଆର ସେତୁ ରଚନା କରି
ବୁଦ୍ଧର କରୁଣାରେ ଆର୍ଦ୍ର ମୁଁ ଧର୍ମାଶୋକ
ସେ କେଉଁ ନୃପକେଶରୀ କଟକରେ

ଉତ୍କଳର କେଶରୀ ମୁଁ
ଗାନ୍ଧିର ରକ୍ତ ଛିଟାରେ
ବିଚିତ୍ର ମୋ ଦେହ
ଅହିଂସା ହିଂସାରେ ଦ୍ୱୈତ୍ୟର ଆତ୍ମା ମୁଁ
ନମସ୍କାର କରେ
କୋରିଆର କୋହରେ ବିଷାକ୍ତ ଜୀବାଣୁର ସମାରୋହ
ଦସ୍ୟୁର ଦୌଲତ ଖାନା ଆଉ ଦାସତ୍ୱର ପରବାରରେ
ପେଣ୍ଟାଗୋନର ପଞ୍ଚମକାରରେ ପ୍ରାଣର ପ୍ରପଞ୍ଚର ପୂଜା
କାକୁସ୍ଥ କ୍ରେମ୍‌ଲିନ୍‌ରେ ଶକ୍ତିର ଆପତ୍ତି
ମାୟା ନୁହେଁ, ମାୟା ନୁହେଁ ତୁମେ
ବାସ୍ତବତାର ବୈରାଗ୍ୟରେ ତୁମେ
ନମସ୍କାର କରେ ତୁମକୁ—
ନମସ୍କାର କରେ ଝଞ୍ଜାର ଜୟବାଣରେ
କ୍ଲିଷ୍ଟର ସୋଷବତାର ନିରୂପଦ୍ରୁତ ହତାଶାରେ
ନିରନ୍ନ ଦିବସରେ ଶେଷରେ ନିଷ୍କାମ ମନର ସକାମ ସୃଷ୍ଟିତ୍ତ୍ୱଃ
ନିଅନ ଆଲୋକରେ କରାଳ
ରୂପିନୀ ମରାଳିର ମାୟା
ନମସ୍କାର କରେ ଆଜି
କୋଟି କୋଟି ଶକ୍ତିରେ ସରଞ୍ଜିତା ଦେବୀ
ତୁମର ହାସ୍ୟରେ କି ଆଣବିକ ମୃତ୍ୟୁ ସତେ
ତୁମର ନୟନରେ ନାପାମ୍‌ର ପ୍ରଶ୍ନ
ଉନ୍ନତ ଉରଜରେ ଶିଶୁର ଅନ୍ତ୍ର ତୁମର ହାର

କିମ୍ଭୂତା ତୁମେ ଆଜି
ତୁମକୁ ନମସ୍କାର କରେ..
ମଧ୍ୟବିତ୍ତ ରିକ୍ତତାରେ ପୂର୍ଣ୍ଣ ଏ ରୁଗ୍‌ଣା ନାରୀ ମୋର ପ୍ରିୟା
ପୀତାଭ ତା ଦୃଷ୍ଟି
କୃଷ୍ଣାୟିତ କପୋଳରେ
ଜଣାଏ ଆର୍ତ୍ତି ତୁମକୁ
ନମସ୍କାର କରି ନମସ୍କାର !



## ଏଇ ଯୁଗରେ...

ଏଇ ଯୁଗରେ ମରିବି ପଛେ ଆକାଶପଥେ ଉଡ଼ି
ଏଇ ଯୁଗରେ ହଜିବି ପଛେ ଅତଳ ଜଳେ ବୁଡ଼ି
ଏଇ ଯୁଗରେ ବିଜୁଳି ଛୁଏଁ ହାରିବି ପଛେ ପ୍ରାଣ
ଗାଇବି ନାହିଁ କେବେ ବି ଆଉ ଗଲାର ଜୟଗାନ

ଏଇ ଯୁଗରେ ଗଳାରେ ବସି ଧନିକ ଦାସ ଡୋରି
ଏଇ ଯୁଗର କାଳର କୋଳେ ଖେଳିବି ଲହୁ ହୋରି
କଳରେ ପଛେ କଟିବ ପାଦ ତୁଟିବ ପଛେ ଶିର
ଗାଇବି ନାହିଁ ଗୀତଟି କେବେ ହଜିଲା ଦିନଟିର

ପଖାଳ ଶାଗେ ପୂରାଇ ପେଟ ଭଜିବି ନାହିଁ-ହରି
ବାଟେ ଅବାଟେ ପଶିବିନାହିଁ ତାକୁଡ଼ି ଲୁହାଧରି
ବୁଦ୍ଧିଘରେ ପକାଇ ତାଲା ପଢ଼ିବି ନାହିଁ ଗୀତା
ବୃନ୍ଦାବତୀ ତିଳକ ପରେ ଓ୍ୱାର୍ଦ୍ଧା-ଗାନ୍ଧୀଚିତା
ଶିରାଳ ମୋର କପାଳଟାରେ ମାରି
ବେଡ଼ାଏ ଯେବେ ମାରିବେ ହାଇ
ମାରିବି ନାହିଁ ତାଳି—

ଦିଅଁର ପାଖେ ଅଧିଆ ପଡ଼ି ଗାନ୍ଧି ଝୁଲି ଧରି
ମଣିଷ ବେକ ମୋଡ଼ିବା ଲାଗି ମାମଲା ମୁଣି ଭରି
କୁଳର ବୋହୂ ମହତ ବିକି ହେବିନି ମହାପାତ୍ର
ଚୁଲିକି ଯାଉ ଜନ୍ମଭୂମି ଥାଉରେ ଚିରରାତ୍ର
ଚୁଲିକି ଯାଉ ଜନ୍ମଭୂଇଁ ଥାଉ ଚିରରାତ୍ର ।

ସୃଷ୍ଟି ସରୁ ଓଳିଗି କରି ହେବିନି ପଛେ ମନ୍ତ୍ରୀ
ସାଜିବି ନାହିଁ କାହାରି ଚେଲା କପଟୀ ଷଡ଼ଯନ୍ତ୍ରୀ
ଭାଗ୍ୟ କୋଟି ପୂରିବା ଲାଗି ହେବିନି ନିତ୍ୟାନନ୍ଦ
ମନ୍ତ୍ରୀହାଏ -ବିଲାତି ଦେଇ ତୋଳିରେ ଦେଶିଛନ୍ଦ

ନ ହେବି ପଛେ ମିଶ୍ର ନେତା- ସବଳ ସାଥେ ମିଶି
ମାର୍କଣ୍ଡେୟ ପୁରାଣ ଶୁଣି ଜାଣଇ ଦଶଦିଶି
ହିଂସା ସବୁ ଗୋପନେ କରି ଅହିଂସା ଗୀତ ରୋଳେ
ଅଟହାସେ ନହସି ଛପିବି ଭୟ ଖୋଳେ
ପ୍ରଜାର ଲହୁ ସରିତେ ଆଉ ପାରିବିନାହିଁ ଲିପି
ହାତରେ ଧରି କଂଗ୍ରେସର ବାନା—
ଶତ୍ରୁ ହେଉ ଦେଶଟା ପଛେ ନ ମିଳୁ ପଛେ ଦାନା ।

ବିଜୁଳି ଦୀପ ହେଲିରେ ମୁଁ ହିଁ ପୁଲାଙ୍ଗ ବତୀଜାଳି
ଗହ୍ୱରି ଘରେ ପରକୀୟାର ପ୍ରଣୟ ରସ ଢାଳି
ଗମିବି ନାହିଁ ତୃଷାର ପଛେ ଚଳିବି ଖୋଲା ପଥେ
ବସାଇ ମଠ ହଟ ଚମଟ ଲଗାଇ ଅବିରତେ
କରିବି ନାହିଁ ଲୀଳା
ହେବିରେ ପଛେ ମରଣ ମୁଖୀ
ଜାତିର ସ୍ମୃତିଶିଳା ।
ମୁକ୍ତିକାମେ ପକାଇ ହୁରି—ମୁକ୍ତି ପଥ ରୋଧି
ଏକକ ଧାରେ ଫଟାଇ ମୁଖେ—ଶକ୍ତି ଘର ସୋଧି
ଶ୍ମଶ୍ରୁ ତଳେ ଚାହା ମୁଁ ଚୁଷି ରଚନା ଜଳେ ଭାସି
ପାରିବି ନାହିଁ ନିଜର ହାତେ ନିଜକୁ ଦେଇ ଫାଶି ।

ସହିବି ପଛେ ଏଇ ଯୁଗର ସକଳ ଦାଉଘାତ
ଏଇ ଯୁଗର୍ ବକ୍ଷପଥେ ମୋହର୍ଚ୍ଚି ଯାତାୟିତ
ଏଇ ଯୁଗକୁ ଗଢ଼ିବି ମୁଁ ହି ନବୀନ ନବ ରୂପେ
ପାରିବି ନାହିଁ ଫେରିଲେ ଲବେ – ଅତୀତ କୋଳକୂପେ
ବାବାଜି ସାଜି ବୁଲିବି ନାହିଁ ଖେଳିବି ନାହିଁ ଜୁଆ
ହେବିନି ଭାଇ କାହାରି ପୋଷା ଛୁଆ
ଧୂଳିର ସାଥେ ମିଶି
କଂକାଳର କାହାଣୀ ରାଗେ ଭରିବି ଦଶଦିଶି ।
ଏଇ ଯୁଗର ମୂଲିଆ ସହ ଚଳିବି ନାଚି ସୁଖେ
ଜୀବନ ଚୂଲ୍ଲୀ ଅଚଳ ଝର ଫିଟାଇ କୋଟି ମୁଖେ–
କୋଇଲା ଖଣି କପଡ଼ା କୁତ-ହାତୁଡ଼ି ହାତେ ବହି
ଏଇ ଯୁଗରେ ଜୀବନ କଥା ଚଳିବ ମୁଖେ କହି
ଏଇ ଯୁଗର ଟ୍ରାକ୍ଟରରେ କରିବି ନିତି ହଳ
ଏଇ ଯୁଗର ଫାକ୍ଟରୀରେ ସୃଜିବି ନୂଆ କଳ
ପ୍ରକୃତିର ଦାସ ମୁଁ ନୁହେଁ ପ୍ରକୃତିର ରାଜା
ପ୍ରକୃତିର ଛାତିରେ ନାଚି ବଜାଇ ଯିବି ବାଜା
ଶୁଖାଇ ଆଖି ନୀର
ପୂରାଇ ଯିବି କୋଟିଏ ପ୍ରାଣେ ଜୀବନମୟୀ ଗିର ।

ମୂଲିଆ ସାଥେ ସଢ଼ିବି ପଛେ ମରିବି ଅନଶନେ
ତାହାରି ଲାଗି ଲଢ଼ିବି ପଛେ ଆକାଶ ଜଳ ବନେ
ଆଉଁସି ଦାଢ଼ି ଭଣ୍ଡ ଦଳ କାଢ଼ିଲେ ବଚନିକା
ଦର୍ଶନର ଧ୍ୱଂସ ଆଳେ ସରଜି ପ୍ରହେଳିକା
ବୁଦ୍ଧିରେ ମୋ ବଜ୍ରବିଧା ମାରି
ମୂଲିଆ କୁଳ ଶତ୍ରୁଦଳେ ଦେବିରେ ଆଜି ସାରି ।



# ସମତା

ଏଇ ଶୁଣ ଶୁଣ ନିଶୀଥର ସମୀରେ
ସକାଳର ସୁରତୋଳେ ପୁରଯାୟୀ ପଥିକ
ଏଇ ଶୁଣ ଶହୀଦର ପଦାଘାତେ ଅଧିରେ
ସ୍ୱପନର କୂଳେ କୂଳେ ଲୁଚେ-ଆଶା ଅଭୀକ ।

କପାଳରୁ ପୋଛୁ ଝାଳ ଶୁଣ ଆରେ ସଇନି
ଲିଭି ନାହିଁ ବିଚଳିତ ଜନ-ମନ-ଦଇନି,
ଜୀବନର ଚୂଳେ ଚୂଳେ ପତାକା ଯେ ଶୋହିନି
ମରିନାହିଁ ବଣିକର ମଥା କିଣା ବଣିକ ।

ପୁଛୁନାହିଁ କିଏ ତୁହି କାହିଁ ଯାଉ ଆଜିରେ
ସମ୍ମୁଖେ ସ୍ୱପନ ତୋ ପଡ଼େ ନିତି ଭାଜିରେ
ଆଲୋକ ସରିତେ ଦେଶ ମୁହଁ ନାହିଁ ମାଜିରେ
ଆପଣାର ମୋହମାୟା ପଣ ସବୁ ଅଲିକ ।

ଫୁଲମାଳା ହାତେ ତୋର ପୁରବାଳା ଆସିନି
ଆସିବ ବା କାହୁଁ ତାକୁ ଦୁଃଖ କି ନାଶିନି
ସମର-ଆହବେ ଜିଣି ପ୍ରିୟା ପ୍ରୀତିହାସିନୀ
ଅତଳ ସାଗର ତଳୁ ଆଣ ପ୍ରୀତିମାଣିକ ।
ଭୟ ନାହିଁ ଭୟ ନାହିଁ ନୋହୁଁ ତୁ ତ ଏକାରେ
ପଣ୍ଡାତେ ଇତିହାସେ ଆଣେ ନୂଆ ରେଖାରେ
ଗଢ଼ି ଚାଲ ଜୀବନର ବୃଥା-ରୀତି ଲେଖାରେ
ଗଢ଼ିଯାଅ ସମତାର-ଯୁଗ ଚିର କାଳିକ ।



# ଏଇ ତ ଆମର ମୁକ୍ତିଯୁଦ୍ଧ

ଏଇତା ରକ୍ତ ଧ୍ୱଜା
ଧ୍ୱଂସ ହେବରେ ଜୀବନୁ ଆମର ଚିର କଳଙ୍କ ଲଜ୍ଜା
ଚାଲରେ ଚାଲରେ ରକ୍ତବାହିନୀ ସର୍ବହରାର ଗର୍ବେ
ଝନ୍ ଝନ୍ ଉଠୁ କଙ୍କାଳ ନାଚୁ କ୍ଷୁଧାର ବହ୍ନି ଗର୍ଭେ
ମୁକ୍ତି ରେ ମତ୍ତ ତୁ'ରେ
ଧସେଇ ପଶରେ ନାତ୍ସୀ ପୁରେ
ଧ୍ୱଂସ କରିବେ ଫାସିଷ୍ଟ କୁଳେ କିମ୍ବା ଅରିର ମଜ୍ଜା । ୧ ।
ହଟାରେ ହଟାରେ ହିଟ୍‌ଲରେ ତୁହିଁ
ନିପାତ କରରେ ତୋଜା
ଓହ୍ଲାଅ ଓହ୍ଲାଅ ଶିରରୁ ତୋହର ଚିର ଦାସତ୍ୱ ବୋଝ
ଜୁଲିମ୍ ଯେତେ ଜାଲିମ୍ ଯେତେ
ଚଳାଏ ନାଜିର ଜୀବନ କ୍ଷେତେ
ଚୂର୍ଣ୍ଣ କରି ତା ଦର୍ପେ ସେତେ
ରଚ ତା ମୃତ୍ୟୁ ଶଯ୍ୟା । ୨ ।
ଚମକ ସେନା ଚମକ ସେନା ଚମକି ରଣେ ଗଲେ
ବଜ୍ରରବେ କରରେ ଦାବୀ ଜାତୀୟ ସରକାର
ଐକ୍ୟ ଗାନେ ଐକ୍ୟ ଗାନେ
ହିନ୍ଦୁ ସହିତ ମୁସଲମାନେ
ମିଳାଅ ସାଥିରେ ମୁକ୍ତପ୍ରାଣେ
କର ସ୍ୱାତନ୍ତ୍ୟ - ସଜ୍ଜା । ୩।
ଲାଇନ୍ ତାଡ଼ି ଟ୍ରେନ୍ ଚୂରି ପାଇବୁ କିରେ ମୁକ୍ତି
ଦସ୍ୟୁ ଜାପାନୀ ଦେବେରେ ଧୋକା ଜାଳିଏ ଭୀରୁ ଯୁକ୍ତି
ମାଳୟ ଗ୍ରାସି ବର୍ମା ଗ୍ରାସି
ଚାଇନା ଯେବେ ଦେଲାରେ ଫାଶି
ସେହି କି ଦେବ ମୁକ୍ତି ଆସି ଦେବରେ ବେଡ଼ି ସଜା । ୪ ।

ଷ୍ଟାଲିନ୍ ଗଢ଼େ ଭାଙ୍ଗୁଚି ନାଜୀ ହଜୁଚି ତାର ହଂସା
ମୁଷ୍ଟିମାଡ଼େ ଜାପାନୀ ପ୍ରାଣ-ପଞ୍ଜୁର ପ୍ରେତ ଖସ୍ସା
ଶହିଦ ହୁଅ ଶହିଦ ହୁଅ
ଶୀକର କରି ନାତ୍‌ସୀ ବାଦ
ଶିରରେ ବହି ସାମ୍ୟ ତାଜ
ତୋଳରେ ସାମ୍ୟ ଧ୍ୱଜା । ୫ ।

ମରଣ ଦେଶେ ଆଣୁଚିଯିଏ ମରଣ ତାର ଆଣ
ମଣିଷ ଲାଗି-ଦଳିତ-ଲାଗି-
ଜନ୍ମ ଭୂଇଁ ମାଟିର ଲାଗି
ତୁଚ୍ଛ କରି ପ୍ରାଣ ।

ହୋସ୍ ରଖି ଜୋସ୍ ଧରି
ଗୁପ୍ତ ଅରି କବ୍‌ଜା କରି
କମ୍ୟୁନିଷ୍ଟ ଚାଲିରେ ଦଳି ଡିକ୍ଟେଟର-ରାଜା । ୭ ।



## ରକ୍ତ ଘୋଟକ

ରକ୍ତ ଘୋଟକ ଖୁରାବାଜେ ଠକ୍ ଠକ୍
କାଲିର ଶୁଷ୍କା ଜୀର୍ଣ୍ଣ ଧରଣୀ କୂଳେ
ଚକ୍ରବାଳରୁ ଲିଭଇ ମୃତ୍ୟୁ-ଛାୟା
ଫେଣ ଛୁଟେ ଏଇ କ୍ରୁଦ୍ଧ ମଣିଷ ମୁଖେ ।
ରାତ୍ରିର ଶେଷ କୃଷ୍ଣ ପରଦା ତଳେ
ମାଂସ ଭୋଜୀର ତୃପ୍ତିର ଗଉରବ
ଅଶ୍ୱର ହ୍ରେଷା ମଲୁପ୍ତ ଏ ରୁଚି ଆଜି
ବିଗଳିତ ଶବେ ମକ୍ଷିକା ମଉଛବ
ଲୋହିତ ଅଶ୍ୱ ଦେହର ଘର୍ମ ସ୍ରୋତେ
ନବ ଜୀବନର ପଙ୍କିଳ ପଟୁ ପଡ଼େ;
ମଣିଷ ମନର ଆଦିମ ସୃଷ୍ଟିକଥା
ସବୁଜ ଶସ୍ୟ ସପନରେ ଏଇ ବଢ଼େ

ନିଃଶ୍ୱାସ ତାର ଅଗ୍ନି ଝଟିକା ସମ
ଦୁଃଖ ତୁଷାର ସହସା ତରଳ କରି
ଶୂନ୍ୟ ନଭରୁ ଆଶା-ଅଙ୍କୁର ବୁଣେ
ଜରତୀ କଣ୍ଠେ ପ୍ରଳୟ ବାର୍ତ୍ତା ଭରି
କେତେ ପ୍ରତାପର ଚୈତକ ସେ କି ସତେ
ବନ୍ଦୀ ବୀରର ମୁକ୍ତ କାମନା ଗୀତି
କେତେ କକେଶସ୍ ଶିବିର ଆତ୍ମା-ସଖା
ପୃଥ୍ୱୀ ରାଜର ଶ୍ରେଷ୍ଠ ପ୍ରଣୟ ରୀତି
ରକ୍ତ-ଘୋଟକ ଖୁରା ବାଜେ ଠକ୍ ଠକ୍
କଂକାଳେ ଆମ ଜାଗେ ଅଦ୍‌ଭୁତ ହସ
ସିଂଧୁ ଶବଦେ ମୃତ କୋଣାର୍କ ଅବା
ବହି ଆସେ ନିତି ନୂଆ କ୍ରେମଲିନ୍ ଯଶ।



## କଳ୍ପନା ମୋହର...

କଳ୍ପନା ମୋହର ବଡ଼ ବଡ଼ ଆଗୋ ତୁମଠୁ ପ୍ରେୟସି
ବିପୁଳ ରସର ଲୀଳା ଚଳେ ତହିଁ ନିୟତି ଉଚ୍ଛ୍ୱସି
ସିମିତ ପରିଧିଟିରେ ରୁଦ୍ଧ ନୁହେଁ ପ୍ରଣୟ ମୋହରି
ବିଶାଳ ବିସ୍ତୃତି ପରେ ସୁବିରାଟେ ଚଳାଇ ଫୁଙ୍କାରି
କ୍ଷୁଦ୍ରେ ସେ ଖଣ୍ଡତା ଦିଏ ପ୍ରେମ ଦିଏ ଅବସାଦ
ଜୀବନ ପତ୍ରେ ବି କେବେ ପଡ଼େ ତାର ପବିତ୍ର ପ୍ରସାଦ
ଅସୀମ ହୃଦୟୋଚ୍ଛ୍ୱାସେ ପ୍ରଣୟ ପ୍ରଶାନ୍ତ ପ୍ରକାଶ
ପ୍ରତ୍ୟୟ ଆଣଇ ଚିର—ଆଣେ ପ୍ରାଣେ ପ୍ରଖର ବିଶ୍ୱାସ
ତୁମେ ତ କରିବ ନିଃସ୍ୱ ! ବିଶ୍ୱପାଶେ ମୋଧନ ଅତୁଳ
ଅକୁଣ୍ଠ ହୃଦୟେ ତେଣୁ ସର୍ବସ୍ୱରେ କରିଦିଏ ଠୁଳ
ବିଶ୍ୱର କଳ୍ପନା ପାଶେ-ଢାଳିଦିଏ ଶୋଣିତ ପଖାଳୀ
ବିଶ୍ୱର ବଂଚିତ ପାଇଁ—ଦିଏ-ପ୍ରେମ-ହୃଦୟ ଉଝାଳି—
ଦିଏ ପ୍ରାଣୁ ଉତ୍ତାପ ମଧୁର ଉଷ୍ମକରେ ଶୀତଳ ଅନ୍ତର
ତେଣୁ ମୋର ପ୍ରଣୟ ରାଗିଣୀ ମୁଖରିବ ଦେଖା
ଜୀବନେ ଦେଇଛ ଘୃଣା—ଦେଇଅଛ ରୋଷ ଅଭିମାନ

ଈର୍ଷାର ଆଘାତେ କେବେ–ରୂପିଛ ମୋ ପ୍ରେମର ଧୂଆପି-
ତଥାପି କରିଲି ପ୍ରେମ-କଳ୍ପନାରେ ଦେଲି ମୁଁ ଜୀବନ
ସକଳେ କ୍ଷୁଦ୍ରତାଗାରେ-ଦେଖିନାହିଁ - ବିଶାଳ ମମତା–
ସେ ମୋର ଭିଷଣ ଭ୍ରମ-ଆଜି ତାରେ କରୁଚି ସଂସ୍କାର
କ୍ଷମ ଗୋ ତୁମରି ପ୍ରେମେ–କରନାହିଁ ଆଉ ଅବିଚାର।



## ହେ ଅଭିଜାତର କବି...

ହେ ଅଭିଜାତର କବି– ତମେ ମୋତେ ଦେଇଚ ଜୀବନ
ତୁମରି ସ୍ନେହର କୋଳେ ଫୁଟିଛି ମୋ ସୁନାର ସ୍ୱପନ
ଉଷାର ପାଟଳ ସମ ପ୍ରାଣପଟେ ତିମିର ବିତରି–
ତୁମର ଅପୂର୍ଣ୍ଣ ପ୍ରେମ ପ୍ରାଣେ ମୋର ଚଳିବ ବିଚାରି–
ତୁମରି ଆବେଶ ବ୍ୟଥା–ରୂପାୟକ ଶୋଭନ ଶରଣ
ତୁମର ଶୋକର ଶ୍ଳୋକ ଭାସିଚି ମୋ ବନ୍ୟାର ତରଣୀ
ବିନିଦ୍ର ରଜନୀ ଯାପି ତୁମ ଗୀତ କବିତା ଚୟନେ
ହସିଚି ବିସ୍ମୟ ମୁଖେ– ସୂକ୍ଷ୍ମ ତୁମ ଶିଳ୍ପିରମ୍ଭକେ
ମୋ ସ୍ୱପ୍ନ ପ୍ରତିମା ସିନା–ଲଭିଅଛି ମୋ ପ୍ରୀତି ଅବିଳ
ଦୁର୍ଯୋଗ ଆଣିନି ଆଜି ଆଣିଚି ସେ ପରମ ସୁଯୋଗ
ଆକାଶ ଆକାଶେ ଏଣୁ ଜୀବନର ବୀଜେ ଅନୁଯୋଗେ
ପ୍ରଳୟ ପବନେ ଏଣୁ ଛୁଟି ଚଳେ ବାଷ୍ପର ଗରଳ
ସୁଖର ଜୀବନ ଏ ଯେ ମଳୟର ପରଶ ସ୍ୱପନ ବିରଳ
ବିରଳ ଅନଳ ଶିଖା–ଉଠେ ଆଜି ଧରାର ଭରସେ
ଆଲୋକେ ଉଜଳିପଥ ରଶ୍ମିତାପେ ଝଳାଇମାସେ
କି ଭୟ କହ ଗୋ ଭୀରୁ ଯାଅ କିମ୍ବା ଦୂରେ ଅଣସରି
ଅତୀତର ଶେଷସୁରେ–ଅବସାଦେ ବିଷାଦେ ଶିହରି
ଶୁଣଗୋ ଜୀବନଗୀତି କୋଟି କଂଠୁ ଅଧିରେ ଉଚ୍ଛ୍ୱସି
ମରଣ ଗୁଣ୍ଠନ ଚିନ୍ତ୍ର–ଚିରିଦିଏ ବିଜୟ ଉଲ୍ଲସି–
ଅମାର ତିମିର ଦଳି ଏଇ ହସେ ଉଷାର ଶୋଣିମା
ନିବିଡ଼ ଶୁଷୁପ୍ତି କୋଳେ ସ୍ୱେପନର ଗୋଲାପୀ ମହିମା

ଲୁଲାଇ ଯେସନେ ପାଶେ ଲୁଲେ ଦୂରେ ଦିଗନ୍ତ ଲଲାଟେ
ବିଷାଦେ ସଜଳ ଫଳ ପୁଲକରେ ପରମ ଉଛାଟେ
ଏ ନୋହେ ମରଣ ରାଣ ବୋଲେ ଏଯେମର ମାଳମା
ଦେଖୁ ଯୁଗର ମୁଖେ ନାହିଁ ତିଳେ ଅନ୍ତିମ ନୀଳିମା
ଏ ସଖି ଜୀବନ ରାଶ-ଆସ ଆଜି ଶମଶାନ ତୀରେ
ରଚିବା ସ୍ୱାଗତ ତାର- ପ୍ରଭାତ ପୂରବୀ ଗୀତି ।



## ଜନଗଣ ହାସେ...

ଜନଗଣହାସେ ଖେଳି ନିଳାକାଶେ
ହସୁଛି ହସୁଥା ପତାକାରେ ଆମ
ଜୀବନର ଛନ୍ଦେ ଆଜି ତୋତେ ବଳେ,
ପ୍ରୀତି ଅଭିସାର ରଣ ଅଭିଯାନ ।। ପଦ ।।
ତାପସର ଶ୍ୱେତ, ଶତଦଳ ହାସେ
ସାଧନାର ଗୁରି ଗୌରିକ ଝାସେ
ସୃଜନର ନୀଳ ଫେନିଳ-ଉଲ୍ଲାସେ
ଯୁଗେ ଯୁଗେ ଜାତି ଧନ ମାନଜ୍ଞାନ
ଜୀବନର ଚକ୍ର ବହି ଚଳୁ ଆଗେ,
କେତେ ଜାତି କଥା ତୋର ତହିଁ ଜାଗେ
ନିତି ନୂଆ ରସ ସରଳୁ ସୋହାଗେ
ହିଂସାର ଖେଳେ ଶାନ୍ତିର
ବିପକ୍ଷୀ ବିଳାସ ସମରେ ତୁ ଶଙ୍ଖ,
ପ୍ରଳୟେ ତୁ ପ୍ରୀତି ପରମ ନିଶଙ୍କ
ତୁହିଁ ପ୍ରିୟା ଭୁଜ ଜନନୀର ଅଙ୍କ
ଗହନ ତିମିରେ ଆଲୋକର ଯାନ ।। ପଦ ।।
ଅକୂଳେ ତୁ କୂଳ ଅଥଳେ ତୁ ଥଳ ନିସହାୟେ ସାଥୀ
ନିପୀଡ଼ନେ ଜଳ ''
ବିନାଶୁଟୁ ଦସ୍ୟୁ ହିଂସୁକ ଖଳ-
ସମତାର ସ୍ରୋତ ଚିରି ଭାସ ମାନ ।। ପଦ ।।

ନୀଳଜଳ କୋଳେ, ବୋଇତ ଭସାଇ, ବ୍ୟୋମଯାନ ଶିରେ
ତୋତେ ଧରେ ଚାହିଁ
ତୋତେ ଯାପି ବୁକେ, ସୁଖେ ଅବଗାହି,
ଗାଏ ଯୁବା ଜନ ତୋଳି ଜୟଗାନ ।।
କେତେବୀର ଋଷି ଅଭିମାନୀ, ହିନ୍ଦୁ, ଇହୁଦ, ଜୈନ, ଖ୍ରୀଷ୍ଟାନ
ବୁଦ୍ଧେ ନାନକ ଗାନ୍ଧିର ବାଣୀ ଅଶୋକ ଶିବାଜୀ ସପନର ରାଣ ।
ନ ସହୁ ତୁ ଲୁହ, ନ ସହୁ କଷଣ, ଅହିଂସାରେ ଜଳୁ, ଅତୀତ ଶୋଷଣ
ଅଜୟେ ଶକତ, ଜିଣରେ ଶରଣ
ଅତୁଳ ସାହସେ ତୀର ଦୀପ୍ୟ ମାନ ।। ପଦ ।।
ଆଉ ନାହିଁ ତହି, ଏ ଜାତିର ଶିଶୁ, ବନ୍ଦନ ରଚୁ ତୋର ଦଶ ଦିଶୁ
ଜୀବନର ସୁଧା ଝରେ ତୁ ଆଶିଷୁ
ନମୋଃ ନମୋଃ ଜାତି ତୋ ମହାନ୍ !!



## ତୁମେ ନୁହଁ କେବେ...

ତୁମେ ନୁହଁ କେବେ ମରଣ ପୂଜାରୀ
ତୁମେ ପରା ନିଜେ ଜୀବନ ଗୀତି
ଯୁଗେ ଯୁଗେ ଚଳ ଜୀବନ ଉଝାଳି
ଆବିଳ ମୂଳକେ କମଳରୀତି
ହିମାଳୟ ଶିରେ ହୁଅରେ ଉଭା
ତୁଷାର ଧବଳ ହରଷେ
ଦେଖେରେ ଆଶାର ସୃଜନୀ ଶୋଭା
ଅତି ଅକାତରେ ମଣିଷ ଚରଣେ
ପ୍ରକୃତି ଯହିଁ ପ୍ରଣାମ ରଚେ
ମଣିଷ ମନର ସ୍ୱପନ ବ୍ୟୟନେ
ବାସ୍ତବ ପଥେ କୁସୁମ ଶଁଚେ ।
ଆମରି ପରିରେ ଝଡ଼ ସମ ବହି
ଆଣିଲେ ଯେ ଜନ ଆଷାଢ଼ ଜଳ
ଜୀବନ ପଥରେ ଆଗୁଆ ବିଜୟୀ
ନିର୍ଭୀକ ବୀର ପଥିକଦଳ

ବନ୍ଦନା ବ୍ୟକ୍ତି ତାର ପୂଲିକେ କାଲି
ଆମେ ବଇଶାଖୀ ବୀତେ ବିଳସି
ବଜାଇଲୁ ଯେ ବଜ୍ରତାଳି
କହିଲୁ ଅନାଥ ଜୀବନ ଆସେ
ଜମାଟ ଅଶ୍ରୁ ଚିତ୍ର ଆକାଶୁଁ
ଖୋଲିଦିଅ-ସୃଜି ବରଷା ଆସେ
ମଟାଳ ଭୂଇଁରେ ଲଂଗଳ ଗାର
ଲିଭିବ ନାହିଁରେ ଲିଭିନ ନାହିଁ
ଅନ୍ତରେ ଆମ ଆଶାର ପ୍ରଚାର
ଉଠିଲା ସହିରେ ଉଠିଲା ସହି
ହଜିଯିବୁ ଆମେ ମୃତ୍ତିକା ତଳେ
ନିଭିଯିବୁ ଦୂର ଆକାଶ କୋଳେ
ରଚୁଥିବୁ ଆମ ଆହ୍ୱାନ ବାରେ—
ରଚୁଥିବ ହସ ଜୀବନାୟନେ—
ସୃଜନ ଲୀଳାର ମୂରଲୀ ଧରି—

ଆଗୁଆ ସେନାର ସ୍ମରଣେ ରାଗିଣୀ
ଦେବ ନିକି ଭାଇ ତୁମେରେ ଭରି
ସ୍ନିଗ୍ଧ କରୁଣ ଆମୋଦେ ଥରି
ବଇଶାଖୀ ସୁର-ଜୀବନ ଝରଣେ
ପଡ଼ିବ ନାହିଁ କି ତୁମର ମନେ
ଛୋଟ ତୂଳିକାରେ ଉଜ୍ଜ୍ୱଳ ସ୍ୱପନ
ରଖିଗଲୁ ଯୁଝି ମରଣ ରଣେ
ବିରାଟ ବାଣୀରେ ତୋଳିଲୁ ସୁର—



# କାହା ସାଥେ ଆଜି ରଚିବି ଖେଳା ହେ

କାହା ସାଥେ ଆଜି ରଚିବି ଖେଳା ହେ—
ଆଜି ଏ ବେଳା !
ବାରୁଦ-ବାଷ୍ପ ଗଗନେ ଘୋଟେ—
ତୋପ-ଗରଜନେ ସମୟ ଲୋଟେ—
କେତେ ସୁରାସାକୀ - ରୁଧିର ଧାରେ
ଭସାଇବା କେଉଁ 'ସ୍ୱପନ' ଭେଳା- !

ଜୀବନ-କାନନେ ଫୁଟେ ଯେତେ ଫୁଲ
ରାଶି କି ରାଶି
ନିମେଷେ ଆଜି ତ ଅନଳ ଝୁଲରେ
(ଅନଳ ଝୁଲ)
ପ୍ରଳୟେ ଝାସି
କାହିଁରେ ସୁବାସ କାହିଁରେ ରୂପ—
ତାଡିଲା ପବନ ଘାଉଁରେ କାଶି ।
(ସଜ ନିରେଖକି ହେଉଚି ଅସି')
ସମର ଚିଜରେ ଶମଶାନେ କରି
କେଳିର ବନ—
କାହା ଭୁଜ ଭିଡ଼ି ବୁକୁରେ ଆବରି
କାହିଁରେ ରଚିବ କି ନିଧୁବନ ।
କାହାକୁ ଡାକିବ— ହୃଦୟ ରାଜା କି
ହୃଦୟ-ରାଣୀ
ତରଳ ଧାତୁର ପ୍ଲାବନ ପ୍ଲାବନେ—
କେଉଁ ପୀରତିରେ ଆରତି ମାନି !
ଦଗ୍ଧ କବରୀ ପଖାଳିବ କାର—
କି ଲୁହଲାଳେ—
ବପନି ବିକାଶ ଶମନର ସାର
ଆଜି ଏ କାଳେ—
କଥାରେ କଥାରେ କି ବିଷ ଜ୍ୱାଳା ହେ
ଧୂମ-କୁଣ୍ଡଳ ରତିଦେବତୀର ଚଅଁର ଢାଳେ !



ଆଶା- ଜଳଧିର ଅକୂଳ କୂଳରେ
କାହିଁ କେ ବାଳା
ବୁଡ଼ା ଜାହାଜର ଲୁଚିଲା ଚୂଳରେ
ବୋମାମାରୀ ଲୀଳା
ଢେଉରେ ଢେଉରେ ମାଇନ୍ ମାଳା
ଖାଲି ରଣ ପୋତ ଚୂଳରେ ଚୂଳରେ
ତହିଁରେ ବାଜି- ପଲକେ ଭାଜି-
ଛଟ୍‌କି ପଡ଼େ ଯେ ଭଗ୍ନ ଦେହର
କମନା-ରଜି;
ଏ ଯେ ମରଣର ହାତ ସଫେଇରେ
ଆତସବାଜି।
କାହିଁ କେ ବଳାରେ
କୋଟି ଆତ୍ମାରେ ଆତ୍ମା ଛାଟି।

ମହାପ୍ରଳୟର
ଏଇ ହିଟ୍‌ଲରୀ ଲହଡ଼ି କାଟି-!
ବରଣ କରିବ କିଏ ସେ କାହାକୁ
ବିପ୍ଲବୀ ମୁଁ ଯେ
ଯୁଦ୍ଧ-ବିନାଶି-ଯୁଦ୍ଧର ରୋଳେ
ବ୍ରିଟିଶ୍ କବଳୁ
ଶତ୍ରୁ କବଳୁଁ
ମୁକ୍ତ କରି ମୋ' ଜନମ ମାଟି!

ନିଷ୍ପେଷିତର ବେଦନା ଆର୍ତ୍ତି ବିହ
ଶ୍ୱସି ଉଠିବକେ ଫଣିନୀର ସମପାର୍ଶ୍ୱେ ମୋହର
କ୍ରୁଦ୍ଧା ରହି

ମୁକ୍ତିର ପଥେ ଅମୃତ ହସେ
ଧୋଇ ଧରଣୀରେ ନ କହି କଥା!
ଚହଲାଇ ଯେତେ ଚରଣ ମଧ
କରିବ ସକଳ ମରଣ-ଜୟୀ!



# ସ୍ୱରଲିପି

ଏ ମନ ମୁରୁଛି ବାରେ ସଁପିନି ସ୍ୱପନେ ପରା
ଚିତୋଇ ଚଇତି ମଲୀ ମଳୟ ଝଡ଼ରେ ଝରା ।

ଝୁରୁ ଝୁରୁ ମେଘ ତଳୁ ଲାଜେ ଥରୁ ଥରୁ ଉଷା
ଅରୁଣିମ ଆଶାରେ ଗୋ ଝରାଇଚି ଆଡ଼ରୁଷା
କି ରସ ସଲିତା ବହି
ରଜନୀ ଆସିନି ନଇଁ,
ଜୋଛନା ଉଜାଡ଼ି ପ୍ରାଣୁ ଅଯୁତ ହୃଦୟହରା ।

ଲୁହରେ ମୋ ହସ ଲିଖା ଉଜଳିଚି ଦିଶି ଦିଶି
ଧୂଳିର ଧ୍ରୁପଦ ସେ ଗୋ ବେହାଗେ ରହିଚି ମିଶି,
ଝଡ଼ ଆସେ ଝଡ଼ ଯାଏ
ତୃଷାରେ ଅନାଇ ଥାଏ
ତା ଲାଗି ବାତୁଳ ମୁଁ ଗୋ, ଜୀବନେ ଜୀବନ-ସରା ।



# ଧ୍ୱଂସ କରିବୁ ଜୀନର ଅପଚୟ

ଆକାଶ ହସାଇ ରକ୍ତଚିରାନେ-ଚାଲିଗଲେ ଏଇ ପଥେ
ନରକଙ୍କାଳ ଦଳ
ପଉଷ କୁହେଳି ପଞ୍ଜରମାଳେ-ଥରିଗଲା କାହୁଁ ସତେ
ନବ ବସନ୍ତ କଳ-
ଅସୀମ କାଳର ଗହ୍ୱର ତଳେ ରୁଦ୍ଧ ତୃଷାର ବାଣୀ
ସହସା ଯେସନ କିଂଶୁକ ଦଳେ-ପ୍ରୀତି ସଂକେତ ମାନି
ଅଯୁତ ଯୁଗର କ୍ରମ-କୋମଳ ଆଶା-
ଉନ୍ମୁଖ ହେଲା ଆବେଗଦର୍ପେ ସୃଜି ସୁମନ୍ଦ୍ର ଭାଷା।
ଆପଣା ଗର୍ବେ ଆପଣା ସ୍ୱପ୍ନେ ଆପେ ନିମଗ୍ନ ନର
ମଲ୍ଲିକା ଯଥା ଅଭିଯାତ୍ରିଣୀ-ଦମ୍ଭେ ପ୍ରଖରତର
ଭୁଲେ ପ୍ରଣୟର ଦାନ
ଗ୍ରୀଷ୍ମ-ନିଶାରେ ଶତ ନକ୍ଷତ୍ର ଗାନ
ତେସନ ପ୍ରଣୟ ଅନ୍ଧ ଗଲେରେ ଚାଲି
ଆକାଶ ହସାଇ ରକ୍ତ ଚିରାଳେ ଖାଲି
କେତେ ନୟନର ଅଶ୍ରୁ ଅରଘ
ନିର୍ମମ ପଦେ ଢାଳି।

କି ଯାଏ ଆସେ ଅଶ୍ରୁ-ଅରକ୍ଷେ
ଦୁର୍ବଳ ଅଭିମାନ
ଶୁଭ୍ରାକାଶର ହାସ୍ୟେ କି ଗଣେ
ବସନ୍ତ ଅଭିଯାନ
ଆଗାମୀ ଯୁଗର ନବଦମ୍ପତି ରାଜି
ଚାଲିଗଲେ ହସି-ଆପଣା ରକ୍ତେ ଆପଣା ଅଙ୍ଗମାଜି-
ଚାଲିଗଲେ ଏଇ ପଥେ
ସଂଶୟୀ-ଜନ ବିଦ୍ରୂପ ହେଳି-ନବୀନ ସୃଷ୍ଟି ରଥେ
ଧୂଳି ଧୂସରିତ-ଘର୍ମ ଆବିଳ ଦେହେ
ଚକ୍ଷୁକୋଟରେ ଥରାଇ ଗଭୀର ସ୍ନେହେ
ମୃତ୍ୟୁ କରିବୁ ଜୟ
ଧ୍ୱଂସ କରିବୁ ଜୀବନର ଅପଚୟ।

(ରଚନାକାଳ ୧୯୪୫)



## ବଚନିକା

ପୁ- ଆଣ୍ଟୁ ଆଣି ହେଲା ପାଣି
ରୋଇ ଯା ଧାନ ତୁ ହୃଦୟ ରାଣୀ ଲୋ
ପଉଷେ କାଟିବା ଜାଣି କି ରାଣୀ ଲୋ

ସ୍ତ୍ରୀ- ଛନ ଛନ ଦୁବ ଘାସ
ଚଳୁଚୁ କି ରଚି କଅଁଳ ଘାସରେ
ସତେ ପୁରିବକି ମନ ଆଶ

ପୁ- ପୂଷରେ ମିଳିବ ପେଜ
ଜୀଇ ରହିବା ଯା
ରଖିଲେ ହେଜରେ
ଝଲିବ ତୋ ରୂପ ତେଜରେ

ସ୍ତ୍ରୀ- ସୁପାତି ଶେଯ ତୁ ପାରି
ଫଗୁଣେ ମାରିବୁ ପ୍ରୀତି ପିଚକାରୀରେ
ବୁଲେ ମହାଜନ ତରବାରୀ

ପୁ- ବୁଲୁ ମହାଜନ ଆଖି
ବେଶୀ ଉପୁଜାଇ ଦେବା ତ ଫାଙ୍କିରେ
ସେ ଯେ ଫେରିବ ଦୁଆରେ ଡାକି

ପୁ ଓ ସ୍ତ୍ରୀ- ପିଞ୍ଜରେ ରଖିବା ଶୁଆ
ଆମ ମାଣକ ତ ଆମରି ଥୁଆ
କିଏ ଭାଂଗିବ ଏ ଛାତି ଲୁହା
ଧନତକ କରି ଠୁଳ
ବାଣ୍ଟିନବା ବସି ମୂଲିଆ କୂଳରେ
ଧନୀ ଗଣୁଥିବେ ତରା ଫୁଲ

ସ୍ତ୍ରୀ- ବିଲରେ ନପଶୁଁ ହଳ
 ପାଶୋରିଲୁ ନିକି ଦଲାଲି ଦଳରେ
 ସବୁ ଜମି କଲେ ହାତ ତଳ

ପୁ- ଯେତେ ହାତ ତଳ କରୁ
 ଆମକୁ କାଢ଼ିବ କେ ଆମ ଘରୁରେ
 ତାହା ସହିବା କି ଜୀବ ଧରୁଁ

ସ୍ତ୍ରୀ- ଭଲାରେ ଚତୁରା ଭଲା
 ସ୍ୱପନ ଦେଖୁଛୁ ସୁନେଲି ଖଳାରେ
 ରଣ ଫାଶୀ ଦୋଳେ ତୋର ଗଳା

ପୁ- ଯାହାଠୁ ଆମର ରଣ
 ସେ ତ ଖାଏ ନିତି ଆମରି ଲୁଣରେ
 ଦିନେ ଗାଇବ ଏ ଦାଆ ଗୁଣ

ପୁ ଓ ସ୍ତ୍ରୀ- ଏକାଠି ହେଇବା ଆମେ
 ଜାଗିରେ ଭିଡ଼ିବା ଏକତା ରାଣରେ
 ଆମ ଦାସ ପଣ ଯିବ କ୍ଷଣେ

ପୁ- କଦମ୍ବ ଫୁଲର ତୋଡ଼ା
 ସମାଜରେ ଯେତେ ଗୋଖର ବୋଡ଼ା
 ଦଳିଦେବା ଆମେ ଯୋଡ଼ ଯୋଡ଼ା

(ରଚନାକାଳ ୧୯୪୫)



# ବିପ୍ଳବୀ ମୁହିଁ

ହତିଆର ହାତେ ଚଳିଲ ସମରେ ଯେହୁ,
ସମର ଅନଳ ଲିଭାଇ ଦେଲେ କି ସେହୁ ?
ଘୃଣାର ଶାଣିତ କୃପାଣ କରରେ ବହି
ପ୍ରଳୟ ରୋଷରେ ଥରିଲେ ଆକୁଳେ ରହି,
ଘୃଣାରେ ମଥିତ ମହୀରେ ପରମ ସୁଖେ
କହି କି ପାରିଲେ ଆଶ୍ୱାସ ଭରା ବୁକେ ।
ଜୀବନ ନେଇ କି ଜୀବନ କରେ କେ ଦାନ
କଣ୍ଠ ରୋଧ କି ଉଚ୍ଛୁଳାଇ ହୁଏ ଗାନ ।
ବିପ୍ଳବୀ ମୁହିଁ ବିପ୍ଳବ ମୋର ପ୍ରାଣ
ଆପଣା ଶୋଣିତେ ଆପେ ମୁଁ ରଚଇ ସ୍ନାନ,
ଭାତୃ ରକତେ ଧଉତ ନୋହେ ଯେ ଧରା
ମୋ ପାଶେ ନାହିଁରେ ଜୀର୍ଣ୍ଣଜୀବନ ଜରା-
ଗୁରୁ ଗୁରୁ ରବେ ଡମ୍ବରୁ ବାଜେ ମୋର
ଆହ୍ୱାନ ଭାଦେ-ସଂଚିତ ଭୀତି ଘୋର
ଧ୍ୱଂସ-ପୂଜାରୀ ମଙ୍ଗଳ ଆମେ ଡାକି
ମୃତ୍ୟୁ-ଗହଳେ ଶଙ୍କର କୋଳେ ଜାକି ।

(ରଚନାକାଳ ୧୯୪୬)



# ଶପ୍ତଶଯ୍ୟା

ଆରେ ସଙ୍ଗିନୀ ଆରେ
ଭରା ଶ୍ରାବଣ ରାତି ଧରା ଉଚ୍ଛୁଳେ ମାତି
ଧରାରେ ପ୍ରୀତି ତାତି - ତାଉଛି ମନଭାତି - ସଙ୍ଗିନୀରେ
କେଳି କୁସୁମେ ସାଜି - କୋଳେ କୁତୁକେ ରାଜି
ଯାଚି ଯଚାଇ ହିଆ - ହାତେ ଚିବୁକ ପ୍ରିୟା ।
କୁଞ୍ଜେ ନଚାଇ କୁଚ - ମଞ୍ଜୁଡୀ ସୁରସାରେ
ମଞ୍ଜୁ ହାସିନୀ ବାଳା - ବିରସେ ଆବେଗରେ
ଖଡିରିଟ ଖେଳ ଲୋଚନ ବାନ୍ଧବୀ ।
କିଣା ଜନର ବୁକେ ବୀଣା ଆଳାପେ ଆପେ
ଉରୁ ଥରାଇ ସହି ଭୁରୁ ଖେଳାରେ ମହୀ
ପଲ୍ଲବୀ ଆବେଗରେ ପଲ୍ଲବୀ ଥର ଥରେ
କେତକୀ ତୀରମାରି ପିରତୀ ରସେ ଭରି
ଛନ୍ଦି ଥରେ ମନ ଅଞ୍ଚଳେ ସଙ୍ଗିନୀ
ଦେହେ ମିଶି ସ୍ନେହେଁ ମିଶି
ବହିଯାରେ ସଙ୍ଗନୀରେ

*(ଓଡ଼ିଶା ଦ୍ୱିତୀୟ ଓଡ଼ିଆ ଚଳଚ୍ଚିତ୍ର ସପ୍ତଶଯ୍ୟା ପାଇଁ ରଚିତ ।)*
*ରଚନାକାଳ ୧୯୫୫ ମସିହା*



## ଆଜି ସ୍ୱାଧୀନତା ସମର ସ୍ମୃତିରେ ବୀର ଯଶଗାନ

(କ୍ରୁମ୍ଫ କାମୋଦୀ)

ଆଜି ସ୍ୱାଧୀନତା ସମର-ସୁକଥା- ପୀୟୁଷ ବରଷି
ସୁଜନ ସମୀପେ ଜାଳି ସ୍ମୃତିଦୀପେ ବାଜୁଛି ଭରସି
ଯା ଶିଖା ଅତୁଳ ରୂପ ରସାତଳ ତୁଟାଏ ତାମସ,
ବାଲମିକ, ବ୍ୟାସ, କେତେ କାଳିଦାସ, ସାରଳା ମାନସ
ଯା ଆଶୀଷବଳେ କଳ୍ପନା ଉଲ୍ଲୋଳେ ଲିହିଲା ଅଳପେ;
ତିଳେ ଉପଇନ୍ଦ୍ର, ତୁଳସୀ, ରବୀନ୍ଦ୍ର, ଯା ଛାୟା ଜଳପେ;
ସେହି ଭାରତର ଭାରତୀ ପୟର ପରଶି ଏମନ
କ୍ଷମ ସୁଧୀଜନ, କରୁଛି ଚୟନ ତା ଯଶ ସୁମନ

x x x

(ଚୋଖି)

ବିନ୍ଧ୍ୟାଦ୍ରି କଟିରେ ଯାର ଚିତ୍ରୋତ୍ପଳା ଚନ୍ଦ୍ରହାର
ନର୍ମଦା ନର୍ମ ବିହାର ହୃଦୟ-ହରା,
ମହେନ୍ଦ୍ର ସହ୍ୟାଦ୍ରି ଛଳେ ପୃଥୁଳ ଜାନୁ ପ୍ରଚଳେ
ସୁରସିକ ସ୍ୱପ୍ନାନଳେ ସୁଖ ପସରା;
ବିତୃଷ୍ଣାରେ କୃଷ୍ଣା କାବେରୀ
ନୁପୂର ନିକଣେ ଦୋଳେ ଯା ପଦ ଘେରି ।
ଯା ବକ୍ଷ କାଞ୍ଚଲାସମ ଗାଂଗେୟ ଭୂମି ସୁଷମ
ଶ୍ୟାମଳିମେ ଅନୁପମ ଶୋକପାଶୋରା,

ଜାହ୍ନବୀ ଯମୁନାପୁରେ ରଜତ ସୂକ୍ଷ୍ମ ଦୁକୂଳେ
ବିଚିତ୍ର ଚିତ୍ର ମଂଜୁଳେ ଅପ୍‌ସରା ତୋରା;
ଖୋସାରେ ଯା ମଲ୍ଲିକା ରମ୍ୟ
ଶ୍ୱେତ ହିମଗିରି ଗଭା ଆଖି ଆଗମ୍ୟ ।

କିରସେ ଚଳ ଚଂଚଳ ଉର୍ମିଳ ଯା ଚେଳାଂଚଳ
ସିନ୍ଧୁ କଲ୍ଲୋଳେ ଉଚ୍ଛଳ ତୁମେ ଆକାଶ,
ମଳୟ ହିଲ୍ଲୋଳେ ଭାସି ଦରହାସ ରାଶି ରାଶି
ଖେଳାଏ ଯେ ମତ୍ତକାଶୀ ନେତ୍ର ବିଳାସ
ଯାର ଭ୍ରୂରୁ ଶିଶିର ଝଳି
ଅସରା ଆଷାଢ଼େ ଆଣେ ଆଶାର କଳି।

x x x

ତା' ଲାଗି ଅଥୟ ଛିଡ଼ାଇ ହୃଦୟ କୃପାଣ ଫଳକେ
କେତେ ଶୂରବୀରେ ଆପଣା ରୁଧିରେ ଖେଳିଲେ ପଲକେ।
ହରଷ ବିଷାଦେ ଲୋଟି ତାହାପଦେ ସୁମରି ସେ ବୀରେ
ଅପୂର୍ବ ଆଖ୍ୟାନ ବୀର ଯଶ ଗାନ ଶୁଣାଏ ଅଧୀରେ।

x x x

ଆସିଲା ନିମେଷ ଦିନେ ଦୁଃଖରେ ଖେଳା
ଜଳିଯାଏ ଏ ଘରଦ୍ୱାର, ସୁନା କ୍ଷେତ ଖଳା।
ପାପ ପରତାପେ ଧର୍ମ ଯାଏ ରସାତଳ
ଅଗ୍ରଜକ ଦେଶେ ପଶେ ବିଦେଶୀର ବଳ।
ରାଜତନ୍ତ୍ରୀ ଶାସନରେ ଭାସେ ପ୍ରଜାକୁଳ,
ଭାଜିଯାଏ ଜୀବନର କୋଣାରକ ଚୂଳ।

କାରଣ—

(ଶଂକରାଭରଣ)

ମୋଗଲ ସାମ୍ରାଜ୍ୟ ନାହିଁ, ନାହିଁ ମରହଟ୍ଟା,
ଦିଲ୍ଲୀ ଦରବାରେ ଖାଲି ଉଡ଼େ ଚମରଟା;
ଘୋର ବିପତ୍ତିରେ ପଡ଼ି
ଭାରତର ଆତ୍ମା, ଭାଇ, ଯାଉଥିଲା ସଢ଼ି।
ବାଣିଜ୍ୟ ପସରା ଘେନି ଶ୍ୱେତାଂଗ ବଣିକ
ଯାଚି ଚାକଚିକ୍ୟ ହସ ହରିଲେ ମାଣିକ;
ଗ୍ରାମୁ ଗ୍ରାମାନ୍ତରେ ଖେଦି
କୃଷକ ପାଇବ କୂଳେ ପକାଇଲେ ଛେଦି।
(ଗୋପୀଭାଷା ବୃତ୍ତେ)

ଯେବେ ସେ ଗୋରା ବିଦେଶୀ ଆସିଲେ,
ଦେଶ ସୁଖ ଶିରୀ ସବୁ ନାଶିଲେ ।
ଲୋକ ହାତୁଁ ନେଲେ କାମ ଛଡ଼ାଇ
ଦେଲେ ଭୋକ ଶୋଷେ ଦେଶ ଗଡ଼ାଇ ।
ଚିପି ବୁଣାକାରଙ୍କର ତୋଟିରେ,
ନେଲେ ଲୁଟି ଧନରତ୍ନ କୋଟିରେ ।
ଛେଦି କାରିଗର ହାତ ଆଙ୍ଗୁଠି
ଜୁରି ନେଲେ କେତେ ଖଡୁ ବାହୁଟି ।
ମାଲ ମୋଗଲ ବାଦଶା ମୋହର
ନିତି ଯାଚିଲେ ବିଦେଶୀ ଜହର
ମେଳି କୂଟ କପଟର ପସରା
ଦେଲେ ବୁହାଇ ରୁଧିର ଅସରା ।

(ଶଂକରାଭରଣ)

ପଲାସୀ ପ୍ରାନ୍ତରେ ଚାହୁଁ ବୁଡ଼ିଗଲା ରବି,
କାଳକେତୁ କ୍ଳାଇବର ଗରଜିଲା ପବି
ଯୁଝିକେତେ ବୀରାରାଣୀ,
ସିରାଜଉଦ୍ଦୌଲା, ଟିପୁ ଲୋଟିଲେ ଅବନୀ ।
ନିଷ୍କଣ୍ଟକ ହେଲା ଭାଳି ଏ ଭାରତ ଦେଶ
ଗୋରା ଗଭର୍ଣ୍ଣର ସୁଖେ ହେଲେ ସ୍ୱର୍ଣ୍ଣ ବେଶ,
ସେ କି ଜାଣିଥିଲେ ଥରେ,
କୁହୁଳେ କି ଅଗ୍ନିକଣା ଭସ୍ମ ତଳେ ତଳେ !

x x x x

ଓଡ଼ିଶା, ବଂଗଳା, ବିହାର ନେଇ ବାଦଶା କରୁ
ଖଜଣା ଆଦାୟ ଛଳରେ କଲେ ରାଇଜ ଚଳୁ ।
କାହିଁ କେତେ ରାଜା ସାଆନ୍ତେ ଦେଇ ମନ୍ତ୍ରଣା ବିଷ
ଭାଇରେ ଭଗାରୀ କରିଲେ ହସି ଫୁଲାଇ ନିଶ ।
ଭାତ ଲୁଣ ନେଲେ ଛଡ଼ାଇ ଘୋର ଦାମନ ବଳେ,
ଚିପୁଡ଼ିଲେ ଚାଷୀ ଛାତିକୁ କେତେ କୌଶଳ କଳେ,
ଉତ୍ପୀଡ଼ିତ ଲୋକେ ଜାଣିଲେ କୂଟ ବିଦେଶୀ ଲୀଳା,
ଚମକି ଚଢ଼ାଉ କରିଲେ ଯେତେ ଫିରିଙ୍ଗୀ କିଲା ।

କାହିଁ ଘୁମୁସରେ ଆମର ବୀର ଘୁମୁରା ଘୋଷେ,
ଛୁଟେ ଆଦିବାସୀବାହିନୀ ଜଳି ପ୍ରଳୟ ରୋଷେ।
ଗିରିନଈ ବନ୍ୟା ବେଗରେ ଅରି ଭରସେ ବହି
କାଳାନଳ କିଚି ନଚାଇ ଦିଏ ବଡ଼ିମା ଦହି।
ତେଣେ କ୍ଷୁରଧାର ଖୋରଧା ଝଳେ ପାଇକ- ଡାକେ
ବରୁଣାଇଁ ଶିଖୁ ପ୍ରସରି ଆମ ଚିଲିକା ଯାକେ।

x x x

(ରସକୁଲ୍ୟା)

କାହିଁ ବରୁଣେଇ ଖୋଲରେ କାହିଁ
ଗ୍ରୀଜା ଟେକି ବହ୍ନି ଦିଏ କି ଚାହିଁ
ଜୟି ରାଜଗୁରୁ ଜୀବନ୍ତ ଶିଖା
ଧିକି ଧିକି ଜଳି କି ବୀର୍ଯ୍ୟଟୀକା।
ଏ ଜାତି ଲଲାଟେ ଲେଖିରେ,
ଦସ୍ୟୁ ବଣିକର ସାମରିକ ବଳ ଜାଳିଦିଏ ଛେକି ଛେକିରେ।
ହାତେ ଧରି କେତେ ନୃମୁଣ୍ଡ ଥାଳି
ସଜାଉଛି କେତେ କୁଜଂଗ ଆଜି
ବୀର ଉଷ୍ଣୀଶରେ ଶୋହିଲା ଧରା।
ଉତ୍ପାଟିତ ହୃଦ କି ଜବା ଝରା
ରାଜିଲା ଫିରିଙ୍ଗି ପଥେରେ,
ସେ କି ହାହାକାରେ ନ୍ୟଥା ବାଲୁକାରେ ଧସାଇ ଲାଳସା ରଥେରେ।
ଉଚ୍ଛୁଳାଇ ଦେଶେ କି ଲୁହ ଲହୁ
ଛେଉକା ଫିରିଙ୍ଗି ସଇନି ତହୁଁ
ଜଳାଇ ନଗର ଜଳାଇ ଗ୍ରାମ
ଝଲାଇ କେତେ ସେ ଜୀବନ ଧାମ
ପଡ଼ାଇଲା ନାଗଫାଶରେ,
ଭୁଲାଇ ଭଲାଇ ନିମକ ହାରାମେ ସ୍ୱାଧୀନତା କରି ନାଶରେ।

ବକ୍ସି ଜଗବଂଧୁ ଛାଡ଼ିଲା ଡାକ
'ଧର ତୀର ଧନୁ ପାଇକ ଯାକ
ଯାଏ ସ୍ୱାଧୀନତା ଯାଏରେ ଯାଏ
ପରାଧୀନ ପ୍ରାଣେ କି ସୁଖ ଥାଏ ?
ଯାଉ ଏ ଜୀବନ ଯାଉରେ,
ଜାତି ଜଗନ୍ନାଥ ଛାତି କଉସ୍ତୁଭ ଦସ୍ୟୁ ହାତେ ନାହିଁ ପାଉରେ ?
ସେ ଡାକ ନଶୁଣୁ ପାଇକ ରଡ଼େ
ଗୋରା ସେନାନୀରେ ନିଶ୍ୱାସେ ତଡ଼େ
ବଡ଼ ଦେଉଳରେ ଉଡ଼ାଏ ନେତ
କହେ ହସି ହସି ହସିବ କ୍ଷେତ।
ନାହିଁ ତୋ ଫିରିଙ୍ଗି ଭୟରେ,
ନୀଳାଚଳ ଚୂଳେ ନୀଳବଧୀର କୂଳେ ଉଠାତୋ 'ଭାରତଜୟ'ରେ
ନୂଆ ହତିଆର ବଂଧୁକ କଲେ
ଫିରିଙ୍ଗି କପଟ ଲଢ଼େଇ କରେ
ଝିଅ ବୋହୂ କୁଳ ମହତ ଖାଇ
ଫାଶିରେ ଝୁଲାଇ ପାଇକ ମାରି।
ଫାଶି ଦିଆ ଗଛେ ଥାଇରେ,
ଏଜାତି କୀରତି ବୀର ପାଇକରେ ପ୍ରେତ ହସେ ଗୀତ ଗାଇରେ।

## (ଯମକ)

ଶୁଣ ହେ ସୁଜନେ ଯାଏ ବର୍ଷସିନା ବହି,
ପ୍ରତିଦିନ ଯୁଦ୍ଧରୋଳେ କମ୍ପୁଥାଏ ମହୀ।
ଫିରିଙ୍ଗ କଂପାନୀ ଲୋକ ରଣେ ସଜବାଜ
ଝାଂପୁଥାଏ ରାଜ୍ୟଧନ ମହାକାନ ବ୍ୟାଜ।
ଜଣେ ରାଜା ସହ ମିଶି ସାଥି ହୋଇ ବସେ
ଆଉ ଜଣେ ରାଜାର ସେ ରାଜପଣ ଧସେ।
ସାଥୀ ରାଜା ମୁକୁଟରୁ ମଣିନିଏ କାଢ଼ି
ଚୋବାଇ ତା ମଥା ସୁଖେ ହସେ ମୁହଁ ଝାଡ଼ି।
କିଛିଦିନ ଚାଷୀକୁଳ ଥିଲା ଅଂଧକାରେ
ଗଡ଼ି କେତେ ଦୁର୍ଭିକ୍ଷରେ ଭୋକ ଅନାହାରେ।

କ୍ଷଣରେ ମେରୁଦଣ୍ଡ ନଯାଏ ତା ଭାଜି
ସେହି ଯେ ପାଇକ ସେନା ଉଠେ ଗର୍ଜ୍ଜି ଗାଜି
ଧାଡିକାରେ ଯାଇ କରେ ତୀବ୍ର ପ୍ରତିରୋଧ
ଭାଇ ଚାହେଁ ନେବ ଭାଇ ମୃତ୍ୟୁ ପ୍ରତିଶୋଧ
ହିନ୍ଦୁ ବା ମୁସଲମାନ ଭେଦ ନାହିଁ ତିଳେ
ଦୁର୍ବଳ ବାଦଶା ଥାଏ ଉଆସର ବିଳେ ।

## (କାଳୀ)

ତେଣେ ଯେ ଯେତେ ସିପାହୀ କେତେ
ନୀରବେ ଥିଲେ ରହି
ଗୋରାର ପାଶେ ଗଭୀର ତ୍ରାସେ
ଦାରୁଣ ଲଜ୍ଜା ସହି
ଦେଖିଲେ ଥରି କ୍ରୋଧରେ ଜଳି,
ଶୂକର ଗୋରୁ ମେଦ
ଗୁଳିରେ ଗୋଳି ବିଜୟ ଡୋଳି
ବୁହାଏ ଗୋରା ସ୍ୱେଦ,
କାର୍ତ୍ତୁଜରେ କାମୁଡ଼ି ଥରେ
ଫୁଟାଇ ଦେବେ ନଳୀ
ବିଦେଶୀ ପାଇଁ ଭାଇରେ ଖାଇ
ପଡ଼ିବେ ଶେଷେ ଟଳି ।
ଗରଜି ଖରେ ଆବେଗଭରେ
ହେଲେ ସେ ଆଗୁଆନ
ବାଜିଲା ନଭେ ସଗୌରବେ
ସିପାହୀ ଜୟଗାନ
ବାରାକ୍ ପୁରେ ମଂଗଲମୁରେ
ପାଣ୍ଡେ କହେ ଠାରି
ଦିଲ୍ଲୀ ଚଲୋ ଦିଲ୍ଲୀ ଚଲୋ
ମୁକ୍ତି-ତଲୱାରୀ
ଦିଲ୍ଲୀପଥେ ମୁକ୍ତିରଥେ
ହିନ୍ଦୁ ମୁସଲମା...

ଚୂର୍ଣ୍ଣକରି ବିଦେଶୀ ଅରି
ହସାଏ ଶମଶାନ
ହସାଏ ଶମଶାନରେ ସାଥୀ,
ବାଦଶା ହୁଏ ରାଜା
ପଂଜରାରେ ବାଜେରେ ଖାଲି
ଦିଲ୍ଲୀ ଚଲୋ ବାଜା
ଉଭରଲେ ଗଂଗାଜଳେ
ଉଠାଣି ଚାଲେ ନାହା
ଚାଷୀର ବଧୂ କୁସୁମ-ମଧୁ
ଧୂଏରେ ବୀରରାହା ।

(ଘଣ୍ଟାରବ)

ଅଶ୍ୱ ଝପଟାଇ ଅମ୍ବରେ ଲୋଟାଇ
ଆଶା ମେଘ ପ୍ରାଣଦାୟୀ
କାହିଁ ବୀରଜନେ କାନନ ପ୍ରାନ୍ତରେ
ଖେଦିଯାଏ ଗୀତ ଗାଇ
ମାହାରଥୀ ହେ ।
ପୁଣି ଦିଲ୍ଲୀଶିରେ ମୁକ୍ତି ସେନା ଗିରେ
ଉଡ଼େ ସ୍ୱାଧୀନତା ଛତି
ଥରେ ଗୋରା ସେନାପତି, ମହାରଥୀ ହେ !
ବାଦଶା ମୁକୁଟେ ପୁଣି ତ ଉକୁଟେ
ଉଷାରୁଣ ଆଖି ବାଣୀ
ଫିରିଙ୍ଗୀର ଥାଟ ଓଗାଳେ ରେ ବାଟ
ଦେଖାଏ ଗରବ ଠାଣି,
ବୀର ସାଥୀ ହେ !
ପାଇକ କୁହାଟ ଚୂରେ ତା ମୁରାଟ
କରଦିଏ ଆତ୍ମ ରାତି
ଜୟ ମନେ ମାତି ମାତି ।

(ବଂଗଳାଶ୍ରୀ)

ଭାରତର କନ୍ୟା-        ଜନନୀ ଅନନ୍ୟା
ଲୌହମୟୀ ଲକ୍ଷ୍ମୀ ବାଈ
କି ସ୍ନେହ ଆଶ୍ୱସେ        କି ମହା ବିଶ୍ୱାସେ
ରଣାଙ୍ଗନେ ଆସେ ଧାଇଁ।
କାହିଁ ଅଯୋଧ୍ୟାରେ        କି ସୁଂଦର ଗାରେ
ହଦରତ ଯାଏ ରେଖି
ଉଠ ପୁରନାରୀ        ଧର ତରବାରୀ
ବୀର ଗାଥା ଯାଅ ଲେଖି।
ହିମାଚଳ ପଦେ        କି ଆଶା ଗଦ୍‌ଗଦେ
ଠୁଳ ହୁଏ ଚାଷୀ ବୀର,
ତାନ୍ତିଆ ଟୋପୀର        ବୀର୍ଯ୍ୟମୟୀ ଗିର
ଚୁମ୍ବିଦିଏ ତାଙ୍କ ଶିର
ନେପାଳରେ ଥାଇ        ନୀଳାଚଳେ ଚାହିଁ
ଠାରିଦିଏ ଶ୍ରୀହଜୁରୀ
ଧାଏଁ କୃଷିଜୀବୀ        ଧାଏଁ ଆସିଜୀବୀ
ଧାଏଁ ମସୀ ଜୀବୀ ସୂରୀ।
ହର୍ଯ୍ୟକ୍ଷର ସମ        ବୀର୍ଯ୍ୟେ ଅନୁପମ
ତେଜେ ଅତି ଭୀତି ଦାୟୀ
ଜାଳିଦିଏ ରଣ-        ଅନଳ ବହନ
ସୈନ୍ୟଦଳ ଦେଶେ ଥାଇ।

(କଳହଂସ କେଦାର)

ସହାସା ବୀର ଯୁବା ପଲଂକୁ ଉଠି
ପ୍ରିୟାରେ କହେ କାହିଁ ଯିବି ମୁଁ ଛୁଟି;
ଡାକିଲା ଆଜି ମତେ ଜନମ ଭୂଇଁ,
ଥାଅ ତୁ ବାଳା, ରଣେ ଯାଉଛି ମୁହିଁ।
ଲୋଟୁଛି ସାଥୀ ମୋର ସମରେ ଯୁଝି,
ତୁ ଆଶେ ବସିବି ମୁଁ ମରମ ମୁଜି?
କୁସୁମ ଖେଳା ବେଳ ଯାଉ ଲୋ ଗଡ଼ି,
ଜୀବନେ ମରଣ କି ରହିନି ଜଡ଼ି

ଆଜି ନୋହିଲେ କାଲି ନେବ ଲୋ ଯମ,
ଜାତିର ଲାଗି ମରି ଯଶ ପରମ।
ନିରସ ନୁହ ବାଳା, ପଠାଅ ମତେ
ବୀର ପ୍ରତାପ, ଟିପୁ, ଶିବାଜୀ ପଥେ।
ଫିରିଙ୍ଗୀ ଦଳ ଅନା ସାରେ ମୋ ଦେଶ
ଜନନୀ କାଙ୍ଗାଳିନୀ ଧରେ କି ବେଶ !
କୁସୁମ ସୁକୋମଳ ନାହୁରେ ଲାଖି
ମାଆ କଷଣେ ପାରେ ପ୍ରେମ କେ ଚାଖି ?
ପୌରୁଷ ସିନା ସଖି ସମରାନଳୁ
ଆଣିଲେ ଜନନୀରେ ଆରି କବଳୁ
ଫେରିନଯାଏ ଶୁଣ ସୁମୁଖି ଆହା
ନିରେଖିଥିବୁ ପଛେ ମୋ ବୀର ରାହା
ଗୋଟିକି ଗୋଟି ତହୁଁ ଭୂଷଣ କାଢ଼ି
ଫିଟାଇ ଖରେ ପାଟି ଦୁକୂଳ ଶାଢ଼ୀ
ଜବା- ଅଧରା ହାସେ ଫୁଟାଇ ଜବା
କହିଲା ଫିଟାଇ ତା କେତକୀ ଗଭା—

(ଚୋଖି)

ତୁମେ ତୀର ମୁ ତୂଣୀର ତୁମେ ଆଖି ମୁହିଁ ନୀର
ଅରାତି- ମୃଗୟୁବୀର, ମୁଁ କିଆଁ ଥିବି,
ହସି ହସି ପାଶେ ଥାଇ ମତାଇବି ଗୀତ ଗାଇ
ତତାଇ ମୁଁ ହେବି ନୋଇ, ମୁହିଁ ଯୁଝିବି;
ମୁଁ ନୁହେଁ କି ବୀର ତରୁଣୀ,
ହେବିନି ବି ଜନ୍ମଭୂଇଁ ପାଦେ ଅରଣୀ,
ନୁହେଁ ମୁଁ ସୁଭଦ୍ରାସତ ବାହିବି ତୁମରି ରଥ,
ସେବିବି ତ ହତାହତ ପାଇକ ଦଳ,
ଲାଛିଲେ ଫିରିଙ୍ଗୀ ଗୁଳି ଉତ୍‌ଫଣ ନାଗୁଣୀ ଫୁଲି
ଦଂଶିତ ମୁଁ ବୁଲିବୁଲି ତାହାରିବଳ
ମୁଁ ଯେ ଦେଶପ୍ରାଣର ଶିଖା
ମୁଁ କି ନୁହେଁ ବୀରଦଳ ମଧାର ଟୀକା !

x x x

ତହୁଁ ବୀର ବୀରାଂଗନା ସମରେ ଧାଏଁ
ଅରାତିସୂଦନ ବାନା ଶିହରୁଥାଏ;
(ତେଣେ) ଅଶ୍ୱତ୍ଥ ଚୂଡ଼ାରେ ତୁହାକୁ ତୁହା
କିଏ ସେ ଛାଡ଼େରେ ତୀର ଅମୁହାଁ,
ଫିରିଙ୍ଗୀ ସେନାର ମରମେ ଗଳେ,
ବଳିଷ୍ଠ ଗେରୁଆ ପାହାଡ଼ ଟଳେ,
ଗୋରା ସେନାପତି ମୁହିଁରେ
କିଏ କାହିଁ ବସି କି ବିଷ ବରଷି ଗୋରା ଗଉରବ ଖାଟରେ।

x x

ଧରାରେ କଳା ପ୍ରେତ ସମ କାତର
ଲୁହା ପୋଲର ପାଶେ ବୁଲଇ ଧାଇଁ,
ପୁଅର ଶନିବୁକେ ଅରକ୍ଷା ମାଆ,
ଲୋଡ଼େ କି ଶୂନ୍ୟେତିଳେ ଜୀବନ ସାହା।
ଝୁରେ ସେ କିଲ୍‌ବିଷରେ ବିଷାଇ ଦେଶ
କି ଦସ୍ୟୁ କାହୁଁ ଆସି ହେଲେ ପ୍ରବେଶ।
ନାଶିଲା ତତେ ମୋର ନୟନ ମଣି
ଜରତୀ ଜୀବନର ସପନ ଖଣି।
କିଏ ସେ ନେବ ମୋତେ କଢ଼ାଇ ବାଟ
ଲୁହାର ହାତେ ଚୂରି ଫିରିଙ୍ଗୀ ଥାଟ?
ଆକୁଳେ ଝୁରୁ ହାତେ ରଂଜକି ଧରି
ଲଗାଏ ଅଛିଗାରେ ସେ ରୋଷେଥରି,
ନିମେଷେ ଗୋରା ଥାଟ ଯାଏରେ ଉଡ଼ି
ଜୀବନ ହସ ହସେ ମରଣେ ବୁଢ଼ୀ
ସେ ମାଆ ଲୁହଠୋପା ଶିରରେ ବହି
ଉଲୁସି ଉଠେ ପୁଣି ଭାରତ ମହୀ

ରୁଧିରାକ୍ତ ପଦ-ଚିହ୍ନ ଲେଖି ତେଣେ
ଭବିଷ୍ୟତ ଝଲସାଇ
ପରାଜୟେ ପୁଣି ବିଜୟ କି ବୁଣି
ବୀରଦଳ ଯୁଝେ ଯାଇ



/ ୩୮୨ /

## କିଏ କହେ

କିଏ କହେ ମୋର ଶୂନ୍ୟ ରହିଲା ଜୀବନ ଝୁଲି !
ଆହରି ନାହିଁ ମୁଁ ସ୍ୱର୍ଣ୍ଣ କଣିକା ସ୍ୱପନେ ବୁଲି-
ପଥେ ପଥେ ଯେତେ କୁସୁମ ଫୁଟିଲା
(କଳ) ଛଳ ଗୀତି ଯେତେ ବିହଗ ରଟିଲା-
ନର୍ଝର ଯେତେ ଚରଣେ ଲୋଟିଲା-
ଆବେଶେ ଫୁଲି- !

ଆହରି ନାହିଁ ସ୍ୱର୍ଣ୍ଣ - ପରଶେ କାହାରି
ସରସ ପୁଲି !
କେତେ ସଖାସଖି ଆସିଲେ ଖେଳିଲେ ହୃଦୟେ ତୀରେ
ଆହୁଲା ପକାଇ କେଉଁ ବାସନାର
ଚଳିଗଲେ କାହିଁ ନୟନ ନୀରେ-
ପାଛୋଟି କାହାକୁ ହସ ହସ ମୁଖେ
ଶଙ୍କିତ ଅବା ଥର ଥର ବୁକେ
ଘେନି ନାହିଁ କି ସେ ସ୍ନେହ ଉସୁକେ-
ଅହେତୁ ବ୍ୟଥାରେ ପ୍ରଣୟ ତୁଳି-
କିଏ କହେ ମୋର ଶୂନ୍ୟର ରହିଲା ଜୀବନ ଝୁଲି
ଭରିନିକି କେବେ କେତେ କାମନାର ପୁଷ୍ପ (ବାଷ୍ପ) ଧୂଳି !

ନିଃଶ୍ୱାସି ଦିନେ (ସୁଖେ) କହିଥିଲି ଯାହା ବନ୍ଧୁଜନେ
ବୁମେରାଂ ସମ ବାଜେ ଆସି ତାହା ମରମ କଣେ !
ପୂର୍ଣ୍ଣ ବୋଲି ଯା ପ୍ରତେ ହୁଏ ତାହା ଶୂନ୍ୟ ସିନା
ଶୂନ୍ୟ ଶବ୍ଦେ ମୁଖରିତ ସିନା ସ୍ୱପ୍ନ ବୀଣା !

(ଅନୁଗୋଳ ଜେଲ୍)



# ଦୁନିଆରେ କହ କାହାକୁ କହିବି କଥା

ଦୁନିଆରେ କହ କାହାକୁ କହିବି କଥା
କାହା ପାଶେ ବସି ନିରୋଳେ ଗାଇବି ଗୀତ,
ଜାଣୁଚି ସବୁ ବଧିର ବିକଳ ମଥା
କେହି ନୋହେ ଜଣେ ବୁଝିଲା ଶୁଝିଲା ମିତ।

ଦେଖୁଚି ତ ସବୁ ମଶାଣି ପାଉଶ ତଳୁ
ମଲା ମଣିଷର ସାଉଁଟି ବସିଲେ ହାଡ଼
ମୁକୁଳା ଆଲୁଏ ତିଆରି ତିମିର ଚଳୁଁ
ସହର ଜଳାଇ ଲୋଡ଼ିଲେ ଜଙ୍ଗଲ ଝାଡ଼।

ଇତିହାସେ ଯେତେ ଶୁଣାଇଲେ କଳଗାନ
ଉପାସ ଭୋକରେ ତୋଳିଲେ ବିଜୁଳିବତୀ,
ଦଳିଲେ ଯେତେ ରେ ମରଣ ଅଭିମାନ
ଜୀବନ-ଶିଖରେ ତୋଳିଗଲେ ପାଟଛତି।

ମଣିଷ ମୁହଁରେ ଢାଳିବାକୁ ସୁଧା ଝରି
ମାଆର ଆଖିରୁ ପୋଛି ଦେବାଲାଗି ଲୁହ,
କେତେ କଉଶଳ କଳରେ ଦୁନିଆ ଭରି
ଖେଳାଇ ଦେଲେ ଯେ ଆଶାର ଉଜଳ ସୁଅ।

ପାଶୋର ଗଲେ ସେ ସକଳ ସ୍ମରଣ ପଥୁଁ
ରହିଲା କେବଳ ଆତତାୟୀ କୁଳ ଛବି
ପ୍ରତିକ୍ରିୟାଟିର ଆଗ୍ନେୟ ପରବତୁଁ
ଆସିବାକୁ ଖାଲି ମରଣ ଲାଭାରେ ଦ୍ରବି।

ଇତିହାସେ ସିନା, ସେଇରେ ପାଇଲେ ପୂଜା
ପୋଡ଼ିଲେ ଯେ ଯେତେ ଜନ ପଦ ଗାଁଆଁ ଶ୍ୟାମ,
ଯା ଲାଗି ଦେଲାରେ ସୃଜନୀର ମୁଖ ମୁଜା
ପୋଛି ଦେଲା ଯେହୁ ଜୀବନର ଜୟ ଗାନ।

/ ୩୮୪ /

ଯେତେ ଯେ ଆଣିଲା ନୟନୁ ଲୋତକ ଟାଣି
ଭୋକିଲା ମୁହଁରୁ ଓଟାରି ନେଲାରେ ଗ୍ରାସ,
ଲୋହିତ କରିଲା ରକତେ ସାଗର ପାଣି
ଭାଇ ଲାଗି ଭାଇ ମନରେ ଆଣଇ ତ୍ରାସ ।

ନ୍ୟାୟର ପୋଷାକ ଖୋଳରେ ପୂରାଇ ଦେହ
ଭୀରୁତାର ପାଶେ ଜଣାଇଲେ ଯେହୁ ନତି
ପାଇଲେ ସେ ଜନ କୁବେରନାଟିର ସ୍ନେହ
ମହତମା ପଦେ ଚରିଲେ ଗରବେ ରତି ।

ମଣିଷ ମଥାରେ ପକାଇଲେ ଯେହୁ ତାଲା
କପଟ କଥାରେ ଗାଇଲେ ବୟାନ ମାନ,
ସେଇଟି ପାଇଲେ ବିଳାସ-ଆଦର ଡାଲା
ବୁଦ୍ଧିରମହଲେ ସେଇ ହେଲେ ସବୁ ଜାଣ ।

ପ୍ରୟୋଗ ଶାଳାରେ ପୁହାଇ ଜାଗର ରାତି
ଚଉପାଶେ ଦେଖି ସଙ୍ଗୀନ ମୂନ ରାଜି,
ଜୀବନର ଲାଗି ରସାୟନ ଖୋଜୁ ସାଥୀ
ଗୋଲା ବାରୁଦ ଯେ ଭୟରେ ସୃଜନଲେ ଆଜି ।

ତ୍ରାଣ ନ ପାଇଲେ ହିଟଲରୀ ଦାବାନଲୁ
ସେ ଜନ ସାଥିରେ ହିଟଲର ଲାଗି ଖଟି,
ପ୍ରାଣ ଯେ ଆହାରେ-କାଳର ଗରଭ ତଳୁ
ପିଠିରେ ତାହାର ନ ବସନ୍ତା କିଆଁ ଚଟି ।

କହରେ ଦୋସର କହିବି ଆଜି କି କଥା
ଶୁଣିବ କି କେହି ହତଭାଗାଟିର ଡାକ,
ଦେଖୁଚି ତ ସବୁ ବଧିର ବିକଳ ମଥା
ଦେଖୁଚି ତ ଆଗେ ମରିଚି ମଡ଼ାର ଥାକ
ମୋ କଥାର ଲାଗି ରହିଚି ଖାଲିରେ ଘୃଣା !

[୧୯୪୧ ମେ-ଜୁନ୍ ଅନୁଗୋଳ ଜେଲ୍]



# ଜୀବନ ବାର୍ତ୍ତା ତୁମର ଆଣିଚ ବହି

ଜୀବନ ବାର୍ତ୍ତା ତମେଇ ଆଣିଚ ବହି-
ହେ ମୋର ମୃତ୍ୟୁ
(ଆମର ମୃତ୍ୟୁ)-
ବିଶ୍ୱ ଭୁବନ ଜୟୀ !
ମାତୃ ଗରଭେ ଖେଳିବି (ମୁଁ) କାଲିର ଭ୍ରୁଣ
ମୁଁ ଏକ ମାନବ ଶିଶୁ-
ଜନ୍ମିବା ଲାଗି - ରଚିଲି ଯେତେକ
ସୁଗୋପନେ କୋଳାହଳ !-

ଅମୃତ ଆଶ ଆହରି-
ଅଦୃଶ୍ୟ ଦଶ ଦିଶୁ
କଣ୍ଠେ କି ମୋର ଢାଳୁଥିଲ ଅବିରଳ !
ଛୁଇଁଲ ତୁମେ ହିଁ ପୁଷ୍ପ କୋମଳ ଦେହ-
ଆଲୋକର ଲାଗି
ସୃଜିଲ ମରଣ (ଗଭୀର) ସ୍ନେହ !

ଶୟନ କକ୍ଷେ ସାଥୀ-
ମୂର୍ତ୍ତି ତୁମରି ନିରେଖି ସଙ୍ଗୋପନେ !
ଶଙ୍କିତ ପ୍ରାଣେ ଯାପିଲି ଜ୍ୟୋସ୍ନା ରାତି-
ତୁମକୁ ହେଳି ମୁଁ ବୁଲିଲି ସ୍ୱପ୍ନବନେ !

ଶୁଣେ ଯେବେ ପ୍ରିୟ
ଆର୍ତ୍ତ ପୀଡ଼ିତ ରବ !
କରୁଣ ଆବେଗେ ହୁଏ ମୁଁ ଆତ୍ମହରା
ଦେଖେ ଯେବେ ପ୍ରିୟ
ସ୍ୱର୍ଣ୍ଣ ଦିବସ (ଶିଶୁର) ଶବ
କେତେ ଜନନୀର ନୟନ ଅଶ୍ରୁଝରା- !

/ ୩୮୬ /

ତରୁଣ ଅଙ୍କେ ତରୁଣୀ ନରଚୁଁ ଖେଳା-
ପୁଷ୍ପ ଶୟନେ ଲୋଟି
ତୁମେ ଯେବେ ଆସ ସହସା ସଘନେ ଘୋଟି
ସରେ କି ସରେନା-ସୃଜନ ଲୀଳାର ବେଳା- !

ହେ ମୋର ବନ୍ଧୁ ବିଶ୍ୱ ଭୁବନ ଜୟୀ-
ତୁମେ ହିଁ ଅମର !
ମର ଏ ଜୀବନ
ସେ କି ଅକପଟେ-କଠୋର ସତ୍ୟ
ତମେ ହିଁ ହେଉଚ କହି !

(୧୯୩୭)



# ହେ ମହାନଗରୀ ରାଣୀ

ହେ ମହାନଗରୀ ରାଣୀ !
ପ୍ରଣୟ ଆଶାୟୀ ଆସିଲେ ହସି ମୁଁ ପାଶେ
ଆସିଲେ ହସି ଗୋ ପ୍ରୀତି-ବିଭ୍ରମ ପ୍ରାସେ,
ନୟନ ଛୁଇଁ ଗୋ ମୃଦୁ ନିର୍ମଳ ହାସେ,
ହୃଦୟେ ନେଇ ନ ମାନି-
ହେ ମହାନଗରୀ ରାଣୀ !

ପାଛୋଟି ନେଇନ ତୁମର ଜୀବନ ପଥେ,
ପେଷି ଗୋ ମୋ ଲାଗି ଯନ୍ତ୍ର-ଶିବିକା ରାଶି,
ଗୋଲାପ ଗୁଚ୍ଛେ ସଜାଇ ଦୁଆର ଦେଖ
ବୀଣାରେ ବୀଣାରେ ଉଠିନ ଅଧୀରେ ଭାଷି,
ବହିନ ମୋ ଲାଗି ସ୍ୱର୍ଣ୍ଣ ଭୂଷଣ ଥରେ
ନିଭୃତ ପୁରେ ସ୍ନିଗ୍ଧ ଆଲୋକ ତଳେ,
ଚପଳ ଚରଣେ ଲାସ୍ୟ ବିରଚି କାହିଁ,
ଭିଡ଼ି ନ ଭୁଜ ତ ଭ୍ରୁ-ଭଙ୍ଗିମା ଛଳେ-
ମିଳନ ବେଳାର ଭୀତି-କଂପିତ ଗଳେ ।

ରତ୍ନବଣିକ ଲୋଟିଲେ ରତନ ସାଜେ
ପ୍ରୟର ଲେହି ଗୋ ରୌପ୍ୟ ପସରା ଘେନି
ପାଶୋରି ପ୍ରୀତିର ସଂଭ୍ରମ ଭୀରୁ ଲାଜେ
ନିର୍ବାସ ଦେହେ ନଚାଇ ଦେଇଛ ବେଣୀ
ବାହୁଡ଼ୋରେ କାର ଧରାଦେଇ ଆପେ ଆପେ
ହେ ମହାନଗରୀ, ପଣ୍ୟବନର ଏଣୀ ।

ଶିଳ୍ପୀ ମନର ଆଶାର ଲହରୀ ଖାଲି
ଚିକ୍କଣ ତୁମ ଲୌହ-ଦେହଳି ଦେହେ
ସନ୍ତାପେ କାହୁଁ ଯାଇଚି ନିମିଷେ ଢଳି
ପଶି କି ପାରିଚି ନିଗୂଢ଼ ଚିତ୍ତ-ଗେହେ !

ହେ ବର-ନାଗରି, ଆସିଲେ ପ୍ରଣୟୀ ଯୁବା
ଆମ୍ର ମକୁଳେ ବିଳସି ବିଳସି ସୁଖେ;
ବିଳାସିନୀ ତୁମେ ହୁଅ କି ତା ପାଶେ ଉଭା,
ସୁରାର ଗଂଧ ନଥିଲେ ତା'ହସ ମୁଖେ !

ଆଜି ଘାତକର ରଣ ଜାତକର ମୋହେ
ବିପଣୀ ଖୋଲିଚ ପ୍ରେମର ଛଳନ ମୟି
ଦଳିଚ ଲଳିତେ କେତେ ପ୍ରଣୟର କୋହେ
ଆପଣା ପୂଜାର ପୁଷ୍ପେ ଭ୍ରମରେ ଦହି

ଜାଣ କି ଉଠନ୍ତୁ ଆଜି ମୋ ମର୍ମ ରୋଳ
ଥରିବ ତୁମର ପ୍ରଣୟ-ମତ୍ତ ହିଆ
ଶୋହିବନି ଆଉ ପଣ୍ୟ-ବେଭାରୀ କୋଳ
ହେବ ନାହିଁ ହୀନ ରସ-ଲାଳସୀର ପ୍ରିୟା ।

ଆସୁଚି ସେଦିନ ଏଇ ମେ ନିହାଣେ ପୁଣି
ତନ୍ୱୀ ଗୋ ତୁମ ତନୁ ନେବ ନୂଆ ରୂପ
ରସ-ବହ୍ନିରୁ ଉଠ ବୈଦେହୀ ତୁମେ
ମୋ କର-ତୁଳୀରେ ରଚିବ ମୃତ୍ୟୁ-ଯୂପ ।-

ମଣ ନାହିଁ ମୋତେ ଭିକ୍ଷୁକ ଆଗୋ
ବିଶ୍ୱ ବିଜୟୀ ମୁହିଁ-
ଧୂମ୍ରଳ ଝଡେ ଦୋହଲେ ପତାକା ମୋର
ଜଳରେ କଳରେ ନିପୁଣ ନିହାଣ ବାଜେ-
ବାନ୍ଧବୀ ଆଉ ହୁଅନା ବିଳାସେ ଭୋଳ !

ଆହ୍ୱାନ ଶୁଣ ଆଜି
ସହଜ ଗତିରେ ଛନ୍ଦ ଗୋ ନିଅ ମାଜି,-
ହେ ବର ନାଗରି, ମହାନଗରୀ ରାଣୀ,-
ସୃଜନ ଲୀଳାରେ ମୁଗ୍ଧ ମାନସ ମୋର
ଝରା ହାସ୍ୟ ରୋଳ
ନେବି ମୁଁ ନିରବେ, ନେବି ମୁଁ ଗରବେ ଟାଣି ।



# ହେ ମହାଜାତିର ମହାସ୍ଲୋଗାନ

ଛାତ୍ରବୁକୁରେ ବାଜିବ ବୋଲିକି ଗୁଳି
ତୁମେ ଲଢୁଥିଲ ତୁମେ ମରୁଥିଲ, ସାଥି !
ଶିଳ୍ପୀ ହାତରୁ ଖସିବ ବୋଲିକି ତୂଳି
ତୁମେ ଚଢୁଥିଲ ଲୁହେ ପୂର୍ଣ୍ଣିମାରାତି ।
ବନ୍ଧା ହେବାକୁ ଆଇନ୍ ଫାଶରେ ଚାଷୀ
ଶ୍ରମିକ ହେବାକୁ ବୋମାର ଶୀକାର, ପ୍ରିୟ !
ଆତ୍ମା ତୁମର ପ୍ରଳୟରେ ଥିଲ ଝାସି
ରଚୁଥିଲ କେତେ କଳପନା କମନୀୟ ।

ବୁଦ୍ଧିଜୀବୀ ଏ ମାର୍କିନ-ଧନ ପାଶେ
ହେବେ ବିକ୍ରୀତ ହେବେ କି ଭୃତ୍ୟ ବୋଲି
ତୁମେ କି ବହ୍ନିଦୀପ୍ତ ଅତୀତେ ଥରେ
ଦେଉଥିଲ ତୁମ ଚେତନା ଉସ ଖୋଲି ।

ଦୁର୍ନୀତି ଯେତେ ରାଜୁତି କରିବ ଦିନେ
ପୁଞ୍ଜିର ଢୋଲ ବାଜିବ ସମାଜ ପଥେ
ସେଥିପାଇଁ ସାଥି ! ସ୍ୱାର୍ଥ ବିଳାସ ଦିନେ
ବରିଥିଲ ବନ୍ଧୁ ଦୁଃଖ କଷଣ ସତେ ।

ସାମ୍ୟର ନାମେକ୍ଷମତା ଅନ୍ଧ କାହିଁ,
ପୃଥିବୀରେ ହେବେ ସାମ୍ୟନାଶକ ବାରେ ।
ସାବାସ ଲଭିବେ ଯେତିକି ରକ୍ତପାୟୀ,
ସହିଥିଲେ ତେଣୁ ଗଞ୍ଜନା, ଅବିଚାରେ !

ତୁମ କଳପନା ସତ ଏ ବନ୍ଧୁ ଯେତିକି ଲଭୁଛି ରୂପ
ଅଗ୍ରତେ ଯେତେ ଚାଲିଛି ତୁମର
ସାମ୍ୟ-ସେନାନୀ-ଦଳ
ସେତିକି କ୍ରୁଦ୍ଧ, ପ୍ରଖରୁ ପ୍ରଖର ଏବେ
ନବ ପ୍ରତିକ୍ରିୟା-ଅନ୍ତିମ କୋଳାହଳ ।
ନବୋପନିବେଶ ଗୁପ୍ତରେ ହୁଏ ଗଢ଼ା
ଅର୍ଥ ଜାଲରେ ବନ୍ଧା ହେଉଛି ଦେଶ,
ମାତୃ କୋଳରେ ଶିଶୁର ମାଂସ ବଢ଼ା
ଧନିକ ଧରୁଛି ମାୟାବୀ ଦୈତ୍ୟ ବେଶ ।

ଆମେରିକାଟିର ଲୌହ ଚରଣ
ବୁଡୁଛି ବୁଡ଼ିଲା ଅନା
ଭିଏତନାର ରକ୍ତସାଗରେ
ଆଉକି ପାରୁଚି ଉଠି ।

ଉପରୁ ଯେତେ ସେ ବର୍ଷୁ ମରଣ ପଛେ
ସେତିକି ଭିତରେ ବିରୋଧ ଉଠୁଛି ଫୁଟି
ଜନତା ପ୍ରହାରେ ଶକ୍ତି ଯାଉଛି ତୁଟି ।

ହେ ମହାକାତିର ହେ ମହାସ୍ଲୋଗାନ ।
ତୁମେ କି ଉଠୁନ, ତୁମେ କି ଉଠୁଛ
ମରମୁ ମରମେ ବାଜି ?

ଆଜି ଯେବେ କେତେ ସମାଜବାଦର ଦେଶେ
ନବ ସୃଜନର ରଶ୍ମି ଝରୁଛି ଜୀବନ ପୁଷ୍ପେ ସାଜି !



## ଶପଥ

ଲୁହ ଦେଇ ଯାହା ଗଢ଼ିଲୁ ଆମେରେ
ଲୁହ ଦେଇ ତାହା ରଖିବୁ
ସ୍ୱାଧୀନତା ଧନ ଜୀବନ ଆମର
କେହି ଯଦି କାହିଁ ବିଗାଡ଼େ ପାମର
ହେଉ ଯେଡ଼େ ବଡ଼ ଓର ଦେଖି ତାର
ଛକିବୁ ରେ ତାକୁ ଛକିବୁ ।
ଆମେ କି ନ ଜାଣୁ ରାଜା ଜମିଦାର
ଦଳବଳ ଘେନି ବୁଣେ ହାହାକାର
ଜମିଜମା ସବୁ କରେ ଆପଣାର
(ତାର) ନାହୁଲାହାସରେ, ଡରାଣ ଧାସରେ,
ଭଳିଯାଇ କେବେ ଠକିବୁ ?
ଆମେ କି ଶୁଣିନୁ-

କଲେଜ ଦୁଆରେ ପକାଇ ତାଲାରେ
ପକାଇ ତାଲା
ମନ୍ତ୍ରୀ ଲୋଡୁଚି ବେଶି ପାଠପଢ଼ା ବନ୍ଦ ହେଉରେ
ଲାଗିଥାଉ ତାର ପ୍ରଚାର ପାଲା
ଆମେକି ଜାଣିନୁ-
ଧର୍ମଘଟର ହତିଆର ଗୋଟି
ସବୁ ଶ୍ରମଜୀବୀ ମୂଳିଆଟିର,
ଛଦ୍ମଛଳେ ମନ୍ତ୍ରୀ ଛଡ଼ାଏ

ପୁଞ୍ଜିପତିର ଟେକାଇ ଶିର
ସ୍ୱାଧୀନତା ସାଥେ ଏହିତ ଚଡ଼କ
କ୍ଷମତାର ପଥେ ବିଷମ ମଡ଼କ
ଲଢ଼ିଲଢ଼ି ଯାହା ଗଢୁଛୁ ଆମେରେ
ଝଡ଼ିଯିବ ସେ'କି ସଢ଼ିଯିବ ?
ରୋକିବୁରେ ଆମେ ରୋକିବୁ,
ନୀତି ନୂଆ ନୂଆ ଜୀବନ ଗଢ଼ାରେ
ଆମେ କିରେ କେବେ ଥକିବୁ ?
ଲୁହ ଦେଇ ଯାହା ଗଢ଼ିଛୁ ଆମେରେ
ଲୁହ ଦେଇ ତାହା ରଖିବୁ ।

■ ■

## ଶ୍ରାବଣ ସଙ୍ଗୀତ

ଅତନୁ
ଆଜି ଶ୍ରାବଣ ସଞ୍ଜେ ଯକ୍ଷ-ପ୍ରିୟାର ବିରହ ବକ୍ଷେ ଭରି
ଗଗନେ ଗଗନେ ବିଛାଇ ଦେଲା କେ ମେଘର ନୀଳାମ୍ବରି
ବିଦ୍ୟୁତ ଶିଖା ଦୂର ଦିଗନ୍ତ କୋଣେ
ଯୁଗାନ୍ତରର ବିତରେ ବାରତା ସମୀରଣ ସନସନେ;
କେତେ ବିଷାଦର ଦୀର୍ଘ ଶ୍ୱାସେ, ପୁଲକର ଶିହରଣେ;
ଦୂର ଦିଗନ୍ତ କୋଣେ
ହୃଦୟ-ଶୋଣିତ-ଶତଦଳକୁଁ ପଢ଼େ କବିତା ଶିଶିର ଝରି ।

ସୁଦୂର ସରଣୀ ଘନ ତମସାର ତରଙ୍ଗେ ଯାଏ ମିଶି
ଆଜି ଶ୍ରାବଣ ଅର୍ଦ୍ଧନିଶି;
ଦାରୁଣ ଦିନର ହେ ଅଭିସାରିକା !
କମ୍ପିତ କର ପଲ୍ଲବେ ବାହି ଶଙ୍କିତ ଦୀପ-ଶିଖା
ଚାଲ ଯାହା ଆଶେ ଲେଖେ ସେ ତୁମର ଭାଲେ ବିଦ୍ୟୁତଟିକା
ପୀରତି ଇଙ୍ଗିତିକା
ଆସନ୍ନ ବରଷଣେ ବୁଭୁକ୍ଷୁ କାମନା ଉଜାଡ଼ି କରି ।



## ମୁକ୍ତି ଯୁଦ୍ଧ

ଦଳିତ ଜନର ଆର୍ତ୍ତ ଆକୁତ ତଳେ,
ତୋହରି ତୀକ୍ଷ୍ଣ ନୟନ-ଅସ୍ତ୍ର ଝଳେ !
ଅନ୍ଧ, ବଧିତ, ଖଞ୍ଜ ତୋହରି ବାଣୀ,
ନୀରବ ହର୍ଷେ ହୃଦୟେ ନେଉଛି ମାନି,
ଥରୁଛି ଅତ୍ୟାଚାର,
ରକ୍ତତାରାରେ ତୋହର ଅଲୋକ-ଡାକେ
ଲୁପ୍ତ ହେଉଛି ଦୈନ୍ୟର ହାହାକାର ।

ବ୍ୟଥିତ ମନରେ ମାତୃ-ସେନେହ ବୋଳି,
ମଥିତ ଚିତ୍ତେ ବନ୍ଧୁ ପରଶ ଗୋଳି,
କ୍ଲାନ୍ତ ନୟନେ ପ୍ରେୟସି ସ୍ପର୍ଶ ସମ,
ଝରୁଚି ତୋହର ରଶ୍ମି ସକଳ କ୍ଷଣ ।
ତୁଟୁଚି ଶଙ୍କା ଭୟ !
ଫାଶିର ମଞ୍ଚେ ଜୀବନ ଗାଉଛି ଜୟ !

ସତ୍ୟ ବାଣୀ ତୋ, ବିଶ୍ୱେ ବିଳୟ କାହିଁ ?
ଜୀବନ ରନ୍ଧ୍ରେ ଉଚ୍ଛଳ ସୁଖେ ଥାଇ,
ଦୋଳୁଛୁ ଊର୍ଦ୍ଧ୍ୱେ, ନଗ୍ନ ଶିଶୁର ହାସେ,
ଧରଣୀ ଧୂଳିର ସବୁଜ-ଶସ୍ୟ-ଭାଷେ,
ତୁହି ରେ କହୁଛୁ କଥା !
ବଜ୍ର ଶପଥ ଦଳିତ ବକ୍ଷେ ଭରି
ଉଚ୍ଚ କରୁଛୁ ଦୁଃଖେ ବିନତ ମଥା ।



## ଏଇ ଦାଆ ଧାନ କେଣ୍ଡା ମୋର ଧନରେ

ଏଇ ଦାଆ ଧାନ କେଣ୍ଡା ମୋ ଭାଇରେ !
ଏଇ ଦାଆ ଧାନ କେଣ୍ଡା ।
ଦୁନିଆ ଯାକର ଲହୁଖିଆ କୂଳେ
କରିଦିଅ ନିତି ମେଣ୍ଢା
ମୋ ଧନରେ କରିଚିତ କେତେ ମେଣ୍ଢା ।
ଯେତେ ଖରିମାଟି କରୁ ପଛେ ଅରି
ଯେତେ ସେ ହେଟାଳ ମାରୁ,
ମଟରେ ମଟରେ ବୋହି ଟଙ୍କା ଥଳି
ଧୂଳିରେ ଧୂଳିରେ ଘାରୁ ରେ !
(ତତେ) ଭୋକରେ ଶୋଷରେ ମାରୁ ।
ଦିଶୁ ଯେତେ ଦୁରୁଁ କିମ୍ଭୀର ପରି ରେ
ଏହା ଆଗେ କୁଜି ଗେଣ୍ଡା
ମୋ ଧନ ରେ ! ଏଇ ଦାଆ ଧାନ କେଣ୍ଡା ।
ତୋ ଧନ ଖାଇ ଯେ ଧନୀ ବୋଲକରା
ବିଙ୍କୁ, ବିରଳାର ଛାଇ,
ଟାଉଟରୀ କରି ଅମଲା ହକରା
ଧନୀର ଫୁଟୁକି ହାଇ, ମୋ ଧନ ରେ !
ରାଜା ରାଜୁଡ଼ାର ହାଇ !
ଏହାକୁ ଧରିତୁ ତୋ ଲୁହ ଲୁହରେ
ଚେତେଇ ଚେତେଇ ତେଣ୍ଡା,
ମୋ ଧନରେ ! ବୁଡ଼େଇ ବୁଡ଼େଇ ତେଣ୍ଡା ।
ଏଇ ଦାଆ ଦେଖି ଡରି ଯାଏ ଅରି,
ଏଇ ଧାନେ ହସେ-
ହସେ ବସୁଧାର ପ୍ରାଣ,
ଏଇ ଦାଆ ଥିଲେ ତୋ ହାତେ ଧରି ରେ,
ସବୁ ଦୁଃଖୁଁ ପରିତ୍ରାଣ ।
ଏଇତ ସଲଖେ ଚୋରଙ୍କୁ ନିତି ରେ !
(କେତେ).. ବୁଢ଼ା ଲୋକେ କରେ ଭେଣ୍ଡା
ଏଇ ଦାଆ ଧାନ କେଣ୍ଡା ।



# ଅରସିକେଷୁ––

ବନ୍ଦଇ ସାରଳା ମାଗୋ ଶ୍ରୀ ସାରଳ, ଦାସ
ଅପ୍ରକାଶ୍ୟ କଥା ପଦେ କରିବି ପ୍ରକାଶ ।
ତୁମରି ସୁପର-ଇଗୋ, ତୁମରି କମ୍ପ୍ଲେକ୍ସ
ନାହିଁ ମୋର କାୟାମାୟା, ନାହିଁ ମୋର ସେନ୍ସ ।
ମୁଁ ନୁହେଁ ଭଅଁର ମାଗୋ ମୁଁ ନୁହେ ଚଅଁର,
ଲୁହର ସରିତେ ଘୂରେ ମୁଁ ହସ ଡଅଁର ।
ସୁଧୀଜନ ପାରି ହେଉଁ ସାହିତ୍ୟ-ନାଆରେ,
ଥରେ ଅଧେ ହାବୁଡ଼ିଲେ ମୋହରି ରାହାରେ
ମନେ ଗୁଣି ଯେଉଁ କଥା ଗାଇଯାନ୍ତି ଆନ,
ତୁମରି ପ୍ରସାଦୁ ତାହା କରିବି ବୟାନ ।
ନ ଲାଗିବ ମିଠା ଏତ ଚିରେଇତା ପିତା,
କବିତା କଣ୍ଟର ଅରି ସାହିତ୍ୟକୁ ହିତା ।
ନ ଧରିବ ଦୋଷ ମୋର ଆହେ ସାଧୁଜନ
ଦୋଷୀ ହେଲେ ହେଉ ପଛେ ମୋର ପୋଡ଼ା ମନ ।
ସବୁ କବି ଯଶ ଆଦି ନ ପାରୁଚି ଗାଇ
କୃତାଞ୍ଜଳି ପୁଟେ କ୍ଷମା ମାଗେ ନିଉଛାଇଁ ।
ଉତ୍କଳ ସାହିତ୍ୟ ବନ ଶଇଳେ ବିହରି,
ଭାରତ ମହୁଡ଼େ ମୋହିଁ ଦେଖୁଚି ଶିହରି ।
ଏକାମ୍ର ଟାଙ୍ଗୀରେ ତୁମ ଶ୍ରୀ ରାଧାକୃଷନ୍
ନିର୍ଜର ନେହେରୁ ପୁଣି ଦୁଃଖର ଦୁଷ୍ମନ ।
କାହାକୁ ଖୋଇବେ ଆମ୍ଭ କାହାକୁ ବକ୍ତୃତା
ହୃଦୟେ ତାଙ୍କର ବହି ସମତା ସୁକୃତା ।
ଅବଧାନ ହୋଇ ତାଙ୍କୁ କରୁଚି ବର୍ଣ୍ଣନ,
ବର୍ଣ୍ଣନ ନୁହେ ଯା ଖାଲି ବର୍ଣ୍ଣର ଘୂର୍ଣ୍ଣନ ।
'କୋଣାର୍କେ' ରାଗରେ ଭାଷାଦିଗ୍‌ପାଳେ ଅନାଇ
ଦୋଷାଦୋଷ ନ ଘେନିବ ହେ କବି ଗୋସାଇଁ ।

[ନୀଳକଣ୍ଠ ଦାସ]

ଚେଇଁ ଉଠିଲକି ବାବୁ ହେ,
ମୁଁ ତ ପଡ଼ି ନି' ଶୋଇ,
ପ୍ରକାଂଡ଼ ମୋ 'ଇଗୋ' ବୋଝକୁ
ମୁଁ କି ବସିନି, ବୋହି।
ସହଜିଆ ମୋର ସଂଭାଷେ
ଖାଲି ଯାଉନ ଭାସ,
ତୁମେ କି ମୋ ତହୁଁ ଅଶ୍ଳୀଳ
କାଳକଂଠର ଦାସ।
କ୍ରମ ପରିମାଣ ମୋହର
ସତେ ସାହିତ୍ୟେ ଆଜି,
ପୁଷ୍କଳ ମୋ ରସ ବିରସେ
ସାଧୁ ଚୋଦନା ରାଜି,
ଭଲା ରାଜନୀତି କଲି ମୁଁ
ସାକ୍ଷୀଗୋପାଳ ହେଲି,
ଚେଇଁଲି କି ବାପ 'କୋଣାର୍କେ'
ପଢ଼େଁ ନିଜକୁ ମେଲି।

[ଆର୍ତ୍ତବଲ୍ଲଭ ମହାନ୍ତି]

କାହୁଁ ନୀଳକଣ୍ଠୀ ମେଳା
ତୁଳସୀ କଣ୍ଠିରେ ମାରିଲା ଠେଲା,
ଆରତରେ।
ହରେକୃଷ୍ଣ ସିନା ଭେଳା।
ପ୍ରାଚୀ ପୋଥି ଧାର ଶୁଖେ
କୃଷ୍ଣ-କୃପାସିନ୍ଧୁ ଆଉ କି ଦୁଃଖେ
ଆରତରେ।
କୃତି ବିପରୀତ ମୁଖେ —
ଗରଜି ଜୀବନଧାକ
ଅରଜିଲି ଛାତ୍ର ଥାକକୁ ଥାକ
ଆରତରେ।
ଛତରାରେ ପରିପାକ —

ଅତିବଡ଼ୀ ଚିତା କାଟି
ବୁଢ଼ାକାଳେ ଫିତା ପ୍ରାକୃତେ ଚାଟି
ଅପ୍ରାକୃତେ ଫିଟା ଟି।
ଆରତରେ।

[ହରେକୃଷ୍ଣ ମହତାବ]
ମୁଁ ମହାନାଟକ ଏକ
ଉତ୍କଳର ମୁଁ ଏକ ଝଙ୍କାର
ଅଭିନୀତ ହୁଏ ମୁହିଁ
ମୋହରି ଅଙ୍କରେ ନିତି
ପ୍ରତିଭାର ଉପନ୍ୟାସେ, ପ୍ରପଞ୍ଚ ମଞ୍ଚରେ
ସାହିତ୍ୟର ଦରବାରେ
ଉତ୍କଳର କଟିତଟେ ଗୁଡ଼ାଇ ଦରବା
ଯାତ୍ରାର ଦ୍ୱାରୀ କି ସତେ ?
ମଡ଼ର୍ଣ୍ଣ କାହାଣୀ ପୁଣି
ଉତ୍କଳର ଇତିହାସ !
ସବୁ ମୁହିଁ କିଛି ନୁହେ-
ଅପୂର୍ଣ୍ଣ ଶୂନ୍ୟତା ବୁକେ।
ସାହିତ୍ୟ, ସାହିତ୍ୟେ ପୁଣି ରାଜନୀତି
ସାରୂପ୍ୟ ପ୍ରୀତିରେ।
ସବୁ ମୁହିଁ, କିଛି ନୁହେ,-
ତୃଷ୍ଣାହର, କୃଷ୍ଣ-ହରେ ହରେ !

[ଲକ୍ଷ୍ମୀନାରାୟଣ ସାହୁ]
ଚାଲିଯାଏ ଦାଣ୍ଡେ
ଚାହିଁଦିଏ ଚାଣ୍ଡେ
"ଚୋଖାଚୋପକନ ଜୁତା ରହିଚି ମୋ ମୁଣ୍ଡେ।"
ମୁଁ ଯେ ହ୍ୱିଟ୍‌ମାନ, ମୁଁ ଯେ ହୁଇଟ୍ (ଗହମ)ମାନ୍,
ମତେ ଯେବେ ତୁମେ କରିବ ସ୍ନାନ
ଦେଖିବ ମୁଁ ଅଛି ତୁମରି କବିତା
ହୋ ହୋ ତୁମ ତୁଣ୍ଡେ।
ଆଜି ଏକାଡେ଼ମୀ କଦଳୀ କାନନ
ମଥି ମୋ ଗଜର ଶୁଣ୍ଡେ।

[ ରାଧାନାଥ ରଥ ]

ସାହିତ୍ୟେ କି ଶୈବ୍ୟା ମୋର ଲୋତକ-ମୁଖିନୀ
ସାହିତ୍ୟେ କି ନାହିଁ ମୁଁ ଗୋ, କି ଦୁଃଖେ ଦୁଃଖିନୀ ।
ଧଇଲି ସାହିତ୍ୟ ତେଜି ସମାଜ-କୋଥଳୀ
ଲେଖିଲି କଥାର ଭାଷ୍ୟ କୋପରେ କୋହଳି ।
ହେ ଦାସେ ଆପଣେ କିମ୍ବା ଦିଶୁଚ ବିମନା
କର୍ମ ଜଞ୍ଜାଳେ ଭୁଲନି ଜୀବନୀ ରଚନା
ପଡ଼ିଚି ଅକଳେ ନାଗ ଚୂଡ଼ୁଦ୍ରା କାମୁଡ଼ି,
ଛାଡ଼ିବାକୁ ମନ କରି ପାରୁଚି କି ଛାଡ଼ି ?
ଅନ୍ତରର କୋହ ସିନା ମରୁଚି ଅନ୍ତରେ
ମୂର୍ଚ୍ଛନା କି ତୋଳେ ଗୀତା ସାହାରା ପ୍ରାନ୍ତରେ ?

[କାଳିନ୍ଦୀଚରଣ ପାଣିଗ୍ରାହୀ]

ସବୁଜ ହେଲି କେତେ ଲୋହିତ ହେଲି,
ମାଟିର ପୋଷେ କେତେ ଲୁହା ତ ଦେଲି ।
'ଆଜିର ମଣିଷ' ମୁଁ କାଲିର ଖେଳେ,
ସ୍ୱପ୍ନ ପୁରୀ କୋଳେ ସ୍ୱଜନ ମେଳେ ।
ସୁରରେ ସୁର ସାଧି,
ନୁହେ କା ବାଦୀ
ବେତାରେ ଦୋଳେ ବସି ବେତାଳେ ଏକା,
ବୁଲେଇ କହେ ମୁଁ ତ କହି ନ କହେ,
ହସି ନ ହସେ ନିଜ ହୃଦୟ ଦହେ;
ଅଧୁନା-ସାହିତ୍ୟେ ମୁଁ ଧୂନିର ଠେକା ।।

[କାଳୀଚରଣ ପଟ୍ଟନାୟକ]

ତାକ୍ ଧିନ୍, ତାକ୍ ଧିନ୍,
ଥାକ, ଥାକ, ତାକ ଧିନ୍ ।
ଓଡ଼ିଶୀ ରାଗିଣୀ ମୋର ଦିଲ୍ଲୀର ବାଟ ଘାଟେ
(ହିନ୍ଦୀର ତୁଠେ ତୁଠେ)
ବାଙ୍ଗଲାୟ ରିମ୍ ଝିମ୍ ।

/ ୩୯୮ /

ଏକ ତାଳି, ଆଠ ତାଳି,
ହାଏ ଓ, ହାଏ ଓ, ହାଏ ଓ
ଯା ବୁଲି, ଯା ଝୁଲି, ନାଟମୟୀ ପାଟଫୁଲି;
କାଳୀ ବିନୁ ଆର୍ଟ ନାଇଁ, ଅଭିନୟେ ପାର୍ଟ କାଇଁ ?

କଳାସବୁ ପିଇ ମୁଁ ତ
ଚାହିଁ ରହେ ଚାହେଁ ଓ
ଠାଣି ମାଣି ବଢ଼ ପ୍ରିମ୍
ତାକ୍ ଧିନ୍ ଧିନ୍।

[ବୈକୁଣ୍ଠନାଥ ପଟ୍ଟନାୟକ]

ଦିନେ ଦେଖି କା ଗୋଲାପୀ ଅଞ୍ଚଳ
ହେଲି ଶିଶୁ ପରି କେତେ ଚଞ୍ଚଳ,
ଆଜି ଶୁଭ୍ର ବାଦଲ ବିଳାସିନୀକୁଳେ
ଦୁଆର ହେଲା କି ରୁଦ୍ଧ ?
କେତେବେଳେ ମୁଁ ଯେ ବଜ୍ରବାଦଲ
କେତେବେଳେ ତେଣୁ ବୁଦ୍ଧ।
ମୁଁ ଯେ ଜୀବନରେ ମହାକ୍ଷୁବ୍‌ଧ,
ଅପାପବିଦ୍ଧ, ଶୁଦ୍ଧ।

[ମାୟାଧର ମାନସିଂହ]

କବିତା ବନିତା ଗୋଳ ମୁଁ ସୁଜେ
'କୃଷ୍ଟି-କଷଣ 'ସୃଷ୍ଟି' ମୁଜେ
ସ୍ୱାଧୀନତା ପରେ ଫାଇଦା ଫିତା
ମୁଁ ରତି-ଗୀତା।
ସବୁଜ ଚିର ମୁଁ ସବୁଜେ ଚିଢ଼େ,
ଲୋହିତ ଦେଖିଲେ ଅଧର ପୀଢ଼େ,
ବଉଳବନରେ ବିଳସି, ବାଦୀ
କବିତା ସାଧି।
ମାର୍ଜିନୀ-ମନ-ଗହନ ବାସେ
କେଳି କରୁଥାଏ ଚଟୁଳ ହାସେ,
ମୋବିନୁ ସଭିଏଁ କବିତା ଚୋର,
ହାଇ ମୁଁ ଭୋଳ।

[ଗୋଦାବରୀଶ ମହାପାତ୍ର]

କି ପଣ କଲି ରେ
କି ରଣ କଲି ରେ
ଜଣକୁ ଛାଡ଼ି ମୁଁ ସବୁରି ମୁହଁରେ
ମାରିଦେଲି ନିଆଁ ଖୁଣ୍ଟା,
ଓଡ଼ିଶାର ବଣ ପାହାଡ଼ ନାଚିଲା

''ଭକ୍ତି-ନିଯୋଗେ'' କାଳ ତ ପାଚିଲା
ମୁହଁରେ ମୋହର ନିଆଁ କେ ଦେବରେ
ମୋ ଦୁଃଖ ନେବ ରେ
କାହିଁ କେହି ନାହିଁ,
ସବୁରି ମୁହଁରେ, ଗୁଞ୍ଜା କି ପାଲଚୁଣ୍ଟା ?

[କାହ୍ନୁଚରଣ ମହାନ୍ତି]

ଓଡ଼ିଶାରେ ମୁହିଁ ସ୍କଟ୍
କେତେ ଆଣେ ବୁଣେ ପ୍ଳଟ
ନାଇଁ ଆମ୍ବିଶନ, ନାଇଁରେ ମିଶନ
ଫାଙ୍କା ଆଶାରେ ଲେଖିଦିଏ ଚଟପଟ ।
ମୁଇଁ ଯେ ମନର 'କା'
ବସ୍ତୁ ଭିତରେ ଘା,
କାଇଁ ଏକାଡ଼େମୀ, ପ୍ରାଇଜ କାଇଁରେ
ପାଣି ମରିଯାଏ ନୟନୁ ହାଇରେ
ଡେପୁଟି ହୋଇ ମୁଁ
କେତେ ବା କରିବି ରଟ୍
ଓଡ଼ିଆ ଜାତିର ସ୍କଟ୍ ।

[ନିତ୍ୟାନନ୍ଦ ମହାପାତ୍ର]

ନଗର କୀର୍ତ୍ତନ ରତି ସାହିତ୍ୟ-କଟକେ
ମୁଁ ଏକ ଡଗର ବୁଲେ ଡଗର ଛଟକେ ।
ମୁଁ ମାଳି ଗଢ଼ାଇ ରସ-ଡାଳିରେ ମନାସେ
କୃପାକର ମହାପ୍ରଭୁ ଆହେ ରାମ ଦାସେ ।

ମୁଁ ଗାନ୍ଧି ଭକତ, ମୁହିଁ-'ବାଦ'ର ନିନ୍ଦୁକ
ପ୍ରତିକ୍ରିୟାପନ୍ଥୀ ପୁଣି ପ୍ରଗତି ସିନ୍ଧୁକ।
ମୁଁ ହସି-ହସାଏ ପୁଣି ଜଳି ଜାଳିଯାଏ
ନିତି ମହାପ୍ରଭୁ ନିତ୍ୟାନନ୍ଦେ ଧାଉଥାଏ।

[ସଚ୍ଚିଦାନନ୍ଦ ରାଉତରାୟ]

''ହେ ମୋ ଉଚ୍ଚାରଣ ଗୁଡ଼ିକ,
ହେ ମୋର ଛାୟା ମୂର୍ତ୍ତି।''
ଚଟକଳର 'ପାଣ୍ଡୁଲିପି'ରେ
ନେଳୀ ନେଳୀ ହସରେ
ହେ ମୋର ମଖମଲି ଅକ୍ଷରର ପଂଝା
ଝରକାର (ଶିର) ଅବିରଳ ସ୍ୱଗତୋକ୍ତି ମୁଁ, ?
ନୁହେ, ନା, ନୁହେ ?
ହେ ମୋର ଗଦ୍ୟର କବିତା ପ୍ରଳାପ ସବୁ।
ନିଜକୁ ନିଜେ ନେଗେଟ କରି
ପହିଲି ରଜର ଡାଚ୍ଛଲ୍ୟରେ
ଜାତିଆଙ୍କୁ ବିଦ୍ରୂପ କରି କାତି-ଛଡ଼ା ଆଲୁଅ ମୁଁ
ଅହିଫେନ ରାତିର ଛାତିରେ। ହେଇ ଦେଖ,
ଛାତିର ଚଉଡ଼ା ମୋର।
୧୦୦୦ ଏକ।

[ଗୋପୀନାଥ ମହାନ୍ତି]

ମୁଁ ଏକ ଦିଶାରୀ ହସେ ଜୀଅନ୍ତା ମଶାଣେ,
ଆଶା ମୋର ଖଜବଜ
ଭାଷା ମୋର ଗଜଗଜ
ବୋର୍ କରି ବୁଲେ କେତେ ମନର ପାହାଡ଼େ
ବୁଲେ ବୋର କରି କରି
ଅସତୀ ବରଣ ଝାଡ଼େ, ସତୀରେ ଆଦରି
ଖାଲି ଲହୁ, ଖାଲି ଆଳ
ଜହ୍ନ ଛପରଛାଲ
ଯାଜମୁହାଁ ବ୍ୟାଜମାଙ୍କ
ମୁଁ ବଡ଼ ବୋରିଙ୍ଗ ସତେ
ଅମୃତ ଭସାଣେ
ଜୀଅନ୍ତା ମଶାଣେ,

[ନିଜକୁ ନିଜେ]

ମୁଁ ଅଛି ସମାଜେ ପ୍ରଜାତନ୍ତ୍ରରେ
ମାତୃଭୂମିରେ ଲାଲ ମନ୍ତ୍ରରେ
ମୁଁ କି ନାହିଁ କହି କଳାଯନ୍ତ୍ରରେ
କିଳିକିଳା କୁହୁ ଝଙ୍କାରି,
ମୁଇଁ ଆର୍‌କେକ୍ ମୁଇଁ ମଡ଼ର୍ଣ୍ଣ,
ସବୁ ମଟରରେ ହାୟାର୍ଡ଼ ହର୍ଣ୍ଣ,
ମୁଁ କି ନୁହେ ମୋର ଶିଉଳି ଫର୍ଣ୍ଣ
ଅଗୁଣର ଗୁଣ ଟଙ୍କାରୀ।
ଗଳାବନ୍ଦନେ ମଲା ମାନସର
ଖୁଁ ଖୁଁ ଗଲା ଖଙ୍କାରି।
ନାହିଁ ମୋର ଅନ୍ତ,
ମୁଁ ଖଜୁରିଗଛ, ପୁଣି ମୁହିଁ ବାଲିବନ୍ତ।

[ରାଧାମୋହନ ଗଡ଼ନାୟକ]

ମୁଁ କି ନୁହେ ରାଧା ମୋହନ,
ଆଜି ହୋଇଚିରେ ଜଡ଼ ନାୟକ,
ମୁଁ କି ରଚୁ ନାହିଁ ବାଧା-ଦୋହନ
ମୁଁ କି ନୁହେ ଆରେ ମଢ଼-ଗାୟକ ?
ଏ ହାତେ ବହିଚି ମାର୍କ୍ସ ମୋହର
ସେ ହାତେ ବହିଚି ଫ୍ରଏଡ୍
ଛନ୍ଦ ଭିତରେ ସ୍ୱନ୍ଦ ନୁହେଁ ମୁଁ,
ବିରାଟ ଭାବର ଭଏଡ଼ ?

[ରାଜକିଶୋର ପଟ୍ଟନାୟକ]

ଚୁରୁଟ ଭିତରେ ନିଆଁ ଚୁମୁଟାଏ
'ଚଲାବାଟ' ପଢ଼େ ଗପରେ
ଫିନିକି ହୋଇ ମୁଁ ସିନିକ୍ ହେଲିକି
ଅଭିଆଡ଼ି ଆଶା ତପରେ
ଆଉ କି ଚାହାଣି ଲେଖିବି
କାହାଣୀ ହାଣିରେ ଚୋରାହସ ମୁହେଁ
ଦୁନିଆକୁ ନାକ ଟେକିବି।

[ବସନ୍ତ କୁମାରୀ ପଟ୍ଟନାୟକ]
ମଲା, ନିଅାଁଲାଗ କି ପାଠ ପଢ଼ିଲି,
ଅପାଠ ଦେଖି ଲୋ,
ବାଉଳି ହୋଇ ମୁଁ ମଲେ,
'ଅମଡ଼ା ବାଟ'ରେ ମୁହାଇଁ ଯାଇ ଲୋ
କେତେ 'ଚିତାନଳେ' ଚମକ ପାଇ ଲୋ
କି ମଡ଼ା ବାଟରେ ଥରେ।

[ତୁଳସୀ ଦାସ]
ନିଜର ମନ-ଚଉରା ବୁକେ
ଥାଏ ଲୋ ମୁଇଁ ଥାଏ
ସଳିତା ଜାଳି ଯୁଗର ବୋହୂ
ସୁବାସେ ମୋରମୁଗ୍ଧେ ହୋଇ ଶୋହୁ ଲୋ ଶୋହୂ
ଗାଏ ଲୋ ମୁଇଁ ଗାଏ।
ତୁଳସୀ ମୁଁ ଲୋ,
ନିଜର ମନ-ଚଉରା ଶିରେ ଥାଏ।

[ବିଦ୍ୟୁତ୍‌ପ୍ରଭା ଦେବୀ]
କବିତା ଲୋ ତୋର ପାଉଜ ନେଲି
ଅପା ଥିଲି କେତେ, ଭାଉଜ ହେଲି,
ବିଜୁଳି ଝଳି ତୁ ଖେଳି ନ ଖେଳି
ମୋ-ମନେ କିଆଁରେ ସରଜୁ କେଳି।
କବିତା ଲୋ ଏଡ଼େ ନିଲଠୀ ହେଲୁ
ଯହିଁ ଯାଏ ତହିଁ ପରାଣ ନେଲୁ।

ଊନବିଂଶ ଦେବତାରେ କରିଲି ବନ୍ଦନ
ଆଉ ଯେତେ ଦେବ ଦେବୀ କରେ ନିବେଦନ
ଗାଇବି ବନ୍ଦନା ଯଦି କେବେ ବେଳ ପାଏ
ହରି ହରି ବୋଲି ଭାଇ ପାଲା ହଲା ସାଏ
ବୋଲ ହରି ହେ!

(ପି.ଇ.ଏନ୍. ଓ ନିଖିଳ ଭାରତ ଲେଖକ ସମ୍ମିଳନୀ ଉପଲକ୍ଷେ ଏଇ ବ୍ୟଙ୍ଗ କବିତାଟି 'ସମାଜ'ରେ ପ୍ରକାଶ ପାଇଥିଲା। ବନ୍ଧନୀ ଭିତରେ ଥିବା ନାମଗୁଡ଼ିକ ମୂଳ କବିତାରେ ନଥିଲେ ମଧ୍ୟ ସେହି ମହାନ କବି ସାହିତ୍ୟିକଙ୍କ ଉଦ୍ଦେଶ୍ୟରେ କଳନା କରାଯାଇଥିଲା।)



# ଉଦ୍‌ବୋଧନ ସଂଗୀତ

ନବୀନ ଯୁଗର ତରୁଣ, ଜାଗରେ,
ଜାଗ ବଂଧନହରା...!
(ଭାଙ୍ଗୁ, ବନ୍ଧନ ଭାରା..!)
ବକ୍ଷ ଶୋଣିତେ ଲକ୍ଷ ଜୀବନେ
ଖେଳାଅ ଆଲୋକ ଧାରା!
ଛିନ୍ନ କରରେ ବଂଧନରାଜି, କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି ଉପଜାତି, ଖଣ୍ଡିତ ଶତ ଦେଶ-
ମହାମାନବର ଶଙ୍ଖ ଶବଦେ
ଶମୁରେ ଦୁଃଖ ଜ୍ୱଳା।୧।

ନବୀନ..
ମରଣ ଦୁଆରେ ଚରଣ ଅରପି
ଗାଅରେ ଅମର ଗାନ।
ପୋଛିଦିଅ ଆଜି ମାନବ ଶିରରୁଁ
ସଂଚିତ (ବଞ୍ଚନା) ଅପମାନ।
ଲଂଘି ବନାନୀ ଶୈଳ କାନନ
ଚୂରରେ ତିମିର କାରା।୨।

ନବୀନ...
ମରୁ ପଥେ ପଥେ ନିର୍ଝର ସୃଜି
ଯାତ୍ରା କର ହେ (ରେ) କର !
ସ୍ପନ୍ଦନ ବହି ଅନ୍ତରୁ କୋଟି
ପ୍ରଦୀପ ଉଚ୍ଚେ ଧର
ଶଂକିତ ହେଉ କଂପିତ ପ୍ରାଣେ
ଚନ୍ଦ୍ର ତପନ ତାରା । ୩ ।

ନବୀନ...
ସଂଧାନୀ ତବ (ତମ) ସଂଧାନ ପଥେ
କଂଟକ ଟେକେ ଶିର
ସମ୍ମୁଖେ ତବ (ତମ) କୁହେଳି ରୂପଇ
ମୋହ ମମତାର ନୀର
ଭିନ୍ନ କରି ସେ ତନ୍ଦ୍ରା-ପରଶ
ହସାଅ ଭୁବନ ସାରା । ୪ ।
ନବୀନ...
ଚିରି ଅତୀତର ଜୀର୍ଣ୍ଣ ଜୀବନ
ଜାଗ ଆରେ (ଜାଗ) ଭବିଷ୍ୟତ !
ଚୂର୍ଣ୍ଣ କରୁରେ ସ୍ୟନ୍ଦନ ତମ (ତୁମ)
ପୀଡ଼ନର ପରବତ !
ଭାଙ୍ଗିପକ୍କୁ ଆଜି ଅର୍ଗଳରାଜି ଘେନ ବିଜୟର ମାଳା । ୫ ।
ନବୀନ....

[ 'ନବଯୁଗ ସାହିତ୍ୟ ସଂସଦ'ର ଉଦ୍‌ବୋଧନ ଉତ୍ସବ ଉପଲକ୍ଷେ ଉଚିତ । ଏହି ଉଦ୍‌ବୋଧନୀ ସଂଗୀତ ମିଳିତ କଂଠରେ ଗାଇଥିଲେ ଶ୍ରୀମତୀ ମାଳତୀ ଚୌଧୁରୀ, ଅଶୋକ ରାଓ ଓ ଖୋକନ୍ ଜୋଆରଦାର ପ୍ରମୁଖ । ୧୯୩୫ ନଭେମ୍ବର ୨୯ ତାରିଖ ] ।



''ଭକ୍ତି-ନିଯୋଗେ'' କାଳ ତ ପାଚିଲା
ମୁହଁରେ ମୋହର ନିଆଁ କେ ଦେବରେ
ମୋ ଦୁଃଖ ନେବ ରେ
କାହିଁ କେହି ନାହିଁ,
ସବୁରି ମୁହଁରେ, ଗୁଣ୍ଡା କି ପାଳଚୁଣ୍ଡା ?

ଓଡ଼ିଶାରେ ମୁହିଁ ସ୍କଟ୍
କେତେ ଆଣେ ବୁଣେ ପ୍ଲଟ
ନାଇଁ ଆମ୍ବିଶନ, ନାଇଁରେ ମିଶନ
ଫାଙ୍କା ଆଶାରେ ଲେଖିଦିଏ ଚଟପଟ ।
ମୁଇଁ ଯେ ମନର 'କା'
ବସ୍ତୁ ଭିତରେ ଘା,
କାଇଁ ଏକାଡ଼େମୀ, ପ୍ରାଇଜ କାଇଁରେ
ପାଣି ମରିଯାଏ ନୟନୁ ହାଇରେ
ଡେପୁଟି ହୋଇ ମୁଁ
କେତେ ବା କରିବି ରଟ୍
ଓଡ଼ିଆ ଜାତିର ସ୍କଟ୍ ।

ନଗର କୀର୍ତ୍ତନ ରଚି ସାହିତ୍ୟ-କଟକେ
ମୁଁ ଏକ ଡଗର ବୁଲେ ଡଗର ଛଟକେ ।
ମୁଁ ମାଳି ଗଢ଼ାଇ ରସ-ଡାଳିରେ ମନାସେ
କୃପାକର ମହାପ୍ରଭୁ ଆହେ ରାମ ଦାସେ ।
ମୁଁ ଗାନ୍ଧି ଭକତ, ମୁହିଁ-'ବାଦ'ର ନିନ୍ଦୁକ
ପ୍ରତିକ୍ରିୟାପନ୍ଥୀ ପୁଣି ପ୍ରଗତି ସିନ୍ଦୁକ ।
ମୁଁ ହସି-ହସାଏ ପୁଣି ଜଳି ଜାଳିଯାଏ
ନିତି ମହାପ୍ରଭୁ ନିତ୍ୟାନନ୍ଦେ ଧାଉଥାଏ ।

''ହେ ମୋ ଉଚ୍ଚାରଣ ଗୁଡ଼ିକ,
ହେ ମୋର ଛାୟା ମୂର୍ତ୍ତି ।''
ଚଟକଳର 'ପାଣ୍ଡୁଲିପି'ରେ
ନେଳୀ ନେଳୀ ହସରେ
ହେ ମୋର ମଖମଲି ଅକ୍ଷରର ପଂଝା

ଝରକାର (ଶିର) ଅବିରଳ ସ୍ୱଗତୋକ୍ତି ମୁଁ, ?
ନୁହେ, ନା, ନୁହେ ?
ହେ ମୋର ଗଦ୍ୟର କବିତା ପ୍ରଳାପ ସବୁ।
ନିଜକୁ ନିଜେ ନେଗେଟ କରି
ପହିଲି ରଙ୍ଗର ତାଚ୍ଛଲ୍ୟରେ
ଜାତିଆଙ୍କୁ ବିଦ୍ରୂପ କରି ଜାତି-ଛଡ଼ା ଆଲୁଅ ମୁଁ
ଅହିଫେନ ରାତିର ଛାତିରେ। ହେଇ ଦେଖ,
ଛାତିର ଚଉଡ଼ା ମୋର।
୧୦୦୦ ଏକ।

ମୁଁ ଏକ ଦିଶାରୀ ହସେ ଜୀଅନ୍ତା ମଶାଣେ,
ଆଶା ମୋର ଖଜବଜ
ଭାଷା ମୋର ଗଜଗଜ
ବୋର୍ କରି ବୁଲେ କେତେ ମନର ପାହାଡ଼େ
ବୁଲେ ବୋର କରି କରି
ଅସତୀ ବରଣ ଝାଡ଼େ, ସତୀରେ ଆଦରି
ଖାଲି ଲହୁ, ଖାଲି ଆଳ
ଜହ୍ନ ଛପରଛାଲ
ୟାଜମୁହାଁ ବ୍ୟାଜମାଲ
ମୁଁ ବଡ଼ ବୋରିଙ୍ଗ ସତେ
ଅମୃତ ଭସାଣେ
ଜୀଅନ୍ତା ମଶାଣେ,

ମୁଁ ଅଛି ସମାଜେ ପ୍ରଜାତନ୍ତ୍ରରେ
ମାତୃଭୂମିରେ ଲାଲ ମନ୍ତ୍ରରେ
ମୁଁ କି ନାହିଁ କହି କଳାଯନ୍ତ୍ରରେ
କିଳିକିଳା କୁହୁ ଝଙ୍କାରି,
ମୁଇଁ ଆର୍କେକ୍, ମୁଇଁ ମଡ଼ର୍ଣ୍ଣ,
ସବୁ ମଟରରେ ହାୟାର୍ଡ୍ ହର୍ଣ୍ଣ,
ମୁଁ କି ନୁହେ ମୋର ଶିଉଳି ଫର୍ଣ୍ଣ
ଅଗୁଣର ଗୁଣ ଟଙ୍କାରୀ।

ଗଲାବଦନେ ମଲା ମାନସର
ଖୁଁ ଖୁଁ ଗଲା ଖଙ୍କାରି ।
ନାହିଁ ମୋର ଅନ୍ତ,
ମୁଁ ଖଜୁରିଗଛ, ପୁଣି ମୁହିଁ ବାଲିବନ୍ତ ।

ମୁଁ କି ନୁହେ ରାଧା ମୋହନ,
ଆଜି ହୋଇଚିରେ ଜଡ଼ ନାୟକ,
ମୁଁ କି ରଚୁ ନାହିଁ ବାଧା-ଦୋହନ
ମୁଁ କି ନୁହେ ଆରେ ମଢ଼-ଗାୟକ ?

ଏ ହାତେ ବହିଚି ମାର୍କ୍ସ ମୋହର
ସେ ହାତେ ବହିଚି ଫ୍ରଏଡ୍
ଛନ୍ଦ ଭିତରେ ସ୍ୱନ୍ଦ ନୁହେ ମୁଁ,
ବିରାଟ ଭାବର ଭଏଡ଼ ?

ଚୁରୁଟ ଭିତରେ ନିଆଁ ଚୁମୁଟାଏ
'ଚଲାବାଟ' ପଢ଼େ ଗପରେ
ଫିନିକ୍ସ ହୋଇ ମୁଁ ସିନିକ୍ ହେଲିକି
ଅଭିଆଡ଼ି ଆଶା ତପରେ
ଆଉ କି ଚାହାଣି ଲେଖିବି
କାହାଣୀ ହାଣିରେ ଚୋରାହସ ମୁହେଁ
ଦୁନିଆକୁ ନାକ ଟେକିବି ।

ମଲା, ନିଆଁଲାଗ କି ପାଠ ପଢ଼ିଲି,
ଅପାଠ ଦେଖି ଲୋ,
ବାଉଳି ହୋଇ ମୁଁ ମଲେ,
'ଅମଡ଼ା ବାଟ'ରେ ମୁହାଇଁ ଯାଇ ଲୋ
କେତେ 'ଚିନ୍ତାନଳେ' ଚମକ ପାଇ ଲୋ
କି ମଡ଼ା ବାଟରେ ଥରେ ।

ନିଜର ମନ-ଚଉରା ବୁକେ
ଥାଏ ଲୋ ମୁଇଁ ଥାଏ
ସଳିତା ଜାଳି ଯୁଗର ବୋହୂ
ସୁବାସେ ମୋରମୁଗ୍ଧ ହୋଇ ଶୋହୁ ଲୋ ଶୋହୁ
ଗାଏ ଲୋ ମୁଇଁ ଗାଏ ।
ତୁଳସୀ ମୁଁ ଲୋ,
ନିଜର ମନ-ଚଉରା ଶିରେ ଥାଏ ।

କବିତା ଲୋ ତୋର ପାଉଜ ନେଲି
ଅପା ଥିଲି କେତେ, ଭାଉଜ ହେଲି,
ବିଜୁଳି ଝଲି ତୁ ଖେଳି ନ ଖେଳି
ମୋ-ମନେ କିଆଁରେ ସରଜୁ କେଳି ।
କବିତା ଲୋ ଏଡ଼େ ନିଲଠୀ ହେଲୁ,
ଯହିଁ ଯାଏ ତହିଁ ପରାଣ ନେଲୁ ।

ଉନବିଂଶ ଦେବତାରେ କରିଲି ବନ୍ଦନ
ଆଉ ଯେତେ ଦେବ ଦେବୀ କରେ ନିବେଦନ
ଗାଇବି ବନ୍ଦନା ଯଦି କେବେ ବେଳ ପାଏ
ହରି ହରି ବୋଲି ଭାଇ ପାଲା ହଇ ସାଏ
ବୋଲ ହରି ହେ !

(ପି,ଇ,ଏନ୍, ଓ ନିଖିଳ ଭାରତ ଲେଖକ ସମ୍ମିଳନୀ)



# କେତେ ବିଧୁରାର...

କେତେ ବିଧୁରାର ପ୍ରାଣର (ମନର) ବୋଧନ–
କେତେ ସାଧବୀର ସାଧନାର ଧନ–
ବଧୂ ଅଧରର ମଧୁ କଂପନ
ନିଭାଇ ଦେଇଚ କେଉଁ ସ୍ୱାର୍ଥର ସୁଖେ–!

ସ୍ତନ୍ୟ ଟୋପାଏ ଦେଇ କି ପାରିଚ
କାହିଁ ଭଲା କେବେ
କେଉଁ ଅରକ୍ଷ ମାତୃହରାର ମୁଖେ–!

କୋଟି କୋଟି ପ୍ରାଣ ଜାଳିଚ ପୁଲକେ
ଗୋଟିଏ 'ପ୍ରାଣ' କି ଜୀଆଇଁ ପାରିଚ (ରଖିଚ) କାହିଁ–
ଅମାପ ଧନରେ କ୍ଷମତାମତ୍ତ–ତମେ !–

ତୁମେ କି ନୁହଁ ହେ
ପିଶାଚ ରକ୍ତପାୟୀ–
ଶାନ୍ତିରେ କେବେ ନିଜକୁ ପାରିଚ ଚାହିଁ–!

ମରଣର ତମେ ସୈନିକ ଆହେ
ଲଢ଼ି ଚାଲ ତୁମ ନିତି ଜୀବନର ସହ !

ସୃଜନର ଗୀତି କେବେ କି ଗାଇଚ–
କେଉଁ ନିର୍ମଳ ପ୍ରାତେ !–

ମଲ୍ଲୀ-ଗୋଲାପ-କୁନ୍ଦ କରବୀ ମେଳେ
'ମୁର୍‌ଦାର୍‌' କୁଢ଼େ ଚଢ଼ି
ଚୂର୍ଣ୍ଣ ମୁକୁଟୁଁ କୀଟର ଅଟ୍ଟହାସ—
ତୁମ ସ୍ତାବକର ବନ୍ଦନା କୋଳାହଳେ !—
ତୁନି ତୁନି କେତେ
ନୀରବ ପଡ଼ିଚି ଝଡ଼ି— ।

ରାଜାର ଆସନ ବଦଳାଇ ଆଜି
ମନ୍ତ୍ରୀ ଶାସନ ଥାପି—
ନୂଆ ନୂଆ ନିତି ରୂପ ଶୃଙ୍ଗାରେ
ହସୁଚି ଦିଲ୍ଲୀ ପୁଣି—

ପାରିଚି କି ଆମ ମର୍ମର ବାଣୀ ଶୁଣି— ?
ଶତ ସ୍ୱପ୍ନର ପୁଣ୍ୟ ପ୍ରବାହ ମାପି !

ଭୂଇଁରେ ଭୂଇଁରେ ଲଙ୍ଗଳଗାର
କେତେ ହିଡ଼ାବାଡ଼ ପାଚିରୀ କରିଚ ଛିଡ଼ା !—
ଆଜି ଆଣବିକ ଅସ୍ତ୍ରର ଛାୟା ତଳେ—
ଖୋଲିଚି ତୁମର ଦର୍ପରେ କେତେ
କୁଟିଳ କର୍ମ-ବିଡ଼ା ।

ହେ ମର ମଣିଷ !
ଅମର ପୁରୀର ଯାତ୍ରା
ପ୍ରୟାସୀ ଭାଇ !
ମହାକାଳ ପାଖେ
ଜୀବିତ ମୃତର ଜାତି ଉପଜାତି
ବର୍ଣ୍ଣ ବିଭେଦ କାହିଁ !

ତୁମେ ବିଜ୍ଞାନୀ ତୁମେ ପ୍ରଜ୍ଞାନୀ—
ମୃତ୍ୟୁର ପଥ ଚାଲ ନିର୍ମାଣି—
ଅଭିନବ ତୁମେ ମହାବିଜ୍ଞାଣୀ—

ତୁମରି ଭିତରୁ ନୁହେଁ କି ଜଣେ ମୁଁ
ରହିଚି ତୁମକୁ ଭୟ ବିସ୍ମୟେ ଚାହିଁ !

ନିମେଷକ ଲାଗି ପୃଥ୍ୱୀରେ ତୁମେ–
ନିମେଷ ନ ପାହୁଁ କାହିଁ ଯାଇଥିବ ଚାଲି–
ଆଖିରେ ଆଖିରେ ଟିକେ ଅନାଅନି
ମନରେ ମନରେ ଟିକେ ଘେନାଘେନି
ହୃଦୟୁଁ ହୃଦୟେ ଟିକେ ଟିକେ (ଜଣାଜଣି) ଟଣାଟଣି

ଏଇ ସିନା ଭାଇ ସଂପଦ, ତୁମ–
କାମନାର ପେଡ଼ି କେବେ ତ କରିବ ଖାଲି

ଯିଏ ସେ ଯାଇଚି, ଯିଏ ଯାଏ ଆସି–
ସେ କି ରେ ଫେରିଚି କାହିଁ
ବସୁଧାର ବୁକେ କେତେ ସୀମାରେଖା
କେତେ ପ୍ରତାପୀର ଦୀପ୍ତିରେ ଦେଖା–
ଝଟକି ଉଠିକି
ନିଭିନିକି
ନିଭିନାହିଁ– ।

କେତେଥର ମରି ଜୀଇଁ ନି ଦିଲ୍ଲୀ
ଜୀଇଁନି ମସ୍କୋ– ହସି
ଗଣ୍ଡୂଷ ଜଳେ– 'ଲଣ୍ଡନ' ସହ ଖେଳି–
ନ୍ୟୁୟର୍କ କି ସୃଷ୍ଟି କରିନି–
ମହା–ମୃତ୍ୟୁର ରେଳି–
ଧ୍ୱଂସ କରିନି
ମହା ବିଶ୍ୱରେ ସୂଚାଇ ଝିଲ୍ଲୀ
ଆଲୋକେ ଅନ୍ଧ
ତମସା ଗର୍ଭେ ଚଳି–

–୧୯୬୭ ଜାନୁଆରୀ ୨୪



# ଛୋଟ ଏକ ଲିମୁସିନ୍

ଛୋଟ ଏକ ଲିମୁସିନ୍ ଅଟକିଲା ଆସି
ଧାଇଁଗଲ ଖୋଲିଦେଲି 'ଦୁଆର'ଟି ତାରି !
ଭାବିଥିଲି ମୁହୂର୍ତ୍ତଟା
 ସଂକେତରେ ଉଠିଥିବ କାଶି- !
ପତ୍ରଟାଏ ଝରିଗଲା
ଉଡ଼ିଆସି ବୃକ୍ଷାନ୍ତରୁ କଲା ହାହାକାର
ଶୂନ୍ୟ ଥିଲା ଲିମୁସିନ୍
 ଶୂନ୍ୟେ ଗଲା ଚାଲି !
ଆଖିରେ ମୋ ଝଲସିଲା
ଅବର୍ଣ୍ଣର ଜାଲି !

୧୨, ଜାନୁୟାରୀ ୧୯୬୭



# ସେମାନେ, କରନ୍ତି ପୂଜା...

ସେମାନେ କରନ୍ତି ପୂଜା
ତୁମ ନାମାବଳୀ ଛାପି ଝୁଲାନ୍ତି ଦେହରେ–
ସେମାନେ କି ପରିଷ୍କାର ସୁପାବନ ?
ଉପଦେଶ ପରାମର୍ଶ ବାଢ଼ନ୍ତି ସ୍ନେହରେ
ଶାଠଚକ୍ରେ ଦିନ କଟେ
ସପ୍ତାହକେ ଥରେ ମାତ୍ର ପାଠଚକ୍ରେ ବସି
ସେମାନେ କି ଜନନୀ ଗୋ
ଚିତ୍ତେ ତୁମ ପାରନ୍ତି ବିଳସି....!

୧୨ ଜାନୁୟାରୀ-୧୯୬୭



/ ୪୧୨ /

## ଢେଉ ସବୁ...

ଢେଉସବୁ ଉଠେ ପଡ଼େ
ମେଲିଯାଏ ଖେଳିଯାଏ କରରୁ କରକୁ
ଯେବେ ମୁଁ ସଲଖି ହୁଏ-
ଯାଏ ନଇଁ ଯାଏ ସେତେ।
ଯେତେ ମୁଁ ଉପରେ ଉଠେ—
ଖସେ ମୁଁ ତଳକୁ ସେତେ—
ଖେଳି ଖେଳି (ଢଳି ଢଳି) ପଶିଯାଏ—
ସାଇଭାଇ ଜଣା ଆଉ ଅଜଣାର
ମନରୁ ମନକୁ—।

୧୨ ଜାନୁୟାରୀ-୧୯୬୭



## ଢେଉ ଉଠେ ଉଠେ ନାହିଁ...

ନା ଢେଉ ଉଠେ, ଉଠେ ନାହିଁ
ଛୁଏ ନାହିଁ
କୁଳୁ କୁଳୁ ଆକାଶ ଚୂଳକୁ
ମନର ବା ଗତି କାହିଁ
        ଅତି ମାନସକୁ
ଘୂରିବୁଲେ, ବୁଲେ ନାହିଁ
        ନିଜକୁ ସାଉଁଟି କେତେ
        (ଅସାରି) ମୂଳକୁ ମୂଳକୁଁ
ବିଡ଼ମ୍ବିତ ! ଧରିଥାଏ—
ଶୂନ୍ୟ ଶୂନ୍ୟେ
ଆଶା ସାରସକୁ- -!

୧୩ ଜାନୁୟାରୀ-୧୯୬୭



# କଥାରେ ଆଖିରେ...

କଥାରେ
ଆଖିରେ କୁହୁଡ଼ି–
ନିଃଶ୍ୱାସରେ ଝଡ଼ !

ଭାବନାରେ ଗୁଲ୍‌ଗୁଲି- !
ଏହି ତ ଜୀବନ !

ପ୍ରେମରେ (ଜଣର) ପୁଂଜି–
ପ୍ରାଣରେ (ଗଣର) ଦୈନ୍ୟ–
କରୁଣାରେ କାକୁ
ଏଇ ତ କ୍ରାନ୍ତି !

ଶସ୍ୟରେ ରକ୍ତ
ଗ୍ରନ୍ଥରେ ଭସ୍ମ
ମୈତ୍ରୀରେ ଖଡ୍ଗ
ଶୋଷଣରେ ସାମ୍ୟ– !

ପୂର୍ବରେ ହତ୍ୟା–
ପଶ୍ଚିମରେ ଉତ୍ସବ–
ସଖ୍ୟରେ (କୂଟିରେ) ବରଫ–
ଏଇ ତ ଶାନ୍ତି– !

ଏଇ କି ନିତି ଆମ କାମ୍ୟ– !

ରେଣୁରେ ବ୍ରହ୍ମ
ବ୍ରହ୍ମରେ ବିପାକ
ସଂସ୍କୃତିର ରଚକ
ନୂଆ ଯୁଗ ଜୀବନ– !

୧୯୬୭ ଜାନୁୟାରୀ ୧୪



# ଆହା ସେ ତ ଜଳିଗଲା

ଆହା ସେ ତ ଜଳିଗଲା
ଭଲ ହେଲା । ଖୁବ୍ ଭଲହେଲା !
ଜାଳୁଥିଲା ଯୁଗକୁ ସେ ଅଜ୍ଞାନୀଟା-
ଜ୍ଞାନର ନିଶାରେ !

ଉର୍ଦ୍ଧ୍ୱରେ ତା ଏଡ଼େ ପୁଣି ନିମ୍ନରେ ତା ଆଡ଼େ !
ଆହା ସେ ତ ଜଳିଗଲା
ବିଜ୍ଞାନ   ଅମଳିଟାଏ ସେ
ଭଲହେଲା । ଖୁବ୍ ଭଲ ହେଲା !

କାଲିର ସେ ବାଳିବନ୍ତେ-ବ୍ୟର୍ଥ ସାଧନାର କଡ଼େ
ମେଲିଦେଇ ଦିଗ୍‌ଦିଗନ୍ତେ-
ଅମୂର୍ତ୍ତ ଶାଖାକୁ - ସନ୍ତୃଷ୍ଟ ବିଷାଦେ ନମ୍ର
ତାମସୁଁ ତାମସେ ବୁଲି   ଆଲୋକ ପିପାସୁ-
ଗଢ଼ିଲା ସେ ଗଢ଼ାଇଲା - ଗଢ଼ାଇ ଗଢ଼ାଇ
ତୁମ ଆମଭଳି ଯେ ଗୁଡ଼କଙ୍କ ଗୁଡ଼ା
ନିଜତ୍ୱ ବିହୀନ ସବୁ-
ଅସ୍ତିତ୍ୱ ପାସୋରା- !

ମୁଁ କୁଳ ପାବନ ତାର
ପାବନି ବିକ୍ରମେ ଖେଦେ - ବିଶ୍ୱ ମାନସକୁ- !
ହେ ରାମ ରାଜେନ୍ଦ୍ର ଦଳ - ହେ ଛନ୍ଦ ସାଧକ ସବୁ !
କର ମହୋତ୍ସବ କର !
ଜଳିଗଲା ଅଜ୍ଞାନୀଟା-ନିଜର ବିଜ୍ଞାନେ ଯେବେ
ଭଲ ହେଲା ବେଶ୍ ଭଲ ହେଲା !

(୧୯୬୦)



/୪୧୬/

# କାହିଁ ତ ତିଳେ ପାରିନି ବୁଝି

କାହିଁ ତ ତିଳେ ପାରିନି ବୁଝି
ନିଜର ସାଥେ ନିଜେ ହିଁ ଯୁଝି-
କେଉଁଥି ପାଇଁ-
ମରଣ ଖେଳେ ଜୀବନରଖେ ବାଜି !

ସରସ କେତେ ସତେଜ ରଖି ଦେହ-
(ପାଶୋରି ସବୁ ସଜନି ସଖା ସ୍ନେହ)
ଭିକ୍ଷୁ ବେଶେ କପଟ ହୁଏ ସାଜି।

ଉଦ୍‌ଭବି ମୁଁ ଉତ୍ସାହରେ
ପ୍ରକୃତିର ମର୍ମ ଆଣି
ବିଜ୍ଞାନର କଥା-
ଚିତ୍ତତଳୁ ଖେଳାଇ ଦିଏ-
ସାନ୍ଦ୍ରତମ ଶୂନ୍ୟତାର ବ୍ୟଥା-
ବସ୍ତୁମେଳେ ଖୋଜେ ମୁଁ ଯେବେ-
ବସ୍ତୁଜୟୀ ସତ୍ତା।

ଅନନ୍ତ ଅଣୁ ମେଳରେ ନାଚି
ମରଣେ ଚଳେ ଜୀବନ ଯାଚି-
ନିଖିଳ ଜନ-
ମରଣଜୟୀ ଜୀବନ ସୁରେ-
କଣ୍ଠ ନିଏ ମାଜି-।

(୧୯୮୫ ଜୁଲାଇ ୧୬)



# ସ୍ନେହର କାଙ୍ଗାଳଟିଏ–

ସ୍ନେହର କାଙ୍ଗାଳଟିଏ–
ବୁଲେ ଆଜି ହୃଦୟର ବଜାର ବସ୍ତିରେ
କେତେ ତୁମେ ଆତଯାତ– !
ମରଣର ଉପୋଦ୍‌ଘାତ ।
(ଜୀବନ-ସଂଗୀତ)

ନୁହେଁ ପ୍ରତିଶ୍ରୁତି ନୁହେଁ–
ପ୍ରେମୋନ୍ମତ୍ତ ଚୈତନ୍ୟର
ନ୍ୟୂନତାର ଭାବନା ସଂଜାତ !
(ସେ ଯେ କେବେ କରେ ନା କୀର୍ତ୍ତନ)

ନୁହେଁ ତୁମ ମୋଓ ଅପରାଧେ
ଜର୍ଜ୍ଜରିତ ଯୀଶୁ
ଝୁଲେ ନାହିଁ ଦଳିତର–
ଆରକ୍ତ (ରକ୍ତିମ) ସ୍ୱସ୍ତିରେ !

ବୁଦ୍ଧିର ପ୍ରାଚୁର୍ଯ୍ୟେ କାହିଁ
ସୃଜନ ସୌକର୍ଯ୍ୟେ–
ପରିବର୍ଜ୍ୟା ପଥେ ପଥେ
ନା, ନୁହେଁ ବୁଦ୍ଧ– !
ଯାଚେ ନାହିଁ ନିର୍ବିକାରେ ସୁତୀବ୍ର କରୁଣା–
ବଖାଣେ ନା ସୂତ୍ରରାଜି–ଅଦର୍ଶନେ ଦର୍ଶନର
ଅନସ୍ତିତ୍ୱେ ଅସ୍ତିତ୍ୱର
ରଚେ ନା ନର୍ତ୍ତନ !

କି ଶୁକ୍ଳିମ ହାସ୍ୟେ ଭରି
କଣ୍ଟକିତ କାମନାରେ–ଭାଷ୍ୟରାଜି ଭୀରୁତାର
ନୁହେଁ ଗାନ୍ଧୀ–ନିଜ ରକ୍ତେ ଧୋଇ ଧାରା
କର କହେ ନା ଅରୁଣା !

ପ୍ରୀତିର ଭିକ୍ଷୁକ (କାଙ୍ଗାଳ) ବୁଲେ
ଭାବନାର ପ୍ରେତ ଆମ–
କଳ୍ପନାର କାୟାର ପ୍ରତୀତି !

/ ୪୧୮ /

ଆମ୍ରାଧାରୀ (ଜାନୁଆର) ପଶ୍ଵତ୍ତର–
ଅଲୌକିକ ପୁରୁଷ ପ୍ରଧାନ–
ଅକୃପଣ ନମ୍ରତାରେ ଅକୁଣ୍ଠିତ ସାରଲ୍ୟେ (ସୌଜନ୍ୟେ)
ଭାଗ୍ୟବତୀ ବ୍ୟଥାର ସମ୍ମତି

ରସର ସଂଧାନେ ମଗ୍ନ
ଶୂନ୍ୟତାର ସାନ୍ଦ୍ରତାରେ
ନିମେଷ ତାରଲ୍ୟେ

ଅନାହତ ଶବ୍ଦ ମେଳେ
ଶ୍ରୁତି-ଲୋଭୀ ଅଦ୍‌ଭୁତ ବିଧାନ !–

ବୁଲିଯାଏ କି ବାସ - ବିହ୍ଵଳ ସେ ଯେ
ହୃଦୟର ବଜାର ବସ୍ତିରେ

ଜନ୍ମାଇ ଶାବକ ଶତ
ଦେହର ବିବର ବିକେ– !
ମନର ନୀଡ଼ରେ ଅବା–
ଶୁକ୍ରର (ପ୍ରୀତିର) କାଙ୍ଗାଳ ସେ ଯେ–
ଛିନ୍ନ କରି ଆପଣାକୁଁ
ସ୍ଵପ୍ନେ ତିଳେ ତିଳେ ।

ତୁମ ମୋଓ ମୁହୂର୍ତ୍ତକୁ
ଚେତନାର ମୁହୂର୍ତ୍ତକୁ ଗିଳେ–
ଅବିକୃତ ଗିଳେ–
ବୁଲେ ସିଏ ଅବିଶ୍ରାମ
ଯୁଗୁ ଯୁଗାନ୍ତରେ କାହିଁ
କି ମୋକ୍ଷ ମସ୍ତିରେ– !

ଜାନୁୟାରୀ ୨୪-୧୯୬୭



# ସ୍ୱପ୍ନ ଯଦି ସତ ହେଉଥାନ୍ତା

ସ୍ୱପ୍ନ ଯଦି ସତ ହେଉଥାନ୍ତା
ତେବେ ମୁହିଁ ସ୍ୱପ୍ନ ପାଖେ
ଋଣୀ ହୁଅନ୍ତି ନି ।
ସତ ଯଦି ସ୍ୱପ୍ନ ହେଉଥାନ୍ତା
ସତକୁ ମୁଁ କେବେହେଲେ,
ଭାଳି ହୁଅନ୍ତି ନି ।

ବହୁଦୂରେ ଏବେ ରହିଲା କି ସତେ ଘନ ଅନ୍ଧାର ତୁମ
ଆଲୋକରେ ତୁମ ବିଦ୍ରୂପେ ଏଣୁ ତୁମ ବିକୃତି ଲିପି–
ବିଗତର ମାୟା–
ଆଗାମୀର ପଥେ
ବାଲୁକା ଗର୍ଭେ ଲୀନ
ଶ୍ରେୟର ସ୍କନ୍ଧେ
ପ୍ରେୟର ଗନ୍ଧ
ଅଶ୍ଳୀଳ ଝିପିଝିପି–

୨୬ ଜାନୁୟାରୀ-୧୯୬୭



# ଦୁଇଟି ଦିଗରୁ ସେତୁ ନିର୍ମାଣେ—

ଦୁଇଟି ଦିଗରୁ ସେତୁ ନିର୍ମାଣେ—
ଦୁଇ ପ୍ରାଣ ଥିଲା ବ୍ୟସ୍ତ
(କମ୍ର କପୋଳେ) କେବେ କେବେ କରି
ଦୁଇ କର ଯୁଗ ନ୍ୟସ୍ତ—
ଆଜି କି ମିଳନ ଦୁଇ ଦିଗୁ ଆସି
ସେତୁଟି ମଧୁର ବିନ୍ଦୁରେ—
ଉଆଇଁ ପୁଲକେ
ସୃଜନ ଲୀଳାର ବିନ୍ଦୁରେ—।
ନବସୃଜନର ଇନ୍ଦୁରେ—!

ଉର୍ଦ୍ଧ୍ୱେ-ନିଳୀମା ନବ ଭାବନାର
ନିମ୍ନେ ନୀଳିମା (କୃଷ୍ଣ)
ଅତଳୁଁ ଅତଳେ ଉଦ୍‌ବେଳ ପ୍ରୀତିଧାରା
ସାର୍ଥକ ଗୀତି ଶୁଭେ ସାଧନାର

ସଂଯୋଗ ଥଳେ ଏକଇ ସେତୁର
ମିଳିତ ସ୍ତମ୍ଭଭାର—
କର ଉତ୍ସବ କର!

ଶ୍ରମ ସାଧନାର ପୁଣ୍ୟ ଦିବସ ରାଜି
ହେଉ ଅକ୍ଷୟ— ହେଉ ନିର୍ଜର!
ନବ ତାରୁଣ୍ୟର ଚିର ଉଜ୍ଜ୍ୱଳ!

୧୭ ଫେବୃୟାରୀ-୧୯୬୭



# ଲୁହକୁ ଲୁହରେ ଧୋଉ

ଲୁହକୁ ଲୁହରେ ଧୋଉ
ନଈଟିଏ ପାରହେଉ
ଆଉ ଏକ ନଈର ସୁଅରେ !
ମୁହାଁଣ ବହୁତ ଦୂର ଦିଗନ୍ତ ତୁଠରେ !

ଢେଉରେ ସୂର୍ଯ୍ୟର ମୁହଁ
କୋଟି କୋଟି ଲମ୍ଵା ଓ ଚେପ୍‌ଟା
ଧାରୁଆ ଦେହର ପାଖେ–ତିମି ଶାଙ୍କୁଚର
କେତେ ସେ ଯେ ମୀନର ଲୀଳା
ନିଦକ ଖୁସିରେ– !

ସରୁ ଜାଲ ସରୁ ପତ୍ରୁ ଯେତେ
ଲୁହରେ ଲୁହକୁ ଧୋଇ
ଜୀବନ ଅଧରା– !
ପାରି ହେଉ ନଈଟିଏ
ଆଉ ଏକ ନଈର ସୁଅରେ !

ଫେବୃୟାରୀ ୭-୧୯୬୭



## କୋଟି କୋଟି ଶହୀଦର ସ୍ମୃତିର ବଲ୍ଲକୀ ତୁମେ !

କୋଟି କୋଟି ଶହୀଦର ସ୍ମୃତିର ବଲ୍ଲକୀ ତୁମେ !
ହେ ମହା ସହୀଦ୍ କବି !
ଧୂସର ସ୍ୱପ୍ନର ରେଣୁ
        ଉତପ୍ତ ହୃଦୟେ ବୋଳି
ତୁମେ ଯଦି ଜୀଇଁଥାନ୍ତ
        ସିନ୍ଦୁର ଚୁଆରେ—

ମାହରୀର ନୃତ୍ୟଗୀତେ
        ପାଷାଣ ଗାତ୍ରରେ କାହିଁ—
ନିପାଣିଆ ଦେବତାର ମନ୍ଦିର ଚତ୍ୱରେ—
ଜୀର୍ଣ୍ଣ ଯେତେ ରାଜତ୍ୱର ବୀଭତ୍ସ ବିଳାସେ—
ତୁମକୁ କି ପଢୁଥାନ୍ତୁ— (ଶୁଣୁଥାନ୍ତୁ)
ଚତୁର୍ଦ୍ଦିଗେ ରେଡ଼ିଓର
        ବାର୍ତ୍ତାର ଗହଳେ !

ଫେବୃଆରୀ ୪-୧୯୬୭



## ଆଜନ୍ମ ସେବାରେ ବ୍ରତେ ଜୀବନର ସଂକ୍ଷୁବ୍ଧ ଆଲୋକେ—

ଆଜନ୍ମ ସେବାରେ ବ୍ରତେ ଜୀବନର ସଂକ୍ଷୁବ୍ଧ ଆଲୋକେ—
ତୁମେ ଯିଏ ଦୀପ୍ୟମାନ, ଛାୟାଲୀନ ମାୟାର ବୈରାଗ୍ୟେ—
ପ୍ରୀତିରେ ପ୍ରଲୁବ୍ଧା ନାରୀ—ତୁମକୁ କି କରିଚି ଉନ୍ମାଦ—
ଅବୋଧ ରାଗିଣୀ ସମ, ସ୍ୱରଚିତ ସୁରର ସୌଭାଗ୍ୟେ—
ଗିର୍ଜ୍ଜା କି ମଂଦିରେ କେତେ—
            ଚିତ୍ରମୟୀ, ପାଷାଣୀ, ସ୍ୱର୍ଲୋକେ—
ଅରୂପର ତୁମେ ହିଁ ମୋ' ବିକଳ ବ୍ୟଞ୍ଜନା–,
          ବିଶ୍ୱର ମାନସପଥେ—
                  ଆଗୋ ସୁରଂଜନା !

୨୧ ଫେବୃଆରୀ ୧୯୬୯



# ରାତିର ନିଃଶ୍ୱାସ ଯେବେ ରଚିଥିଲା

ରାତିର ନିଃଶ୍ୱାସ ଯେବେ ରଚିଥିଲା
ଉଷାର ମୁହେଁ ଝୀନ—ସେ ଅତି
କୃତ୍ରିମ ଝାଲର
ଆଶା-କୁହେଳିର !

ଶିଶିରରେ ସଜଧୁଆ ସ୍ୱିନ୍ନ କପାଳରେ ତୁମ—
ଝଲୁଥିଲା ସିନ୍ଦୂରଟୋପାଟି—

ବାଲିଶେଯେ ଗଡ଼ି ଗଡ଼ି
ସୁରୁ ସୁରୁ କାହାଣୀର—ସରୁ ଧାରଟିଏ

ଅତୀତ ଶିଖରୀର ଚୂଳୁ
ନିର୍ଜୀବ ସ୍ମୃତିର—
ଧାଉଁଥିଲା ଭବିଷ୍ୟର—
କେଉଁ ନୀଳିମାକୁ—

ଫୁଲଟିଏ ଉନ୍ମନେ ମକଚି
ହସିଥିଲା ସଖି—

ଯୌବନ ତ ନୁହେଁ ଖାଲି
ପ୍ରାବୃଟର ପ୍ରଳୟ ପ୍ଲାବନେ—
(ବସନ୍ତର ବ୍ୟାକୁଳ ଉଚ୍ଛ୍ୱାସ)

ଯୌବନର ଅରୁଣିମା
ଧୁଝୀନ, ଚୁମାଟି ତଳେ—

ରେଖିଲ ଅଧରେ ମୋ'—
ଆଜି ତାକୁ ଖୋଜେ ମୁହିଁ
ଖୋଜୁଚ ତମେ କି—

୮ ମେ-୧୯୬୭



# ରସର ଚର୍ବଣାରେ

ରସର ଚର୍ବଣାରେ
ଗୀର୍ବାଣ ସମାଜରେ ସେଦିନ
ସୀଧୁ ପିଇ ନୂତନତମ ସୂର୍ଯ୍ୟର
ହଁ ପ୍ରାଚୀନ ପ୍ରାଚୀନ ବି
ଉଲଗ୍ନ କରି କେଜାଣି କେତେ ରାତ୍ରି
ବାସନ୍ତୀର ଶାରବୀ
ଉନ୍ମାନ, ଉନ୍ମାଦ, ହୋଇଥିଲି ମୁଁ;
ଥିଲି ତପସ୍ୱୀ ଥିଲି ମୁଁ—
ହୁଏତ ବ୍ରହ୍ମ—
ପ୍ରଜାର ରାଜ୍ୟର ସୃଜନରେ ମଗ୍ନ ।
ଅପୂର୍ବ ଏକ ଶିହରଣରେ ତ
ଧ୍ୟାନର— ।

ବୁଝିଥିଲି
ନୁହେଁ, ଅବସ୍ତୁ ନୁହେଁ—
ଏ ସତ୍ତା ମୋର- - - ।

ଜୁନ୍ ୧୯୬୮-୬୯

